ବେଣ୍ଟ ଥିଲା । ଏମାନଂଙ୍କ ଦେହବୈଶିଷ୍ଟ୍ୟର ସୂତ୍ରଗୁଡ଼ିକ ଭାରତବର୍ଷର, ବିଶେଷତ ମଧ୍ୟ ଓ ଦକ୍ଷିଣ ଭାରତର ଆଦିମ ଅଧିବାସୀଂଙ୍କ ମଧ୍ୟରେ ଏବଂ ଅଷ୍ଟ୍ରେଲିୟାର ଆଦିମ ଅଧିବାସୀଂଙ୍କ ମଧ୍ୟରେ ରହିଛି । ଏହି କାରଣରୁ ବୋଧହୁଏ ଏମାନଂଙ୍କର ଆଦି ଅଷ୍ଟ୍ରେଲୀୟ ( Proto-Australoid ) ନାମକରଣ ହୋଇଛି । ମଧ୍ୟ ଓ ଦକ୍ଷିଣ ଭାରତର ଖର୍ବକାୟ, କୃଷ୍ଣବର୍ଣ, ଦୀର୍ଘମୁଂଡ, ପ୍ରଶସ୍ତନାସ, ତାମ୍ରକେଶ ଆଦିବାସୀମାନେ ଆଦି ଅଷ୍ଟ୍ରେଲୀୟ ବଂଶଧର, ଏଥିରେ ସଂଦେହ ନାହିଁ । ମଧ୍ୟ-ଭାରତର କୋଲ୍, ଭିଲ, କରୱା, ଖାରଓୟାର, ମୁଂଡା, ଭୂମିଜ, ମାଲପାହାଡ଼ୀ, ପ୍ରଭୃତି ଲୋକମାନେ, ଦକ୍ଷିଣ ଭାରତର ଚେଂଚୁ, କୁରୁବ, ୟେରୁବ ପ୍ରଭୃତି; ବଂଗଦେଶର, ବିଶେଷ କରି ରାଢ଼ ଅଂଚଳର ସାଂତାଳ, ଭୂମିଜ, ମୁଣ୍ଡା, ବାଂଶଫୋଡ଼ ପ୍ରଭୃତି ଜନର [୧] ଲୋକମାନେ ଆଦି-ଅଷ୍ଟ୍ରେଲୀୟ ବଂଶଧର । ବେଦରେ ନିଷାଦମାନଂକର ଉଲ୍ଲେଖ ଅଛି, ବିଷ୍ଣୁପୁରାଣରେ ଅଂଗାର-କୃଷ୍ଣବର୍ଣ, ଖର୍ବକାୟ, ଚେପ୍ଟାମୁହଁ, ନିଷାଦମାନଂକର ସଂବାଦ ମିଳେ । ଭାଗବତ-ପୁରାଣରେ ମଧ୍ୟ ଏହି କାକକୃଷ୍ଣ, ଖର୍ବାକୃତି, ରକ୍ତଚକ୍ଷୁ ନିଷାଦମାନଂକ କଥା ଲେଖା ଅଛି ।[୨]

ତୁଳା ଲୁଗାର ବ୍ୟବହାର ଅଷ୍ଟ୍ରିକଭାଷୀମାନଂକରହିଁ ଦାନ । କାର୍ପାସ ହେଉଛି ମୂଳତ ଅଷ୍ଟ୍ରିକ୍ । ପଟ, କର୍ପଟ ( ପଟ୍ଟବସ୍ତ୍ର ) ଏ ଦୁଇଟି ଶବ୍ଦ ମଧ୍ୟ ମୂଳତ ଅଷ୍ଟ୍ରିକ୍ ଭାଷାରୁ ଗୃହୀତ । ମେଂଢା ସଂଗେ ଏମାନେ ପରିଚିତ ଥିଲେ । ମେଂଢାର ଲୋମକୁ ଏମାନେ କାମରେ ଲଗାଇବା ଜାଣିଥିଲେ କି ? 'କଂବଳ' କଥାଟି କିଂତୁ ମୂଳତ ଅଷ୍ଟ୍ରିକ୍, ଏବଂ ଆମେ ଯେଉଁ ଅର୍ଥରେ ଏ ଶବ୍ଦଟି ବ୍ୟବହାର କରୁଁ, ସେହି ଅର୍ଥରେ ଅଷ୍ଟ୍ରିକ୍‌ଭାଷୀମାନେ ମଧ୍ୟ ବ୍ୟବହାର କରୁଥିଲେ ।"

ଅଷ୍ଟ୍ରିକ୍ ସଂସ୍କୃତି

ଅଷ୍ଟ୍ରିକ୍‌ଭାଷୀ ବା ଆଦି-ଅଷ୍ଟ୍ରେଲୀୟମାନେ ମୂଳତ କୃଷିଜୀବୀହିଁ ଥିଲେ । ତେବେ ସେମାନଂକର କେତେକ ଶାଖା ଅରଣ୍ୟଗୃହୀ ମଧ୍ୟ ଥିଲେ । ଏହି ଅରଣ୍ୟଗୃହୀ ନିଷାଦ, ଶବର, ଭିଲ, କୋଲ୍ଡି, ମୁଂଡା, ଗଦବ, ହୋ, ସାଂତାଳ ପ୍ରଭୃତିଂକର ପ୍ରଧାନ ଜୀବିକା ଥିଲା ପଶୁ-ଶିକାର, ଏବଂ ପଶୁପକ୍ଷୀ-ଶିକାର କରିବାରେ ସେମାନେ ବ୍ୟବହାର କରୁଥିଲେ କାଣ୍ଡ, ଧନୁ, ପିନାକ ଇତ୍ୟାଦି—ଏବଂ ଏହି ସବୁ କେତୋଟି

---

୧ । 'ଜନ' ଶବ୍ଦଟି ଇଂରାଜୀ People ଅର୍ଥରେ ବ୍ୟବହୃତ ହୋଇଛି । ନୃତତ୍ତ୍ୱ ଓ ପ୍ରାଣୀତତ୍ତ୍ୱର 'race' ବୁଝାଇବାକୁ 'ନର' ବା 'ନରଗୋଷ୍ଠୀ' ଏବଂ 'tribe' ଅର୍ଥରେ ହିଂଦୁସ୍ଥାନୀ 'କୋମ' ଶବ୍ଦ ଡଃ ଜୀ-ର-ରାୟ ଓ ଅନ୍ୟାନ୍ୟ ବଂଗାଳୀ ଐତିହାସିକମାନେ ବ୍ୟବହାର କରିଛଂତି । ଓଡ଼ିଆରେ 'tribal' ଅର୍ଥରେ 'କୌମ' ଏବଂ 'tribe' ଅର୍ଥରେ 'କୋମ' ଶବ୍ଦ ବ୍ୟବହାର କରାଯାଇପାରେ । କାରଣ 'ଟ୍ରାଇବ୍' ଅର୍ଥଜ୍ଞାପକ ଭଲ ଓଡ଼ିଆ ଶବ୍ଦ ନାହିଁ । ଲେଖକ ।

୨ । Idid

ଶବ୍ଦ ମୂଳତ ଅଷ୍ଟ୍ରିକ୍ । ଏମାନେ ଯେଉଁ ସବୁ ପଶୁ ପକ୍ଷୀ ଶିକାର କରୁଥିଲେ, ତା ଭିତରେ ଥିଲେ ହାତୀ, ମେଣ୍ଢା, କାକ, କର୍କଟ ( କାଙ୍କଡା ), ଏବଂ କପୋତ ( ଯବାର ଅର୍ଥ, ଖାଲି କାପ୍ତା ପକ୍ଷୀ ନୁହେଁ, ଯେ କୌଣସି ପକ୍ଷୀ ) । ଗଜ, ମାତଙ୍ଗ, ( ହସ୍ତୀ ଅର୍ଥରେ ) ସବୁ ଅଷ୍ଟ୍ରିକ୍ ଭାଷାରୁ ଗୃହୀତ । ଅନ୍ୟାନ୍ୟ ଅସ୍ତ୍ରୋପକରଣ ମଧ୍ୟରେ ଦାଆ ଓ କରାତର ନାମ କରାଯାଇପାରେ । ଏହା ମଧ୍ୟ ଅଷ୍ଟ୍ରିକଗୋଷ୍ଠୀର ଭାଷାଲବ୍ଧ ବୋଲି ଶବ୍ଦତାତ୍ତ୍ୱିକମାନେ ଅନୁମାନ କରନ୍ତି ।*

ସମୁଦ୍ରତୀରବର୍ତ୍ତୀ ଦେଶ, ଦ୍ୱୀପ, ଓ ଉପଦ୍ୱୀପବାସୀ ଅଷ୍ଟ୍ରିକଭାଷୀ ମେଲାନେଶୀୟ, ପଲିନେଶୀୟ ପ୍ରଭୃତି ଲୋକଙ୍କ ସଂଗେ ବ୍ୟବସାୟ-ବାଣିଜ୍ୟ କରିବା ସକାଶେ କାଠ ଖୁଂଦ ଏକପ୍ରକାର ଲଂବା ଡଂଗା ( ଏ ଶବ୍ଦଟି ମଧ୍ୟ ଅଷ୍ଟ୍ରିକ୍ ) ତିଆରି କରୁଥିଲେ । ଏ ତଥ୍ୟ ନୃତତ୍ତ୍ୱବିତ୍‌ମାନେ ଆବିଷ୍କାର କରିଛନ୍ତି । ଏଇସବୁ ଡଂଗା ଓ ଭେଳାରେ ଚଢ଼ି ଅଷ୍ଟ୍ରିକ୍‌ଭାଷୀମାନେ ନଦୀ ଓ ସମୁଦ୍ରପଥରେ ଯିବା ଆସିବା କରୁଥିଲେ ଏବଂ ଏକ ବୃହତ୍ ସାମୁଦ୍ରିକ ବାଣିଜ୍ୟ ମଧ୍ୟ ଗଢ଼ି ତୋଳିଥିଲେ ।** ଭାରତୀୟ ସଭ୍ୟତା ଓ ସଂସ୍କୃତିକୁ ଅଷ୍ଟ୍ରିକଭାଷୀମାନଂକ ଦାନର ପ୍ରାଚୁର୍ଯ୍ୟ ଦେଖି ଲେଭି କହିଛଂତି :—

" We must know whether the legends, the religion and the philosophical thoughts of India do not owe anything to this past, xxx It ought to be remembered that India is a great maritime country—the movement which carried the Indian colonisation ( in historical times ) towards the Far East was far from inaugurating a new route. Adventurers, traffickers, and missionaries profited by the technical pogress of navigation and followed under better conditions of comfort and efficiency, the way traced from time immemorial by the mariners of another race, whom Aryan or Aryanised India despised as savages."

ଅଥାତ୍ ଭାରତର ଲୋକକଥା, ଧର୍ମ-ଧାରଣା ଓ ଦର୍ଶନତତ୍ତ୍ୱ ଏଇ ଅତୀତ ଉପରେହିଁ ଭିତ୍ତିଶୀଳ । ଭାରତବର୍ଷ ଏକ ବୃହତ୍ ନୌବାଣିଜ୍ୟ-କାରୀ ଦେଶ—ଯାହା ଫଳରେ କ ପରେ ଐତିହାସିକ ଯୁଗରେ ସୁଦୂର ପ୍ରାଚ୍ୟରେ ଭାରତୀୟ ଉପନିବେଶମାନ ଗଢ଼ି ଉଠିଥିଲା ।

* Ibid
** "

ସମୁଦ୍ର-ଯାତ୍ରା

ପରବର୍ତ୍ତୀ ଯୁଗରେ ସମୁଦ୍ର-ଯାତ୍ରାକୁ ଯେଉଁ ଦୁଃସାହସୀ ସୁଦୂର-ସନ୍ଧାନୀ ଓ ଧର୍ମପ୍ରଚାରକମାନେ ଅଧିକ ଉନ୍ନତ ପ୍ରଣାଳୀରେ ସୁଦୂର-ପ୍ରସାରିତ କରିଥିଲେ ସେମାନେ ଆର୍ଯ୍ୟ ନରୁ ବା ଆର୍ଯ୍ୟ ଅଧ୍ୟୁଷିତ ଭାରତବର୍ଷ ଯେଉଁମାନଙ୍କୁ ବନ୍ୟ 'ବର୍ବର' କହି ଘୃଣାରେ ନାସିକାକୁଞ୍ଚନ କରେ, ସେଇ ଅନ୍ୟ ଜାତିର ଲୋକଙ୍କ ଦ୍ୱାରା ବହୁ ପ୍ରାଚୀନ କାଳରୁ ଅନୁସୃତ ପଥ ଅନୁସରଣ କରିହିଁ ତାହା କରି ପାରିଥିଲେ ।

ଐତିହାସିକ ଶରତକୁମାର ରାୟ ମହାଶୟ କହନ୍ତି:—"ସଂଗୃହୃତ ପ୍ରଥା ସମ୍ଭବତ ଭାରତରେ ପ୍ରଥମେ ଏଇମାନଙ୍କ ଦ୍ୱାରା ହିଁ ପ୍ରବର୍ତ୍ତିତ । ସଂଗୃହୃତକୁ ଏମାନେ ସତରେ ଧର୍ମାଧିକରଣ ଜ୍ଞାନରେ ମାନ୍ୟ କରନ୍ତି । ବର୍ତ୍ତମାନ ମଧ୍ୟ ଅଦାଲତରେ ସାକ୍ଷ୍ୟ ଦେବା ପୂର୍ବରୁ ମୁଣ୍ଡା ସାକ୍ଷୀ ତାର ଜାତି-ପ୍ରଥା ଅନୁସାରେ ସଂଚର ନାମ ନେଇ ଶପଥ କରେ, 'ସିରମାରେ-ସିଂଗବୋଂଗା ଓତେରେ ସଂଚ', ଅର୍ଥାତ୍ 'ଆକାଶରେ ସୂର୍ଯ୍ୟ-ଦେବତା, ପୃଥିବୀରେ ସଂଗୃହୃତ ।' ଶ୍ରୀ ରାୟ ଆହୁରି ମଧ୍ୟ କହନ୍ତି ଯେ 'ଏମାନଙ୍କ ମଧ୍ୟରେ କୌଣସି କୌଣସି ଜାତିର କିଂବଦନ୍ତୀ ଅଛି ଯେ ଏକ ସମୟରେ ଭାରତରେ ଏମାନେ ଶ୍ରେଷ୍ଠ-ବଡ 'ଗଣତନ୍ତ୍ର'ର ରାଜା ଥିଲେ । ରାଜଶକ୍ତିର ଚିହ୍ନସ୍ୱରୂପ ମୁଣ୍ଡା ଓ ହୋ ପ୍ରଭୃତି ଜାତିର ପ୍ରତ୍ୟେକ ଗ୍ରାମସଂଘରେ ଓ ଗ୍ରାମରେ ବର୍ତ୍ତମାନ ମଧ୍ୟ ବିଭିନ୍ନ ଚିହ୍ନ ଅଙ୍କିତ ପତାକା ସଯତ୍ନରେ, ସସମ୍ମାନେ ରକ୍ଷିତ ହୁଏ ।" 'ରାଜା' ଅର୍ଥ ଏଠାରେ ପ୍ରାଚୀନ ଗଣ-ସଂଘର ନିର୍ବାଚିତ ପରିଚାଳକ ବା ନେତୃ-ମଣ୍ଡଳୀ ନିଶ୍ଚୟ, ଯାହା ସାମାଜିକ ସ୍ମୃତିରେ ରୂପାନ୍ତର ମାଧ୍ୟମରେ ତିଷ୍ଠି ରହିଛି ।

ଓଡ଼ିଶାରେ ଶବର, କନ୍ଧ, କୋଲ୍‌ହ, ସାନ୍ତାଳ ପ୍ରଭୃତି ଆଦିମ ଅଧିବାସୀମାନେ ଆଦି-ଅଷ୍ଟ୍ରେଲୀୟ ବଂଶଧର । ନିମ୍ନବର୍ଣ୍ଣର ବଙ୍ଗାଳୀ ଓ ଓଡ଼ିଆ ଆଦିବାସୀମାନଙ୍କ ମଧ୍ୟରେ ଆଦି-ଅଷ୍ଟ୍ରେଲୀୟ ଜନଜ ପ୍ରଭାବ ଖୁବ୍ ବେଶୀ । ତେଣୁ ଏମାନେ ଆଦି-ଅଷ୍ଟ୍ରେଲୀୟ ମାନଙ୍କ ସଂଗେ ସମ୍ପୃକ୍ତ ବୋଲି ନୃତତ୍ତ୍ୱବିତ୍‌ଙ୍କ ମତ । ମଧ୍ୟ ଓ ଦକ୍ଷିଣ ଭାରତର ଆଦିମ ଅଧିବାସୀ ଏବଂ ସିଂହଳର ଭେଡ୍ଡା ପ୍ରଭୃତି ଜନ ଏବଂ ଉତ୍ତର-ଭାରତର ଗାଂଗେୟ ପ୍ରଦେଶର ଆଦିବାସୀ ଏଇ ଶ୍ରେଣୀର ଅନ୍ତର୍ଗତ । ଏଇ ଆଦି-ଅଷ୍ଟ୍ରେଲୀୟମାନଙ୍କ ସହିତ ପୂର୍ବତନ ନେଗ୍ରିଟୋମାନଙ୍କର କେଉଁଠି କେଉଁଠି ରକ୍ତମିଶ୍ରଣ ଘଟିଥିବା ଅନସ୍ୱୀକାର୍ଯ୍ୟ । ତା'ନ ହେଲେ ମଧ୍ୟ-ଭାରତ ଓ ଦକ୍ଷିଣ ଭାରତ ଏବଂ ବଂଗଦେଶର ଆଦି-ଅଷ୍ଟ୍ରେଲୀୟମାନଙ୍କ ଭିତରେ

ଦେହବୈଶିଷ୍ଟ୍ୟର ଯେଉଁ ପାର୍ଥକ୍ୟ ଦେଖାଯାଏ ତାର ଯଥେଷ୍ଟ କାରଣ ଖୋଜି ପାଇବା କଷ୍ଟ । *

## ଅଷ୍ଟ୍ରିକ୍‌ଭାଷୀର ଜୀବନ-ପ୍ରଣାଳୀ

ଚାଷର ଉପାଦାନ

ଭାରତବର୍ଷ କୃଷିପ୍ରଧାନ ଦେଶ । ଏଇ କୃଷିକାର୍ଯ୍ୟ ଅଷ୍ଟ୍ରିକ୍‌ଭାଷୀ ଆଦି-ଅଷ୍ଟ୍ରେଲୀୟମାନେ ଆମ ଦେଶରେ ପ୍ରଚଳନ କରିଥିବାର ବହୁ ପ୍ରମାଣ ମିଳେ । ପ୍‌ଶିଲସ୍କି ନିଃସଂଦେହରେ ପ୍ରମାଣ କରିଛଂତି ଯେ 'ଲଂଗଳ' କଥାଟା ଅଷ୍ଟ୍ରିକ୍‌ଭାଷାରୁ ଗୃହୀତ । ଏହାର ମୂଳଅର୍ଥ 'ଚାଷ-କରିବା' ବା 'ଚାଷ କରିବାର ଯଂତ୍ର' । ଖୁବ୍ ପ୍ରାଚୀନକାଳରେ 'ଲଂଗଳ' ଶବ୍ଦଟି ଆର୍ଯ୍ୟଭାଷାରେ ଗୃହୀତ ହୋଇଥିଲା । ଏଥିରୁ ଅନୁମାନ ହୁଏ ଯେ ଅର୍ଯ୍ୟଭାଷୀମାନେ ଚାଷ କାର୍ଯ୍ୟ ଜାଣି ନଥିଲେ । ତେଣୁ ଚାଷ ଓ ଚାଷ କରିବାର ଯଂତ୍ର ( ଲଂଗଳ ) ଏ ଦୁଇଟିଯାକଯାକ ସେମାନେ ଅଷ୍ଟ୍ରିକ-ଭାଷାଭାଷୀ ଲୋକଂକଠାରୁ ପାଇଥିଲେ । ତୀକ୍ଷ୍ଣମୁଖ କାଷ୍ଠଦଂଡ ଯଂତ୍ର ଦ୍ୱାରା ଅଷ୍ଟ୍ରିକ୍ ଭାଷାଭାଷୀମାନେ ଯାହା ଚାଷ କରୁଥିଲେ, ତାହା ହେଉଛି ଧାନ । ସମତଳଭୂମିରେ ଏବଂ ସ୍ତରେ ସ୍ତରେ ପାହାଡ଼ କାଟି ସେମାନେ ବନ୍ୟ ଧାନକୁ ଲୋକାଳୟର କୃଷିବସ୍ତୁ କରି ନେଇଥିଲେ । ଅଷ୍ଟ୍ରିକ୍‌ଭାଷୀ ଲୋକମାନଂକର ବିସ୍ତୃତ ଭାରତ-ବର୍ଷରେ ଯେଉଁ ଯେଉଁ ସ୍ଥାନମାନଂକରେ ଥିଲା, ସବୁଠାରେ ଧାନର ପ୍ରଚଳନ ଥିଲା । ତେବେ ନଦୀବହୁଳ ସମତଳଭୂମିମାନଂକରେ ତାହା ବେଶୀ । ଆସାମ, ବଂଗଳା, ଓଡ଼ିଶା, ଦକ୍ଷିଣ-ଭାରତର ସମତଳ ସମୁଦ୍ର ଉପକୂଳ ଦେଶ, ପ୍ରଭୃତିରେ ସେମାନେ ପ୍ରସାର ଲାଭ କରିଥିଲେ ବେଶୀ, ଉତ୍ତର ଭାରତରେ ସେତେଟା ନୁହେଁ । ପରବର୍ତ୍ତୀ କାଳରେ ଦ୍ରାବିଡ଼ଭାଷୀ ଦୀର୍ଘମୁଂଡବିଶିଷ୍ଟ ଲୋକମାନେ ଭାରତବର୍ଷରେ ଯବ ଓ ଗହମ ଚାଷ ପ୍ରଚଳନ କରଂତି ଏବଂ ଏହା ଉତ୍ତର-ପଶ୍ଚିମ ସୀମାଂତରୁ ଆରଂଭ କରି ବିହାର ପର୍ଯ୍ୟଂତ ଛଡ଼େଇ ପଡ଼େ ।[୧]

ଧାନଛଡ଼ା ଅଷ୍ଟ୍ରିକଭାଷୀ ଲୋକମାନେ କଦଳୀ, ବାଇଗଣ, ଲାଉ, ଲେଂବୁ ପାନ, ନଡ଼ିଆ, କରମଂଗା, ଡିମିରି, ହଳଦୀ, ଗୁଆ, ଡାଳିଂବ ଇତ୍ୟାଦି ମଧ୍ୟ ଚାଷ କରୁଥିଲେ । ଏଇ କୃଷିଦ୍ରବ୍ୟର ପ୍ରତ୍ୟେକଟିର ନାମ ଅଷ୍ଟ୍ରିକଗୋଷ୍ଠିର ଭାଷାରୁ ଗୃହୀତ । ବରଜ (ପାନ) ଶବ୍ଦଟି ମଧ୍ୟ ଅଷ୍ଟ୍ରିକ୍ । ଏଇ ସବୁ ଶବ୍ଦର

* I bid

୧ । S. Levi,

ସଂସ୍କୃତ ଓ ପ୍ରାକୃତ ଅପଭ୍ରଂଶ ନେଇ ଯେଉଁ ସବୁ ବସ୍ତୁତ ଆଲୋଚନା ହୋଇଛି, ସେଥିରୁ ଇତିହାସର ଏ ଇଂଗିତ ସ୍ପଷ୍ଟ । କିଂତୁ କୃଷିବାଦ ଏମାନେ ଶୁରୁ ଜାଣିଥିଲେ ମଧ୍ୟ ଗୋପାଳନ ଜାଣିଥିଲେ ବୋଲି ମନେ ହୁଏନାଇ । ବସ୍ତୁତଃ, ଅଷ୍ଟ୍ରିକଭାଷୀଂକ ମଧ୍ୟରେ ଗୋପାଳନ ଆଜି ମଧ୍ୟ କମ । ଯେଉଁମାନଂକ ଭିତରେ ବା ଏହାର ପ୍ରଚଳନ ଦେଖାଯାଏ ସେମାନେ ଆର୍ଯ୍ୟଭାଷୀମାନଂକଠାରୁ ତାହା ଗ୍ରହଣ କରିଥିଲେ ବୋଲି ମନେହୁଏ । ଯେତେଦୂର ସଂଭବ, ଗୋପାଳନ ଆର୍ଯ୍ୟଭାଷୀ ମାନଙ୍କ ସଂଗେ ଜଡ଼ିତ ।[୧] (Pre-Aryan Pre-Dravidians;— papers by S. Levi, Przlusky & J. Bloch)

**ଅଷ୍ଟ୍ରିକ୍ ଶବ୍ଦାବଳୀ**

ବଂଗ ଓ ଓଡ଼ିଶା ପ୍ରଭୃତି ଦେଶରେ ଯେଉଁ ଏକ କୋଡ଼ି, ଦୁଇ କୋଡ଼ି, ପଣ (୮୦ଟାରେ ଏକ ପଣ) ଇତ୍ୟାଦି ଗଣନା ପଦ୍ଧତି ପ୍ରଚଳିତ ଅଛି, ସେହି ପ୍ରଣାଳୀଟି ଏବଂ 'କୋଡ଼ିଏ' ଶବ୍ଦଟି ଉଭୟେ ଅଷ୍ଟ୍ରିକ୍ । ହାଟ ବଜାରରେ ଜିନିଷ ପତ୍ରର ଗଣତି ଆଜି ମଧ୍ୟ ଏହି ରୀତିରେ ହୋଇଥାଏ । ଅଷ୍ଟ୍ରିକ୍ଭାଷୀଂକ ମଧ୍ୟରେ କୋଡ଼ିଏ ଶବ୍ଦଟି ମଣିଷ ଦେହର କୋଡ଼ିଏଟି ଅଙ୍ଗୁଳି ସଂଗେ ସଂପୃକ୍ତ, ଏବଂ କୋଡ଼ିଏ ହେଉଛି ସେମାନଂକର ସଂଖ୍ୟାଗଣନର ଶେଷ ଅଂକ । କୋଡ଼ିଏ ଗଂଡାରେ (୨୦×୪) ଏକ ପଣ । ଏହା ମଧ୍ୟ ଅଷ୍ଟ୍ରିକ୍ଭାଷୀର ଗଣନା । ଚେଙ୍ଗା (ବାଉଁଶ), ମେଢ଼ା (ମେଂଢା), ବାଦୁଡ଼ି, କରତ, ଦାଆ, ବାଇଗଣ, ଏପରିକି ଗଂଗା (ଯାହାର ଅର୍ଥ ନଦୀ) ସବୁ ଅଷ୍ଟ୍ରିକ୍ ଭାଷାରହି ଦାନ । ଲେଭିଂକ ମତରେ ପୁଳିଂଦ-କୁଳିଂଦ, ମେକଲ-ଉତ୍କଳ, ଉଂଡ୍ର-ପୁଂଡ୍ର-ମୁଂଡ୍ର, କୋଶଳ-ତୋଷଳ ଅଂଗ-ବଂଗ, କଳିଙ୍ଗ-ତିଲିଂଗ ଏହି ପ୍ରକାର ଜାତିବାଚକ ଯମଜ-ନାମକରଣ ପଦ୍ଧତିଟି ଅଷ୍ଟ୍ରିକ୍ ଏବଂ ଏ ଶବ୍ଦ ଗୁଡ଼ିକ ମଧ୍ୟ ଅଷ୍ଟ୍ରିକ୍ ।

**ଲିଂଗ ପୂଜା ଓ ଯୋନି-ପୂଜା**

ଅଷ୍ଟ୍ରିକଗୋଷ୍ଠୀ ମଧ୍ୟରେ ଲିଂଗପୂଜା ଓ ଯୋନିପୂଜାର ପ୍ରଚଳନ ଥିଲା । ବସ୍ତୁତ 'ଲିଂଗ' ଶବ୍ଦଟିହିଁ ଅଷ୍ଟ୍ରିକ୍ ଶବ୍ଦ । ଏବେ ମଧ୍ୟ ବହୁ ପଲିନେଶୀୟ ଜାତିଂକ ମଧ୍ୟରେ ଲିଂଗ ଶବ୍ଦଟି ଅବିକଳ ସେହି ଅର୍ଥରେ ବ୍ୟବହୃତ ହୁଏ । ପରବର୍ତ୍ତୀ ଯୁଗର

---

୧ । ଅଷ୍ଟ୍ରିକ୍, ଦ୍ରାବିଡ, ଆର୍ଯ୍ୟ ପ୍ରଭୃତି ସେହି ସେହି ଭାଷାକୁ ବୁଝାଏ । ଯେଣୁ ଡଃ ନୀହାରରଂଜନ ରାୟ ପ୍ରମୁଖ ଏହାକୁ ଭାଷାରୂପେ ବ୍ୟବହାର କରିଛଂତି, ଜାତିବାଚକ ଶବ୍ଦରୂପେ ନୁହେଁ ।

ତଂତ୍ର-ସାଧନାର ମୂଳ ବୀଜ ଏଇ ଲିଂଗ ପୂଜା ମଧ୍ୟରେ ନିହିତ । ପ୍ରଶଲସ୍କିଂକ ମତରେ ଆର୍ଯ୍ୟମାନେ ତାଂକ ପୂର୍ବବର୍ତ୍ତୀ ଆଷ୍ଟ୍ରିକ୍‌ଭାଷୀମାନଂକଠାରୁ ଲିଂଗପୂଜା ଓ ଯୋନିପୂଜା ଗ୍ରହଣ କରିଥିଲେ । ଡ଼ଃ ଦେବୀପ୍ରସାଦ ଚଟ୍ଟୋପାଧ୍ୟାୟ ତାଂକ 'ଲୋକାୟତ ଦର୍ଶନ' ଗ୍ରଂଥରେ ଦେଖାଇଛଂତି ଶସ୍ୟ ଉତ୍ପାଦନ ସହିତ ଆଦିମ ଯୋନି-ପୂଜା ଓ ମୈଥୁନ-ଯୋଗ ଜଡ଼ିତ । ଆଦିମ ମନୁଷ୍ୟର ଧାରଣା ଥିଲା ଯେ ଅଧିକ ମୈଥୁନ କଲେ ଅଧିକ ଶସ୍ୟ ଉତ୍ପାଦନ ହୁଏ । ସେଇ ମୌଳ ଧାରଣାର ବଶବର୍ତ୍ତୀ ହୋଇ ସେ ମୈଥୁନ-ଯୋଗ ସୃଷ୍ଟି କରିଥିଲା । ଓଡ଼ିଶାରେ ତଂତ୍ରର ପ୍ରଭାବ ଜଗନ୍ନାଥଂକ ଉପରେ ପଡ଼ିଚି । ଜଗନ୍ନାଥ ଭୈରବ ଏବଂ ବିମଳା ଭୈରବୀ ରୂପରେ ସୁପ୍ରତିଷ୍ଠିତ । ଅଷ୍ଟ୍ରିକ୍‌ମାନଂକଠାରୁ ସିଂଧୁ-ତୀରବାସୀ ଦ୍ରାବିଡ଼ମାନେ ଲିଂଗ-ପୂଜା ଓ ମାତୃକା-ପୂଜା ଗ୍ରହଣ କରିଥିଲେ । ମହେନ୍‌-ଜୋ-ଦାରୋରୁ ପ୍ରାପ୍ତ ଧ୍ୱଂସାବଶେଷରୁ ମାତୃକାପୂଜାର ବହୁ ନିଦର୍ଶନ ମିଳେ ଏବଂ ଦ୍ରାବିଡ଼ମାନଂକ ମଧ୍ୟରେ ଏହାର ପ୍ରଚଳନ ସଂବଂଧରେ ନିର୍ଭରଯୋଗ୍ୟ ସାକ୍ଷ୍ୟ ମିଳେ । ଦ୍ରାବିଡ଼ର ଦେବତା ଶିବ ଭୈରବରୂପରେ ଏବଂ ଶକ୍ତି ଭୈରବୀ ରୂପରେ ପୂଜିତ ହୁଅଂତି । ଅଷ୍ଟ୍ରିକ୍‌ଭାଷୀ ଗୋଷ୍ଠୀ ମଧ୍ୟରେ ପ୍ରଚଳିତ ଲିଂଗ-ପୂଜା ଓ ଯୋନି-ପୂଜା ପରବର୍ତ୍ତୀ କାଳରେ ସାଂଖ୍ୟ-ଦର୍ଶନରେ ପ୍ରକୃତି-ପୁରୁଷ ସଂଯୋଗରେ ସୃଷ୍ଟିର ଉତ୍ପତ୍ତି, ଏଇ ତତ୍ତ୍ୱରେ ପରିଣତ ହୁଏ ।

ଫନ୍ ଆଇକଷ୍ଟେଡ୍‌ଟ ଭାରତବର୍ଷର ପୂର୍ବାଂଚଳବାସୀ ଅଷ୍ଟ୍ରିକ୍‌ଭାଷୀମାନଂକୁ 'କୋଲିଡ୍‌' ଏବଂ ସିଂହଳୀୟ ଅଂଶକୁ 'ଭେଡ୍‌ଡ଼ିଡ୍‌' କହିଛଂତି । ଭାରତରେ ଏମାନେ ବିଂଧ୍ୟପର୍ବତଠାରୁ ପୂର୍ବ-ଉପକୂଳ ପର୍ଯ୍ୟଂତ ବିସ୍ତୃତି ଲାଭ କରିଥିଲେ । ଦ୍ରାବିଡ ଏବଂ ଆର୍ଯ୍ୟଭାଷୀଂକ ଚାପରେ ଏମାନେ କ୍ରମେ ଉତ୍କଳ, ବଂଗ ଏବଂ ମଧ୍ୟ-ଭାରତର ନିମ୍ନ ଅଂଶକୁ ହଟି ଆସିବାକୁ ବାଧ୍ୟ ହୋଇଥିଲେ । ଏମାନଂକର ଏକ ଅଂଶ ଦାକ୍ଷିଣାତ୍ୟରେ ମଧ୍ୟ ପରିବ୍ୟାପ୍ତ ।

---

## ପଞ୍ଚମ ଅଧିକରଣ

## ଜଗନ୍ନାଥ

॥ ଅଷ୍ଟ୍ରିକ୍‌ଭାଷୀଙ୍କର ଦାନ ॥

ଓଡ଼ିଆ ଜାତିର ପରମ ଆରାଧ୍ୟ ଦେବତା ଜଗନ୍ନାଥ ଯେ ମୂଳତଃ ଅଷ୍ଟ୍ରିକ୍ ବା ଶବର ଦେବତା, ଏହା ପ୍ରମାଣସିଦ୍ଧ । ଶବର ବା ଦୈତ୍ୟମାନେ ଅଷ୍ଟ୍ରିକ୍ ଭାଷାଭାଷୀ ଗୋଷ୍ଠୀର ଅନ୍ତର୍ଭୁକ୍ତ । ଏହି ଅଷ୍ଟ୍ରିକ୍‌ଭାଷୀ ଗୋଷ୍ଠୀର ଶବରମାନଙ୍କର Totemism ବା ସଙ୍କେତବାଦରୁ ଜଣାଯାଏ ଯେ ସେମାନଙ୍କ ମଧ୍ୟରେ ବୃକ୍ଷୋପାସନା ପ୍ରଚଳିତ ଥିଲା । ଉତ୍ତର ଅଷ୍ଟ୍ରେଲିଆର ଆଦିମ ଅଧିବାସୀମାନଙ୍କ ମଧ୍ୟରେ ଏବେ ମଧ୍ୟ ଜୀବଜନ୍ତୁଙ୍କ ଛଡ଼ା ବୃକ୍ଷଲତା ଟୋଟେମରୂପେ ପ୍ରଚଳିତ ।

> 'Each member of the tribe has a totem usually chosen from the animal world, but in the North tending to include plants......" (The New Universal Enclyclopaedia"—Australian Aborigins)

ପରେ, ଅଷ୍ଟ୍ରିକଭାଷୀ ଜାତିପ୍ରବାହ ପରେ ଯେଉଁ ଦ୍ରାବିଡ଼ଭାଷୀ ନରଗୋଷ୍ଠୀ ଭାରତବର୍ଷକୁ ଆସିଥିଲେ, ସେମାନଙ୍କର ମହେଞ୍ଜୋଦାରୋ ଓ ହରପ୍ପା ପ୍ରଭୃତି କର୍ମକୃତିରୁ ଜଣାଯାଏ ଯେ ସେମାନେ ମଧ୍ୟ ଅଷ୍ଟ୍ରିକ୍‌ଭାଷୀଙ୍କଠାରୁ ଜୀବୋପାସନା ଓ ବୃକ୍ଷୋପାସନା ଗ୍ରହଣ କରିଥିଲେ । *

ଅଷ୍ଟ୍ରିକ୍‌ଭାଷୀଗୋଷ୍ଠୀର ଅନ୍ତର୍ଗତ ଶବରମାନେ 'କିତୁଂଗ'ର ପୂଜା କରୁଥିଲେ । ସୌର ଭାଷାରେ 'କିଂତୁଗ'ର ଅର୍ଥ 'ଦେବତା' । ଏହା କୌଣସି ନିର୍ଦ୍ଦିଷ୍ଟ ଦେବତାର ନାମ ନୁହେଁ । 'ଦେବତା' ଭଳି 'କିତୁଂଗ' ଏକ ସାଧାରଣ ଅର୍ଥବାଚୀ ଶବ୍ଦ । କିତୁଂଗର ଦଶଟି ରୂପ ଅଛି ବୋଲି ଶବରମାନେ କହନ୍ତି । ଯଥା, ଜଗଂତ, ଜୋଡ଼, ଗୁମନ, ଭୀମ, ରଂରଂ, ଗସିର୍, ସମନ୍, ଯୋଜେପଲ, ମଉ, ଡଡ । କେତେକ ଉତ୍ସବରେ ଦଶଟି ଯକର ଷକଟାକାର ଚିହ୍ନ ଗୋଟିଏ ଘରକାନ୍ଥରେ ଲେଖାହୁଏ । ଡ଼ଃ ବେଣୀମାଧବ ପାଢ଼ୀଙ୍କ ମତରେ, ଜଗନ୍ନାଥ

* Comparative Religion—T. E. Carpenter ଓ The History of Culture of Indian People—R. C. Majumdar.

ଶବ୍ଦଟି ଶବର ଭାଷାରେ ବ୍ୟବହୃତ "ଜଗଂତ" ଶବ୍ଦର ସଂସ୍କୃତ ରୂପ । ସୌରାମାନେ କହନ୍ତି ଯେ କାରୁଂଗ ଶବର ଜାତିର ମୂଳ ଦେବତା ଓ ସେ ସମସ୍ତ ଶବର ଗୋଷ୍ଠୀ ସୃଷ୍ଟି କରିଛନ୍ତି । ଗାଁ ବାହାରେ ବଣ ଭିତରେ ଗୋଟିଏ ଗଛରେ କାରୁଂଗ ରହିଥିବାର ସେମାନେ ବିଶ୍ୱାସ କରନ୍ତି । ଯେଉଁ ବୃକ୍ଷକୁ ସେମାନେ 'ଜଗଂତ' ବୋଲି କହନ୍ତି, ସେହି ବୃକ୍ଷକୁ, ଏପରିକି ସେ ଥିବା ବନର କୌଣସି ବୃକ୍ଷକୁ ସେମାନେ ଛେଦନ କରନ୍ତି ନାହିଁ । ଏଥିରୁ ମନେ ହୁଏ ଯେଉଁ ବୃକ୍ଷ ବା ଦାରୁକୁ, ସେମାନେ 'ଜଗଂତ' ଆଖ୍ୟାରେ ପୂଜା କରୁଥିଲେ ତାହା ପରବର୍ତ୍ତୀ 'ଜଗନ୍ନାଥ' ଶବ୍ଦର ମୂଳ ହୋଇଥାଇପାରେ । ଯେପରି ଅଷ୍ଟ୍ରିକ୍ ଶବ୍ଦ (କୋଲ୍ଲ ଭାଷାର) 'ମରକ୍' (ମୟୂର) ପରେ ଅଥର୍ବ ବେଦରେ 'ମ୍ରୋକ' ରୂପେ ପ୍ରଯୁକ୍ତ ହୋଇଛି । ('ବାଦୁଡ଼ି' ଶବ୍ଦଟି ମଧ୍ୟ ଅଷ୍ଟ୍ରିକ ଭାଷାରୁ ଆର୍ଯ୍ୟ ଭାଷା-ପରିବାର ମଧ୍ୟରେ ପ୍ରବେଶ କରି ଯାଇଛି ।* )

ପୁଷ୍ପର ଦଇତା, ଯାହା ଶବରର ଅନ୍ୟ ନାମ 'ଦୈତ୍ୟ'ରୁ ଉତ୍ପନ୍ନ, ଜଗନ୍ନାଥଙ୍କର ଜ୍ଞାତି ରୂପେ ସୁବିଦିତ । 'ଦଇତା'ମାନେ ଶବର ବଂଶଧର, ଏହା ଜଣାଶୁଣା କଥା । ଆର୍ଯ୍ୟମାନେ ଆର୍ଯ୍ୟେତର ନରକୁ 'ଅସୁର' ବା 'ଦୈତ୍ୟ' ବୋଲି ବେଦରେ ଅଭିହିତ କରିଛନ୍ତି । ସ୍ନାନ-ପୂର୍ଣ୍ଣିମାଠାରୁ ରଥଯାତ୍ରା ପର୍ଯ୍ୟନ୍ତ ଜଗନ୍ନାଥଙ୍କର ସମସ୍ତ ପୂଜା-ବିଧି ଏହି ଦଇତାମାନେହିଁ ସମ୍ପନ୍ନ କରଥାନ୍ତି । 'ଅସୁର' ଏସୀରୀୟ ଦେଶବାସୀଂକୁ ବୁଝାଏ ।

ଭାରତର ଅନ୍ୟ କୌଣସି ମନ୍ଦିରରେ ଦାରୁମୂର୍ତ୍ତି ପୂଜିତ ହେଉଥିବା କଥା ଦେଖାଯାଏ ନାହିଁ । ଅନ୍ୟ ସବୁଠି ପଥର ବା ଧାତୁର ବିଗ୍ରହ ପୂଜିତ ହୁଅନ୍ତି । କେବଳ ପୁରୁଷୋତ୍ତମରେ, ଶ୍ରୀମନ୍ଦିରରେହିଁ ଦାରୁ-ବିଗ୍ରହ ପୂଜା

ଦାରୁଦେବତା

ହୁଅନ୍ତି । ଏଥିରୁ ଜଗନ୍ନାଥ ଯେ ପ୍ରଥମେ ବୃକ୍ଷୋପାସକ ଶବରର ଦେବତା ଥିଲେ ଏବଂ ପରେ ଆର୍ଯ୍ୟ-ଦେବତାରେ ପରିଣତ ହେଲେ, ଏହାର ବଳିଷ୍ଠ ସମର୍ଥନ ମିଳେ । ଓଡ଼ିଶାର କିଂବଦନ୍ତୀ, ଲୋକଗାଥା ଜଗନ୍ନାଥଙ୍କର ଶବର-ପ୍ରଭବ ବିଷୟରେ ସାକ୍ଷ୍ୟ ଦିଏ । ଅଷ୍ଟ୍ରିକଭାଷୀ-ମାନଂକ ପୂର୍ବରୁ ଯେଉଁ ନିଗ୍ରୋମାନେ ଭାରତବର୍ଷରେ ବସତି ସ୍ଥାପନ କରିଥିଲେ, ସେମାନଂକ ମଧ୍ୟରେ 'ପିପ୍ପଳ ବୃକ୍ଷୋପାସନା' (Cult of Ficus Tree) ପ୍ରଚଳିତ ଥିଲି ବୋଲି ବହୁ ଐତିହାସିକ କହନ୍ତି । ପରେ ଏହା ମହେଂଜୋଦରୋରୁ ଉଦ୍ଭୂତ ସୈନ୍ଧବ ସଂସ୍କୃତି ବା ଦ୍ରାବିଡ଼ ସଂସ୍କୃତି ମଧ୍ୟରେ ଅନୁପ୍ରବେଶ କରେ ।

* ଅଥର୍ବବେଦ—୬-୪-୩ ଓ ୧୬, ୧-୭ । କୋହ୍ଲ ଭାଷାରେ ମୟୂରକୁ 'ମରକ୍' କହନ୍ତି ।

ଆର୍ଯ୍ୟ ସଂସ୍କୃତି ମଧ୍ୟରେ ମଧ୍ୟ ଏହି ଅଶ୍ୱତ୍ଥ ବୃକ୍ଷୋପାସନା ପ୍ରବେଶ କରିଥିଲା ବୋଲି ଆର୍. ସି. ମଜୁମଦାରଙ୍କ ପ୍ରଣୀତ "The History and Culture of the Indian People" ଗ୍ରଂଥରୁ ଜଣାଯାଏ । ଡ଼ଂ ବେଣୀମାଧବ ପାଢ଼ୀ କହନ୍ତି, 'ଏବେ ସୁଦ୍ଧା ପାର୍ଲାଖେମିଣ୍ଡି ମାଳ ଅଂଚଳ ଭିତରେ, କାଗଂଗା, କଂଦସିଂ, ଗୁରୁଗୁଂଡା ପ୍ରଭୃତି ନିବିଡ଼ ଜଂଗଲ ଭିତରେ, ସୌରାମାନଂକ ଭିତରେ

**ବୃକ୍ଷ-ଉପାସନା**

ପିପ୍‌ପଳ ବୃକ୍ଷକୁ ଦେବତା ବୋଲି ବିଶ୍ୱାସ କରିବାର ଦେଖାଯାଏ । ସେମାନେ କଣାବିକା ସମୟରେ ବିଶ୍ୱାସର ନିଦର୍ଶନ ସ୍ୱରୂପ ଓସ୍ତପତ୍ରଟିଏ ହାତରେ ନଧରି କୌଣସି ଚୁକ୍ତି କରିବାକୁ ଯାଆଂତି ନାହିଁ । କ୍ରେତା ବା ବିକ୍ରେତାଂକ ମଧ୍ୟରୁ କିଏ ହେଲେ ଜଣେ ଓସ୍ତପତ୍ରଟିଏ ହାତ ପାପୁଲିରେ ରଖି ସେଥିରେ ଗୋଟିଏ ବଳିତା ଜଳାଂତି । ଆଉ ଜଣକ ଆଉ ଗୋଟିଏ ପତ୍ରଧରି ଅପର ହସ୍ତରେ ତାହା ଘୋଡାଇ ଦିଅଂତି । ସେତେବେଳେ ଯାଇ ସର୍ତ୍ତ ବା ଚୁକ୍ତି ସ୍ଥିରହୁଏ ।'[୨] ଇ. ଥର୍ଷ୍ଟନଂକ ପ୍ରଣୀତ Castes and Tribes of Southern India, Vol VI ଗ୍ରଂଥର ୩୩୫ ପୃଷ୍ଠାରେ ଏ ବିବୃତ୍ତି ଦିଆଯାଇଛି । ଶବରମାନେ କୌଣସି ଓସ୍ତଗଛରେ ( ଶୁଖିଲ ହେଉ ବା କଂଚା ହେଉ ) କେବେ ଚଢ଼ଂତି ନାହିଁ କି ଚୋଟ ଲଗାଂତି ନାହିଁ । ଏହାର କାରଣ ସେମାନଂକ ଗାଁ ମୁଖିଆଂକୁ ( ଗମାଂଗଂକୁ ) ପଚାରିଲେ ଉତ୍ତର ମିଳେ : 'ଏହା ଆମର ପୂର୍ବପୁରୁଷ କରି ଆସିଛଂତି ।' ଏଥିରୁ ଜଣାପଡ଼େ ପିପ୍‌ପଳ ଉପାସନା ସେମାନଂକର ପରଂପରା ସିଦ୍ଧି । ନେକ୍ରିଟୋମାନଂକୁ ଛାଡ଼ିଦେଲେ ଦାରୁଉପାସନା ମୂଳତ ପ୍ରଟୋ-ଅଷ୍ଟ୍ରେଲଏଡ୍ ବା ଶବର ଜାତିର । ଜଗନ୍ନାଥ ଉପାସନା ଦାରୁ ଉପାସନାମୂଳକ ହୋଇଥିବାରୁ ସେ ଶବର ଦେବତା ବିନା ଅନ୍ୟ କୌଣସି ଧର୍ମର ଦେବତା ବୋଲି କହିଲେ ଅସଂଗତ ହେବ । ଏଣୁ କହିପାରୁଁ ଜଗନ୍ନାଥ ଦାରୁଦେବତାରହିଁ ରୂପାଂତର ଏବଂ ସେ ମୂଳତ ଶବରମାନଂକର ଦେବତା ।'[୩]

## ଜଗନ୍ନାଥଂକର ପ୍ରାଚୀନତ୍ୱ

ଅଷ୍ଟ୍ରିକ୍‌ଭାଷୀ ଜନପ୍ରବାହର ବହୁପରେ ଭାରତବର୍ଷରେ ଦ୍ରାବିଡ଼ ଓ ଆର୍ଯ୍ୟଭାଷୀମାନଂକର ଆଗମନ ହୋଇଥିଲା । ତେଣୁ ଅଷ୍ଟ୍ରିକ୍‌ଭାଷୀ ଦ୍ରାବିଡ଼ ଆର୍ଯ୍ୟଭାଷୀ ତୁଳନାରେ ପ୍ରାଚୀନତର । ଅଷ୍ଟ୍ରିକ୍ ଭାଷାରେ 'ଅଷ୍ଟ୍ରିକ୍' ଶବ୍ଦର ଅର୍ଥ

---

୧ । ଡ଼ଃ ବେଣୀମାଧବ ପାଢ଼ୀଂକ ପ୍ରଣୀତ "ଦାରୁଦେବତା" ଦ୍ରଷ୍ଟବ୍ୟ ।

୨ । 'ଦାରୁଦେବତା'

୩ । ଏକ୍ସ

'ଅଗନ୍ତ' । ଏଥିରୁ ବୁଝିବାକୁ ହେବ ଯେ ଦ୍ରାବିଡ଼ ଓ ଆର୍ଯ୍ୟ ପ୍ରବାହର ବହୁ ପୂର୍ବରୁ ଅଷ୍ଟ୍ରିକ୍ ଦେବତା ଜଗନ୍ନାଥ ଏ ଦେଶରେ ପ୍ରତିଷ୍ଠିତ ହୋଇସାରିଥିଲେ । ଆର୍ଯ୍ୟ ମାନବର ଆଦିଗ୍ରଂଥ ଋକ୍‌ବେଦରେ ସମୁଦ୍ର ତୀରରେ ଏକ ଅପୁରୁଷ ଦାରୁ ଭାସୁଥିବା କଥାର ଉଲ୍ଲେଖ ଅଛି ।

"ଅଦୋ ଯଦ୍ଦାରୁ ପ୍ଲବତେ ସିଂଧୋ ପାରେ ଅପରୁଷମ୍ ।
ତଦାରଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ ।'
(ଋ, ୧୦ମ ମଣ୍ଡଳ, ସୂକ୍ତ ୧୫୫, ମଂତ୍ରି )

ଏହାର ଅର୍ଥ ପଂଡିତ ନୀଳକଂଠ ଦାସ ଏମ୍ ପ୍ରକାରେ କରିଛଂତି' :—

"The priest speaks to Durhanu (literally one whose speech is bad), you discard (cut or kill) A-rabhasva (the same as Alabhasva) that wood which is manifest (floats beyond (or in the coast of) the ocean, for that is no Purusha' Then you go to the best stratum (ie, the spiritual plane)*

ସିଂଧୁ ତୀରରେ ପ୍ରକଟିତ ଅପୁରୁଷ ଦାରୁକୁ ଛେଦନ କଲେ ପରମପଦ ଲାଭ ହେବ ବୋଲି ବୈଦିକ ଋଷି ଦୁର୍ହଣଂକୁ କହୁଛଂତି । ଏଇ ବୈଦିକ ସାକ୍ଷ୍ୟ ଦାରୁକୁ 'ଅପୁରୁଷ' କହିବା ଦ୍ୱାରା ଏହା ବୈଦିକ ଧର୍ମର ବାହାରେ କୌଣସି ଦେବମୂର୍ତ୍ତିକୁ (ଘୃଣାବ୍ୟଂଜକ ଅର୍ଥରେ) ବୁଝାଉଛି, କିଂବା 'ଅଣାର୍ଯ୍ୟ' ଦାରୁମୂର୍ତ୍ତିକୁ ବୁଝାଉଛି । ପରସ୍ତର ଅର୍ଥରେ ସାୟଣାଚାର୍ଯ୍ୟ ପୁରୁଷୋତ୍ତମ କ୍ଷେତ୍ରକୁହିଁ ବୁଝାଇଛଂତି । ('ଯଦ୍ଦାରୁ ପୁରୁଷୋତ୍ତମାଖ୍ୟଂ ଦେବତାଶରୀରଂ') ଏଇ ମଂତ୍ରୋକ୍ତ 'ପୁରୁଷ' ଶବ୍ଦଟି 'ପୁରୁଷୋତ୍ତମ'ର ସୂଚନା ବୋଲି କେହି କେହି ମନେ କରଂତି । 'ଦୁର୍ହଣ' ଶବ୍ଦଟି ଅଲକ୍ଷ୍ମୀ-ବାଚକ ।

ଏଥିରୁ ସିଂଧୁତୀରବର୍ତ୍ତୀ ଅଷ୍ଟ୍ରିକ୍‌ଭକ୍ତୀ ଦାରୁଦେବତା ପ୍ରତି ବୈଦିକ ଋଷିର ଘୃଣାଭାବହିଁ ପ୍ରକାଶ ପାଉଛି । ଋକ୍‌ବେଦ ଆଜକୁ ପ୍ରାୟ ଚୁଇହଜାର ବର୍ଷ ତଳେ ୧

* 'Hints on the Significance and History of Jagannath— Pandit Nilakantha Das. (Nikhil Bharat Prabasi Utkal Simmelan Souvenir, Calcutta, Jany, 1959)

୧ । ମ୍ୟାକ୍ସ ମୁ୍ୟଲର ଋକ୍‌ବେଦର ପ୍ରଥମ ସଂସ୍କରଣରେ ଋକ୍‌ବେଦର କାଳ ଖ୍ରୀ: ପୂ ୧୨୦୦ ବର୍ଷ ବୋଲି କହିଛଂତି । ଗ୍ରିଫିଥ୍‌ସନ୍ ତାଂକ 'Hymns From Rig Veda' ଗ୍ରଂଥରେ ଏହା ଖ୍ରୀ: ପୂ ୧୫୦୦ ବେଳେ ଲେଖା ହୋଇଥିଲା ବୋଲି କହିଂଛନ୍ତି । "Vedic Reader" ପ୍ରଣେତା ମ୍ୟାକଡୋନେଲ ଖ୍ରୀ: ପୂ ୧୩୦୦ ଶତକ ଏବଂ ଭିଣ୍ଟର ଖ୍ରୀ ପୂ ୨୦୦୦-୧୫୦୦ ବୋଲି ନିର୍ଣ୍ଣୟ କରିଛଂତି । Weber ତାଂକ 'History of Indian Literature' ରେ ଖ୍ରୀ: ପୂ ୧୬୦୦ ଶତକ ଭାରତରେ ଆର୍ଯ୍ୟ ଆଗମନ କାଳ ବୋଲି କହଂତି ।

ଲକ୍ଷିତ ହୋଇଥିଲା । ତେଣୁ ଜଗନ୍ନାଥଂକ ଅସ୍ତିତ୍ୱ ଯେ ତାର ବହୁପୂର୍ବରୁ, ଆର୍ଯ୍ୟ-ଆଗମନ ପୂର୍ବରୁ ଥିଲା ଏଥିରେ ଆଶ୍ଚର୍ଯ୍ୟର କଥା କିଛି ନାହିଁ ।

ପଂଚଦଶ ଶତାବ୍ଦୀର ପ୍ରଥମ ପାଦରେ ନୀଳାଂବର ଦାସଂକ "ପୁରୁଷୋତ୍ତମ ଦେଉଳ ତୋଳା"ରେ ଦେଖୁଁ ଜଗନ୍ନାଥ ପ୍ରଥମେ 'ନୀଳମାଧବ' ନାମରେ, ପୂର୍ବ ସମୁଦ୍ର ତଟରେ, ବିଶ୍ୱାବସୁ ନାମକ ଶବର ଦ୍ୱାରା ଘୋର ଜଂଗଲ ଭିତରେ ପୂଜିତ ହେଉଥିଲେ । ମାଳବ ଦେଶର ରାଜା ଇଂଦ୍ରଦ୍ୟୁମ୍ନ ଏହା ନାରଦଂକଠୁ ଜାଣି ପାଖ ନିଜ ମଂତ୍ରୀ ବିଦ୍ୟାପତିଂକୁ ଏହାର ସଂଧାନ କରିବା ପାଇଁ ପଠାଇଲେ । ବିଦ୍ୟାପତି କୌଶଳ କରି ବିଶ୍ୱାବସୁଂକ ଅତିଥି ହେଲେ । ତା' ପରେ ସେ ବିଶ୍ୱାବସୁଂକ କନ୍ୟାକୁ (ଲଳିତା) ପ୍ରଣୟ ପାଶରେ ଆବଦ୍ଧ କଲେ । ଏହି କନ୍ୟା ସାହାଯ୍ୟରେ ସେ ନୀଳମାଧବଂକୁ ଦର୍ଶନ କରିଥିଲେ ଏବଂ ସେଠାକୁ ଯିବା ବାଟ ମଧ୍ୟ କୌଶଳକ୍ରମେ ଜାଣିଗଲେ । ତା' ପରେ ସେ ଯାଇ ଇଂଦ୍ରଦ୍ୟୁମ୍ନଂକୁ ସମସ୍ତ ଖବର ଦେଲେ । ଇଂଦ୍ରଦ୍ୟୁମ୍ନ ବହୁ ସୈନ୍ୟ ନେଇ ଓଡ଼ିଶା ଅଭିମୁଖେ ଯାତ୍ରା କଲେ । ବିଶ୍ୱାବସୁ ତାଂକ ବିରାଟ ସୈନ୍ୟବାହିନୀ ଦେଖି ଆତ୍ମସମର୍ପଣ କଲେ । ବାଂକ ଚର୍ଚ୍ଚିକାଠାରେ ଇଂଦ୍ରଦ୍ୟୁମ୍ନ ଓ ବିଶ୍ୱାବସୁଂକ ମଧ୍ୟରେ ଭେଟ ହେଲା । ଦୁହେଁ ମିତ୍ର ହେଲେ । ମାତ୍ର ନୀଳମାଧବ ଇଆଡେ ଅନ୍ତର୍ଧ୍ୟାନ ହୋଇଗଲେ । ତେଣୁ ଇଂଦ୍ରଦ୍ୟୁମ୍ନ ୨୧ ଦିନ କାଳ ଅନ୍ନଜଳ ତ୍ୟାଗ କରି ଧାରଣା ଦେଇ ବସିଲେ । ତାଂକୁ ସ୍ୱପ୍ନ ହେଲା ଯେ ନୀଳମାଧବ ଦାରୁ ରୂପରେ ସମୁଦ୍ର ଜଳରେ ଭାସୁଛଂତି । ସେହି ଦାରୁରେ ମୂର୍ତ୍ତି ତିଆରି କରାଇ ସ୍ଥାପନ କଲେ ସେ ସେଥିରେ ବାସ କରିବେ ।……ତଦନୁସାରେ ବିଶ୍ୱକର୍ମାଂକୁ ଡକାଇ ଇଂଦ୍ରଦ୍ୟୁମ୍ନ ମୂର୍ତ୍ତି ତିଆରିର ବ୍ୟବସ୍ଥା କଲେ ।……('ଓଡ଼ିଶା ଇତିହାସ'—ଡ଼ଃ ହ: କୃ ମହତାବ୍)

'ବ୍ରହ୍ମପୁରାଣ'ରେ ଇଂଦ୍ରଦ୍ୟୁମ୍ନ 'ଇଂଦ୍ରନୀଳୀଖ୍ୟ ବିଗ୍ରହ'ଙ୍କୁ (ଯାହା ପୁରୁଷୋତ୍ତମରେ ପୂଜା ପାଉଥିଲେ) ସ୍ଥାପନା କରି ମଂଦିର ତୋଳାଇବା ପାଂଚବା କଥା, ଏବଂ ସେ ମୂର୍ତ୍ତି ଅଦୃଶ୍ୟ ହୋଇ ଯାଇ ସମୁଦ୍ରରେ ଦାରୁରୂପେ ଭାସୁଛଂତି ବୋଲି ସ୍ୱପ୍ନ ଦେଖିବା କଥା ଏବଂ ସେ ଦାରୁକୁ ଆଣି ମୂର୍ତ୍ତି ଗଢ଼ାଇ ଏକ ମଂଦିର ନିର୍ମାଣ କରାଇ ସ୍ଥାପନ କରିବା କଥା ଉଲ୍ଲେଖ କରାଯାଇଚି । ସ୍କଂଦ ପୁରାଣରେ ମଧ୍ୟ

---

* Kaigଂକ 'Rig-Veda'ରେ ଋଗ୍‌ବେଦର କାଳ ଖ୍ରୀ: ପୂ ୧୬୦୦ ଶତାବ୍ଦ ବୋଲି ନିର୍ଦ୍ଧାରିତ ହୋଇଚି । ଲୋକମାନ୍ୟ ତିଲକ 'ଓରିଅନ' ବା ସପ୍ତର୍ଷି-ମଂଡଳର ସୂତ୍ର ଧରି ଏହାର ସମୟକୁ ଅତିକ ପଛକୁ ଟାଣି ନେଇଛଂତି ।

ଅନୁରୂପ ଶ୍ଳୋକ ଦେଖିବାକୁ ମିଳେ । 'ଏଥିରେ 'ନ୍ୟଗ୍ରୋଧ ବୃକ୍ଷବି ନାରାୟଣ' ବୋଲି ଉଲ୍ଲେଖ ଥିବା ଦେଖୁଁ । ସ୍କନ୍ଦ ପୁରାଣସ୍ଥ 'ଉତ୍କଳଖଣ୍ଡ' ବର୍ଣ୍ଣିତ ପୁରୁଷୋତ୍ତମ ଚରିତ ପ୍ରାୟ ନୀଳାମ୍ବର ଦାସଙ୍କ 'ଦେଉଳତୋଳା'ର ଆଖ୍ୟାନ ସହ ମିଳିଯାଏ ଏବଂ ନୀଳଗିରି ନିକଟସ୍ଥ ରୋହିଣୀ କୁଣ୍ଡର ଉତ୍ତରକୁ ନୀଳମାଧବ ମୂର୍ତ୍ତି ଶବର ବିଶ୍ୱାବସୁ ଦ୍ୱାରା ପୂଜିତ ହୋଇ ଆସୁଥିବା କଥା ସେଥିରେ ଲେଖା ଅଛି ।[୧] (ମାତ୍ର ବେଢ଼ ଜନ୍ୟ ସାହାଯ୍ୟରେ ମୂର୍ତ୍ତି ଦେଖିବା କଥା ଏଥିରେ ନାହିଁ ।) ନାରଦ ପୁରାଣ, ପଦ୍ମପୁରାଣ, କପିଳ ସଂହିତା ଏବଂ ନୀଳାଦ୍ରି ମହୋଦୟ ପ୍ରଭୃତି ଗ୍ରନ୍ଥମାନଙ୍କରେ ତଥା ଓଡ଼ିଆ, ବଂଗଳା, ଓ ତେଲଗୁ ଭାଷାରେ ଲିଖିତ ବହୁ ପୋଥିମାନଙ୍କରେ ଜଗନ୍ନାଥ ପ୍ରଥମେ ଶବର ଦ୍ୱାରା ପୂଜିତ ହେଉଥିବା କଥା ଏବଂ ପରେ ଇନ୍ଦ୍ରଦ୍ୟୁମ୍ନ ତାଙ୍କୁ ଆଣି ବ୍ରାହ୍ମଣ୍ୟ ଦେବତା ରୂପେ ପ୍ରତିଷ୍ଠା କରିଥିବା ବିଷୟ ଲେଖା ଅଛି ।

ଜଗନ୍ନାଥ ଯେ ମୂଳତଃ ଶବର ଦେବତା ଏଥିରେ କୌଣସି ସନ୍ଦେହ ନାହିଁ । ତାଙ୍କର ଆଦ୍ୟ-ସତ୍ତା ନୀଳମାଧବ ଥିଲା ବୋଲି ମଧ୍ୟ ବହୁ ସୂତ୍ରରୁ ସନ୍ଧାନ ମିଳେ । ମାତ୍ର ଏହି ନୀଳମାଧବ ଅର୍ଥ କୃଷ୍ଣଙ୍କର ଏକ ନାମ ମାଧବ ବୋଲି ଧରିନେବା ଠିକ୍ ନୁହେଁ । ପଣ୍ଡିତ ନୀଳକଣ୍ଠ ଦାସ, ନୀଳମାଧବର ଏହିପରି ଅର୍ଥ କରିଛନ୍ତି—

> The name does not appear to be any Sanskrit name. The Sanskrit name may mean blue husband of Ma (mother) or Lakshmi. But even so, the word 'Nila' (blue) has no significance......... It can only mean Nila (blue) Ma (mother), and Dhaba (white) It is a Dravidian name which thus means black-mother-white.... which philosophically means non-existence—principles of generation—the phenomenal expression of the universe."

ମାତ୍ର 'ନୀଳମାଧବ' ଶବର ବା ଅଷ୍ଟ୍ରିକ୍ଭାଷୀଙ୍କ ଦେବତା ହୋଇଥିବାରୁ ଏବଂ ଦ୍ରାବିଡ଼ଭାଷୀମାନଙ୍କ ଆଗମନର ବହୁ ପୂର୍ବରୁ ତାଙ୍କର ଉପସ୍ଥିତି ପ୍ରମାଣିତ ହେଉଥିବାରୁ ଏ ଦେବ ଦ୍ରାବିଡ଼ ଭାଷାନୁସାରୀ ବ୍ୟାଖ୍ୟା ସଂଗତ ନୁହେଁ । ଯେପରି ମନେହୁଏ ଏ ଦେବ ହୁଏତ ନୀଳ ବା କୃଷ୍ଣବର୍ଣ୍ଣ କାଠର ମୂର୍ତ୍ତି ହୋଇଥିବ ଏବଂ ତାର ଆକାର ପ୍ରକାର ବିଶେଷ କିଛି ନ ଥିବ । ପରେ ଏହାକୁ ହିନ୍ଦୁ ପୁରାଣ ଗ୍ରନ୍ଥରେ 'ନୀଳମାଧବ' ଆଖ୍ୟା ଦିଆଯାଇଛି । 'ନୀଳମାଧବ' ବ୍ରାହ୍ମଣ୍ୟ ଧର୍ମ ବା ବୈଷ୍ଣବ ଧର୍ମର ପ୍ରାଧାନ୍ୟ ସୂଚିତ କରେ ।

୧ । 'ଦାରୁଦେବତା' ଦ୍ରଷ୍ଟବ୍ୟ

ସାରଳା ମହାଭାରତରେ ଇଂଦ୍ରଦ୍ୟୁମ୍ନ ଯିବା ଆଗରୁ ସେଠାରେ ଦାରୁ ଦେବତା ଶବର ଦ୍ୱାରା ଉପାସିତ ହୋଇ ଆସୁଥିବା କଥାର ସ୍ପଷ୍ଟ ଉଲ୍ଲେଖ ଅଛି । ଶବରଙ୍କ ବିପ୍ରକୁ ଅନ୍ଧପଟଲ ବାଂଧି ଚଂଦନବନ ଭିତରେ ଦାରୁବ୍ରହ୍ମଂଙ୍କୁ ଦେଖାଇବା ପରେ ସେ ଯାଇ ଇଂଦ୍ରଦ୍ୟୁମ୍ନଂଙ୍କୁ କହିଲେ—

"ଦାରୁବ୍ରହ୍ମ ମୂରତି ମୁଁ ଦେଖିଲି ବୋଲିବ ।
ଯମଜକ ବନେ ଏବେ ଗୃହଂରୁ ଚଳି ଦେବ" । (ବନପର୍ବ)

ଶ୍ରୀ ଗୁରୁଦାସ ସରକାର 'ମଂଦିରେର କଥା'ରେ ଲେଖିଛଂତି "ଶ୍ରୀ ଶ୍ରୀ ଜଗନ୍ନାଥ ସମ୍ଭବତଃ ଅଧମ ଶବର ଜାତି ନିକଟରୁ ଧାର ଆଣିଥିବା ଦେବତା ...ଯେଉଁ ଶବର ଜାତି ପ୍ରାଚୀନ କାଳରୁ ଆଜି ଯାଏଁ ଏଧର ପ୍ରସିଦ୍ଧି ଲଭ କରି ଆସିଛଂତି ଓ ଯାହାଂକର ବଂଶଧରଗଣ ବିଂଧ୍ୟାଚଳଠାରୁ ମହାନଦୀ ପର୍ଯ୍ୟଂତ ବିସ୍ତୃତ ଭୂମିରେ ବାସ କରି ଆସିଛଂତି ସେ ଶବର ଜାତିର କେଉଁ ଟେ ଖ ଟ୍ରଣ ଖ ର cult ବା Totem ପ୍ରତୀକଟିଏ ନେଇ ବ୍ରାହ୍ମଣମାନଂଙ୍କ ଦ୍ୱାରା "ଜଗନ୍ନାଥ" ନାମରେ ଅଭିହିତ ହୋଇ ଦେବତାରୂପେ ସ୍ୱୀକୃତ ହେବା ଅସଂଭବ ନୁହେଁ ।"

ଶ୍ରୀ କେଦାରନାଥ ମହାପାତ୍ର ଛାଂକ "ଇଂଦ୍ରଦ୍ୟୁମ୍ନ କିଂବଦଂତୀର ଐତିହାସିକତା" ପ୍ରବଂଧରେ 'ଜଗନ୍ନାଥଂଙ୍କୁ ଶବର ଦେବତା କହିବାର ଅନେକ କାରଣ ଅଛି' ବୋଲି ଉଲ୍ଲେଖ କରିଛଂତି ।

ମହା ମହୋପାଧ୍ୟାୟ ପଂଡିତ ହରିପ୍ରସାଦ ଶାସ୍ତ୍ରୀ, ଅଧ୍ୟାପକ ପ୍ରଭାତ ମୁଖାର୍ଜି ଏବଂ ମନମୋହନ ଗାଂଗୁଲି ପ୍ରମୁଖ କଂରୁ ମନେ କରଂତି ଯେ ଜଗନ୍ନାଥ, ବ୍ରାହ୍ମଣ୍ୟଧର୍ମର ଦେବତା । ଡଃ ହରେକୃଷ୍ଣ ମହତାବ୍ ଛାଂକ 'ଓଡ଼ିଶା ଇତିହାସ'ରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ବୌଦ୍ଧ ତ୍ରିରତ୍ନ, ଯଥା ବୁଦ୍ଧ, ଧର୍ମ ଓ ସଂଘର ରୂପାଂତର ବୋଲି ସାବ୍ୟସ୍ତ କରିବାକୁ ଚେଷ୍ଟା କରିଛଂତି । କନିଂଗହାମ ଜଗନ୍ନାଥଂଙ୍କ ରଥଯାତ୍ରା ସହିତ ସିଂହଳର ବୌଦ୍ଧଦଂତ-ଯାତ୍ରାର ସାମଂଜସ୍ୟ ଦେଖି ଏହା ବୌଦ୍ଧ ଅନୁଷ୍ଠାନ ବୋଲି ଅନୁମାନ କରଂତି । ଖ୍ରୀ : ୫ମ ଶତାବ୍ଦୀରେ ଚୀନ ପରିବ୍ରାଜକ ଫାହିୟାନ ଖୋଟାନରେ ଅନୁଷ୍ଠିତ ଯେଉଁ ରଥଯାତ୍ରାର ବର୍ଣ୍ଣନା କରିଛଂତି, ତାହା ସଂଗେ ଜଗନ୍ନାଥଂଙ୍କ ରଥଯାତ୍ରାର ବହୁ ସାମଂଜସ୍ୟ ଦେଖାଯାଏ । ଏଠାରେ କଂରୁ ସ୍ମରଣୀୟ ଯେ ସିଂହଳରେ ବୁଦ୍ଧଂଙ୍କ ଦଂତକୁ ବୈଶାଖ ଶୁକ୍ଳ ତ୍ରୟୋଦଶୀ ଦିନ ବାହାର କରି ହାତୀ ଉପରେ ଥୋଇ ମହାସମାରୋହରେ ଚୋ'ଅଧାତ୍ରୀ ୧୬ ସ୍ଥାନକୁ ନିଆଯାଏ । ସେ ଦଂତ ନଗର ବାହାରେ ଏକ

ମଣ୍ଡପରେ ଛଅଦିନ ରହିବା ପରେ ପୁଣି ମନ୍ଦିରକୁ ଫେରିଆସନ୍ତି । ମାତ୍ର ଜଗନ୍ନାଥ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ କାଷ୍ଠନିର୍ମିତ ରଥରେ ନିଜ ବଡ଼ଭାଇ ଓ ଭଉଣୀଙ୍କ ସହିତ ଗୁଣ୍ଡିଚା ବିଜେ କରନ୍ତି । ତେଣୁ ଏ ଦୁଇ ଅନୁଷ୍ଠାନ ମଧ୍ୟରେ ବହୁ ବୈଷମ୍ୟ ରହିଛି । *

**ରଥଯାତ୍ରା ପରମ୍ପରା**

ରଥଯାତ୍ରା କେବଳ ଏକ ବୌଦ୍ଧ-ଧର୍ମୀୟ ଅନୁଷ୍ଠାନ ନୁହେଁ । ରଥଯାତ୍ରାର ବର୍ଣ୍ଣନା ସମସ୍ତ ବାବିଲୋନୀୟ ସାହିତ୍ୟରେ ମିଳେ ବୋଲି ଧର୍ମାନନ୍ଦ କୋଶାମ୍ବୀ ଆପଣଙ୍କ 'ଭଗବାନ ବୁଦ୍ଧ' ଗ୍ରନ୍ଥରେ କହିଛନ୍ତି । ବାବିଲୋନିଆର ଅଧିବାସୀଙ୍କ ମଧ୍ୟରେ ବହୁ ପ୍ରାଚୀନ କାଳରୁ ପ୍ରଚଳିତ ଇଶ୍ତର ଦେବୀଙ୍କ ଗଳ୍ପଟିରୁ ଜଣାଯାଏ ଯେ ସେ 'ତମ୍ମୁଜ' ବା 'ଦମୁଜି' (ବୈଦିକ ଦମୁନସ୍) ନାମକ ଦେବତାଙ୍କଠାରେ ପ୍ରେମାସକ୍ତ ହେଲେ । କିନ୍ତୁ ଅକାଳରେ "ତମ୍ମୁଜ"ଙ୍କର ମୃତ୍ୟୁ ହେଲା । ତାଙ୍କୁ ପୁନର୍ଜୀବିତ କରିବା ପାଇଁ ଅମୃତ ଆଣିବାକୁ ଇଶ୍ତର ପାତାଳରେ ପ୍ରବେଶ କଲେ । ସେଠାର ରାଣୀ ଅଲ୍ଲତୁ ଥିଲେ ଇଶ୍ତରଙ୍କର ଭଉଣୀ । ତଥାପି ସେ ଇଶ୍ତରଙ୍କୁ ବହୁତ ଯନ୍ତ୍ରଣା ଦେଇଥିଲେ । କ୍ରମେ ତାଙ୍କର ସମସ୍ତ ଅଳଙ୍କାର କାଢ଼ି ନେଇ ତାଙ୍କୁ ରୁଗ୍ଣ କରିଦେଲେ, କାରାଗାରରେ ବନ୍ଦୀ କଲେ । ସ୍ଥିର ଛ'ମାସ ପର୍ଯ୍ୟନ୍ତ ଯନ୍ତ୍ରଣା ଭୋଗିବା ପରେ ଭଉଣୀ ଅଲ୍ଲତୁଙ୍କଠାରୁ ଅମୃତ ନେଇ ସେ ପୃଥିବୀକୁ ଫେରିଲେ । ଇଶ୍ତର ଯେଉଁ ଋତୁରେ ପାତାଳରୁ ମର୍ତ୍ତ୍ୟକୁ ଫେରିଲେ ସେହି ଋତୁରେ ତାଙ୍କର ଉତ୍ସବ 'ରଥଯାତ୍ରା' ହେଉଥିଲା । ନାଲିଆ ବଳଦ ଗାଡ଼ିରେ ଇଶ୍ତରଙ୍କର ରଥଯାତ୍ରା ହେଉଥିଲା ! ପରେ ଘୋଡ଼ାର ସନ୍ଧାନ ମିଳିବା ପରେ ଘୋଡ଼ାମାନେ ସେହି ରଥ ଟାଣିବାରେ ନିୟୋଜିତ ହେଲେ । ଋକବେଦରେ ଉଷାଦେବୀଙ୍କ ରଥରେ ନାଲିଆ ବଳଦ ଯୋଚି ହେବା କଥା ରହିଛି । ପୁଣି ଅରୁଣ ବର୍ଣ୍ଣ ଘୋଡ଼ା ଟଣା ରଥରେ ଉଷାଦେବୀ ଆସନ୍ତି ବୋଲି ଉକ୍ତ ଅଛି । "ଏଷା ଗୋଭିରରୁଣେଭିର୍ଯୁଜାନା" "ବହତ୍ୟରୁଣପ୍ସୁଭିରଶ୍ୱୈ" ଏହି ବର୍ଣ୍ଣନା ଉପରେ ବାବିଲୋନୀୟ ଗଳ୍ପର ପ୍ରଭାବ ପଡ଼ିଛି ବୋଲି ଅନୁମାନ କରାଯାଇପାରେ ।[୧] (ଋକ୍‌ବେଦ ୫ । ୮୦ । ୩ ଏବଂ ୭ । ୭୫ । ୬) ତେଣୁ ରଥଯାତ୍ରାର ପରମ୍ପରାଟି ଅତି ପ୍ରାଚୀନ । ସିଂହଳରେ ବୌଦ୍ଧ-ଦନ୍ତର 'ହାତିଯାତ୍ରା' ସଙ୍ଗେ ଏହାର ସାମଞ୍ଜସ୍ୟ ଦେଖାଇ ଏହାକୁ ବୌଦ୍ଧ ଧର୍ମାନୁଷ୍ଠାନ ବୋଲି କହିବା କିମ୍ବା ଜଗନ୍ନାଥଙ୍କୁ ବୌଦ୍ଧ-ଦେବତା କହିବା ଅସଙ୍ଗତ କଥା ।

---

* ଓ.ଇ

୧ ଧା : ଦେ

**ବୁଦ୍ଧଦନ୍ତ**

ବୁଦ୍ଧଙ୍କର ଦନ୍ତ ଜଗନ୍ନାଥଙ୍କ ମଧ୍ୟରେ ରହିଛି ବୋଲି ଏକ ଜନଶ୍ରୁତି ଅଛି । ମାତ୍ର ସିଂହଳର ଧର୍ମ-କୀର୍ତ୍ତିଙ୍କ ଦ୍ୱାରା ରଚିତ ପାଲି ଗ୍ରନ୍ଥ 'ଦାଠାଧାତୁ ବଂଶ'ରେ ଯେଉଁ ଗଳ୍ପ ଅଛି ସେଥିରୁ ଜଣାଯାଏ ଯେ ବୁଦ୍ଧଦେବଙ୍କ ମହାପରିନିର୍ବାଣ ପରେ ତାଙ୍କର ଜଣେ ଶିଷ୍ୟ ଖେମାତ୍ଥେର ବୁଦ୍ଧଙ୍କର ବାମ ଦନ୍ତଟିଏ ଆଣି ତତ୍କାଳୀନ କଳିଙ୍ଗ ରାଜା ବ୍ରହ୍ମଦତ୍ତଙ୍କୁ ଦେଇଥିଲେ । ବ୍ରହ୍ମଦତ୍ତ ସେ ଦନ୍ତକୁ ଏକ ସ୍ତୂପ ନିର୍ମାଣ କରାଇ ତହିଁରେ ସ୍ଥାପନା କରିଥିଲେ ଏବଂ ପୂଜାବିଧିର ବ୍ୟବସ୍ଥା କରିଥିଲେ । ସେ ସ୍ଥାନ ଦନ୍ତପୁର ନାମରେ ଖ୍ୟାତ ହେଲା । ଏଇ ଦନ୍ତପୁର ପୁରୀ ନୁହେ । ଏହାର ୮୦୦ ବର୍ଷ ପରେ ଖ୍ରୀ ୩୦୦ ରେ ପାଟଳିପୁତ୍ରର ରାଜା ଗୌତମୀ ପୁତ୍ର ସାତକର୍ଣ୍ଣୀ ତାଙ୍କ ସେନାପତି ଚୈତ୍ୟାୟନଙ୍କ ଦ୍ୱାରା କଳିଙ୍ଗ ଜୟକରି ତତ୍କାଳୀନ କଳିଙ୍ଗରାଜା ଗୁହଶିବଙ୍କ ସହ ଦନ୍ତକୁ ପାଟଳିପୁତ୍ର ନେଇ ଯାଇଥିଲେ । ମାତ୍ର ଦନ୍ତର ମାହାତ୍ମ୍ୟରେ ବିସ୍ମିତ ହୋଇ ସେ ବୌଦ୍ଧଧର୍ମ ଗ୍ରହଣକରିଥିଲେ । ପରେ ସେ ଗୁହଶିବ ଓ ଦନ୍ତକୁ କଳିଙ୍ଗ ପଠାଇ ଦେଇଥିଲେ । ଦନ୍ତ କଳିଙ୍ଗ ଆସି ଦନ୍ତପୁରରେ ପ୍ରତିଷ୍ଠିତ ହେଲା । ଏହାର କିଛିକାଳ ପରେ କ୍ଷୀରଧର ରାଜାଙ୍କ ଭ୍ରାତୃପୁତ୍ର ଦନ୍ତପୁର ଆକ୍ରମଣ କରିବାରୁ ଗୁହଶିବ ନିହତ ହେଲେ । ତା'ପରେ ଗୁହଶିବଙ୍କ କନ୍ୟା ହେମମାଳା ଏବଂ ତାଙ୍କ ସ୍ୱାମୀ ଉଜ୍ଜୟିନୀ ରାଜକୁମାର 'ଦନ୍ତକୁମାର' ଦନ୍ତକୁ ନେଇ ତାମ୍ରଲିପ୍ତ ବନ୍ଦର ବାଟେ କରମଣ୍ଡଳ ଉପକୂଳ ଦେଇ ଜାହାଜରେ ସିଂହଳ ଚାଲିଗଲେ । ସିଂହଳର ରାଜା ମହାସେନଙ୍କ ପୁତ୍ର ମେଘବନ ( ଖ୍ରୀ ୩୦୨-୩୩୦ ) ଏଇ ଦନ୍ତକୁ ଗ୍ରହଣ କରି ମହା ଅନୁରାଗରେ ପୂଜାକଲେ ଏବଂ ନିଜରାଜ୍ୟର ଅନୁରାଧାପୁରଠାରେ ମନ୍ଦିର ନିର୍ମାଣ କରାଇ ଦନ୍ତକୁ ପ୍ରତିଷ୍ଠା କଲେ । ସେହିଦିନୁ ଦନ୍ତ ସିଂହଳରେ ଅଛି । ତେଣୁ ବୁଦ୍ଧଦନ୍ତ ଆଉ କଳିଙ୍ଗରେ ନାଇ । ଯେତେବେଳେ ବ ଏହା କଳିଙ୍ଗରେ ଥିଲା ସେତେବେଳେ ଏହା ଦନ୍ତପୁରରେ ରହିଥିଲା, ପୁରୀରେ ନୁହେ । ( ଓ. ଇ. ଓ ଦା.ଦେ )

ଜଗନ୍ନାଥଙ୍କୁ ବୌଦ୍ଧଧର୍ମର ଦେବତା କହିବା ଅର୍ଥ ତାଙ୍କର ସତରହଜାର ବର୍ଷର ଅସ୍ତିତ୍ୱକୁ ଅସ୍ୱୀକାର କରିବା । ବୌଦ୍ଧଧର୍ମର ଆରମ୍ଭ ମାତ୍ର ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀରେ । ମାତ୍ର ଜଗନ୍ନାଥଙ୍କୁ ଆମେ ଋକ୍‌ବେଦର ଅର୍ଥାତ୍ ଖ୍ରୀ : ପୂ ୧୦୦୦ ଶତାବ୍ଦୀରୁ ପାଉଁ । ଜଗନ୍ନାଥଙ୍କୁ ବୌଦ୍ଧ ତ୍ରିରତ୍ନର ରୂପାନ୍ତର କହିବା ସେଥିପାଇଁ ଅସଂଗତ । ସେ ବୌଦ୍ଧଧର୍ମର ବହୁ ପୂର୍ବରୁ ଅସ୍ତ୍ରିକ୍ ଦେବତାରୂପେ ବୃକ୍ଷୋପାସନା ମଧ୍ୟରେ ରହିଆସିଛନ୍ତି । ଜଗନ୍ନାଥଙ୍କ ଉପରେ ଅନ୍ୟାନ୍ୟ ବହୁ ଧର୍ମପନ୍ଥ ବୌଦ୍ଧ ଧର୍ମର ମଧ୍ୟ ପ୍ରଭାବ ପଡ଼ିଛି । ବୌଦ୍ଧଧର୍ମ ତାଙ୍କ ଭିତରେ ଅନ୍ୟ ବହୁ ଧର୍ମ ପରି ଏକ

ପରମ ସମନ୍ୱୟରେ ଲୀନ ହୋଇ ଯାଇଛି । ସେଥିପାଇଁ ବହୁ କବି ଓ ଲେଖକ ତାଙ୍କୁ ବୁଦ୍ଧ-ମୂର୍ତ୍ତିରୂପେ କଳ୍ପନା କରିଛନ୍ତି ଏବଂ କରିବା ମଧ୍ୟ ସ୍ୱାଭାବିକ । ସାରଳା ଦାସ ତାଙ୍କ ମହାଭାରତରେ ତାଙ୍କୁ 'ବୌଦ୍ଧ ମୂରତି' ବୋଲି ଉଲ୍ଲେଖ କରିଛନ୍ତି । ଯଥା :—'ବୌଦ୍ଧ ରୂପରେ ବିଜେ ଅଛୁ ଜଗନ୍ନାଥେ' ( ସଭାପର୍ବ ), 'ସଂସାର ଉଦ୍ଧାର ନିମନ୍ତେ ବୌଦ୍ଧ ସ୍ୱରୂପ '( ଶଲ୍ୟପର୍ବ ) 'ବୌଦ୍ଧ ରୂପେ ବିଜେ ଛନ୍ତି ଜଗନ୍ନାଥେ' ଇତ୍ୟାଦି ।

## ଜଗନ୍ନାଥଙ୍କ ଉପରେ ଗଣ-ଗୋଷ୍ଠୀୟ ସମାଜର ପ୍ରଭାବ

ଜଗନ୍ନାଥ-ବଳଭଦ୍ର-ସୁଭଦ୍ରା ଏହି ଭାଇ-ଭଉଣୀ ଏକାଠିକ ଭାରତର ଧର୍ମଜଗତରେ ବିରଳ । ଏହା ପ୍ରାଗୈତିହାସିକ ଗଣ-ଗୋଷ୍ଠୀୟ ସମାଜର ହିଁ ସଙ୍କେତ ବହନ କରେ । ସେ ସମାଜ ଥିଲା ମାତୃ-ପ୍ରଧାନ । ତେଣୁ ଭାଇ-ଭଉଣୀ ସମାବେଶ ତାର ଏକ ଅପରିହାର୍ଯ୍ୟ କ୍ରମପରିଣାମ । ବହୁ ପରେ ସାଂଖ୍ୟର ପୁରୁଷ-ପ୍ରକୃତି ସୂତ୍ର ଧରି ତନ୍ତ୍ର ପ୍ରଭାବରେ ଖ୍ରୀଷ୍ଟୀୟ ୮ମ ଓ ୯ମ ଶତାବ୍ଦୀ ଆଡ଼କୁ ଅବତାର ଓ ତାଙ୍କ ଶକ୍ତି ମଧ୍ୟରେ ପତି-ପତ୍ନୀ ସମ୍ପର୍କ ପରିକଳ୍ପିତ ହେଲା । ଏହି ପୂର୍ବରୁ

**ସାତ୍ୱତ ଧର୍ମ**

ସାତ୍ୱତ ଧର୍ମ ମାଧ୍ୟମରେ କୃଷ୍ଣ-ବାସୁଦେବଙ୍କ ପୂଜା ଏବଂ ବଳରାମଙ୍କ ପୂଜା ପ୍ରାୟ ତିନି ହଜାର ବର୍ଷ ହେଲା ପ୍ରତିଷ୍ଠିତ ହେଲଣି । ତୈତ୍ତିରୀୟ ଆରଣ୍ୟକରେ "ନାରାୟଣାୟ ବିଦ୍ମହେ ବାସୁଦେବାୟ ଧୀମହି ତନ୍ନୋ ବିଷ୍ଣୁ ପ୍ରଚୋଦୟାତ୍" ଗାୟତ୍ରୀ ମନ୍ତ୍ର ଦେଖିବାକୁ ମିଳେ । ଛାନ୍ଦୋଗ୍ୟ ଉପନିଷଦରେ ଘୋର-ଅଙ୍ଗିରସ-ଶିଷ୍ୟ ଦେବକୀପୁତ୍ର କୃଷ୍ଣଙ୍କ ପ୍ରସଙ୍ଗ ଅଛି । ପ୍ରାୟ ବାଇଶି ଶହ ବର୍ଷ ପୂର୍ବେ ଉତ୍କୀର୍ଣ୍ଣ ଘୋଷୁଣ୍ଡୀ ଲିପିରେ ଉକ୍ତ ଅଛି ଯେ ପାରାଶରୀୟ ପୁତ୍ର ଗାଜାୟନ, ନାରାୟଣବାଟ ନାମକ ସ୍ଥାନରେ ଭଗବାନ ସଙ୍କର୍ଷଣ ଓ ବାସୁଦେବଙ୍କ ଶିଳାପ୍ରାକାର ନିର୍ମାଣ କରାଇଥିଲେ । ଏହି ସମୟର ବେସନଗର ଲିପିରେ ଗରୁଡ଼ଧ୍ୱଜ ବିଷ୍ଣୁ ( କୃଷ୍ଣ ), ତାଳଧ୍ୱଜ ସଙ୍କର୍ଷଣ, ମକରଧ୍ୱଜ ପ୍ରଦ୍ୟୁମ୍ନ ଏବଂ ବନତଢଙ୍କ ଦେବତାରୂପେ ମୃଗଧ୍ୱଜ ଅନିରୁଦ୍ଧ ଏହି 'ଚତୁର୍ବ୍ୟୂହ' ପୂଜାର ପରିଚୟ ମିଳେ । ବାଳଗଙ୍ଗାଧର ତିଲକ 'ଗୀତାରହସ୍ୟ'ରେ ଉପନିଷଦ୍ ପରେ ଏବଂ ବୁଦ୍ଧଙ୍କ ଆବିର୍ଭାବ ପୂର୍ବରୁ ବାସୁଦେବ ଭକ୍ତିମୂଳକ "ଭାଗବତଧର୍ମ" ପ୍ରଚଳିତ ଥିବା କଥା ଲେଖିଛନ୍ତି । ଜର୍ମାନ ପଣ୍ଡିତ ବ୍ୟୁଲର ମଧ୍ୟ ଜୈନ ତୀର୍ଥଙ୍କର ମହାବୀରଙ୍କ ଆବିର୍ଭାବ ପୂର୍ବରୁ ଦେବକୀ-ପୁତ୍ର କୃଷ୍ଣଙ୍କ (ବାସୁଦେବ) ଉପାସନାମୂଳକ ଧର୍ମ ଭାରତରେ

* ଏ ବିଷୟ ଶ୍ରୀ ଅରବିନ୍ଦ ଏବଂ ଡଃ ସର୍ବପଲ୍ଲୀ ରାଧାକୃଷ୍ଣନ ମଧ୍ୟ ନିଜ ନିଜ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

ପ୍ରଚଳିତ ଥିଲା ବୋଲି କହୁଂଛି । ତା'ଛଡ଼ା ଖ୍ରୀ: ପୂ ଅଷ୍ଟମ ଶତାବ୍ଦୀର ବୌଧାୟନଂକ ଗୃହ୍ୟସୂତ୍ରରେ "ଓଁ ନମୋ ଭଗବତେ ବାସୁଦେବାୟ" ମଂତ୍ରର ଉଲ୍ଲେଖ ଏବଂ ପାଣିନିଂକ ଅଷ୍ଟାଧ୍ୟାୟୀ ଗ୍ରଂଥରେ ବାସୁଦେବ ପୂଜାର ଉଲ୍ଲେଖ ଦେଖି କହୁଥାନ୍ତି ଯେ କୃଷ୍ଣ ବାସୁଦେବ ଖ୍ରୀ:ପୂ: ଅଷ୍ଟମ ଶତାବ୍ଦୀ ପୂର୍ବରୁ ଉପାସିତ ହୋଇ ଆସୁଥିଲେ* । ରାଧା-କୃଷ୍ଣ ବା ଅବତାରଂକ ସଙ୍ଗ ତାଂକ ଶକ୍ତିର ଉଦ୍ଭବ ହେବାର ବହୁ ପୂର୍ବରୁ କୃଷ୍ଣ-ବାସୁଦେବ ଓ ସଂକର୍ଷଣ ପୂଜା ଏ ଦେଶରେ ଚଳି ଆସୁଥିଲା । ଏଇ ଭ୍ରାତା-ଭଗିନୀ ସମାବେଶ ଯେ ପ୍ରାଚୀନ ଗଣ-ଗୋଷ୍ଠୀୟ ସମାଜରହିଁ ସ୍ମାରକ ଏଥିରେ କୌଣସି ସନ୍ଦେହ ନାହିଁ । ତା'ଛଡ଼ା ପ୍ରାଚୀନ ଗଣ-ସମାଜର ସାମ୍ୟଧର୍ମ ପୁଣି ଜଗନ୍ନାଥ ମଂଦିରରେ ଯେପରି ଦୃଢ଼ ଭାବରେ ପ୍ରତିଷ୍ଠିତ ତାହା ଭାରତରେ ଅନ୍ୟ କୌଣସି ମଂଦିରରେ ଦେଖାଯାଏନାହିଁ ।

ସୁତରାଂ ଅବଶ୍ୟ ଶ୍ରୀକୃଷ୍ଣ (ଜଗନ୍ନାଥ), ବଳରାମ ଏବଂ ସୁଭଦ୍ରାଂକର ପରିକଳ୍ପନା ବା ପ୍ରତିଷ୍ଠା ହୋଇ ନଥିବ । ତାର କାରଣ ଜଗନ୍ନାଥ ଥିଲେ ମୂଳତ ଅଷ୍ଟ୍ରିକ୍ ଭାଷୀଂକର ଦେବତା ଏବଂ ବୃକ୍ଷୋପାସନାରେହିଁ ତାଂକର ମୂଳ ନିହିତ । ପ୍ରଥମେ ହୁଏତ ଅଷ୍ଟ୍ରିକ୍ ଭାଷୀ ଗୋଷ୍ଠୀର ଶବରମାନଂକର କୌଳିକ 'ଟୋଟେମ' (ବା ସଙ୍କେତ) ରୂପେ ସେ ବୃକ୍ଷଦେହରେ ରହୁଥିବେ । ପରେ ତାଂକ ଉପରେ ଦ୍ରାବିଡ଼ ବା ଆଦି ଜୈନଧର୍ମୀମାନଂକର ପ୍ରଭାବ ପଡ଼ୁଥିବ ଏବଂ ତା ଫଳରେ ବହୁରୂପ ହେଲେ ମଧ୍ୟ, ସେଇ ବୃକ୍ଷ କ୍ରମେ ମୂର୍ତ୍ତି ପରିଗ୍ରହଣ କରିଥିବ । ଜୈନମାନେହିଁ ଭାରତରେ ପ୍ରଥମେ ମୂର୍ତ୍ତିପୂଜା ପ୍ରଚଳନ କରିଥିଲେ । ଏକଥା 'ଶ୍ରମଣ ଭଗବାନ ମହାବୀର' ଗ୍ରଂଥରେ ବିଶେଷ ଭାବରେ ବର୍ଣ୍ଣିତ ହୋଇଛି । ମହେଂଜୋଦାରୋ ଓ ହରପ୍ପା ପ୍ରଭୃତିରୁ ମିଳିଥିବା ଜୈନ ମୂର୍ତ୍ତିମାନହିଁ ଏହାର ପ୍ରମାଣ । ଏହାପରେ ଇଂଦ୍ରଦ୍ୟୁମ୍ନ ଜଗନ୍ନାଥଂକୁ କରଗତ କରିବାପରେ ଆରଂଭ ହେଲା ତାଂକର ଆର୍ଯୀକରଣ । ଜଗନ୍ନାଥଂକର ଆର୍ଯୀକରଣ ପରେ କୃଷ୍ଣ-ବାସୁଦେବ (ଜଗନ୍ନାଥ), ବଳରାମ (ବଳଭଦ୍ର) ଏବଂ ସୁଭଦ୍ରା ଏବଂ ଧର୍ମଚକ୍ରର ବିକୃତରୂପ ସୁଦର୍ଶନଚକ୍ର ପ୍ରଭୃତିଂକର ଆବିର୍ଭାବ ଘଟିଥିବ । ପଂଡିତ ନୀଳକଂଠଂକ ମତରେ ଇଂଦ୍ରଦ୍ୟୁମ୍ନ ଗଂଗବଂଶର ଚୋଡ଼ଗଂଗ ଦେବଂକ (ଖ୍ରୀ : ୧୦୭୭—୧୧୪୭) ଛଡ଼ା ଅନ୍ୟ କେହି ନୁହଂନ୍ତି ।

---

* ବୌଧାୟନ ଖ୍ରୀ: ପୂ ନିମ ଶତାବ୍ଦୀର ଏବଂ ପାଣିନି ଖ୍ରୀ: ପୂ ୭ମ ଶତକର ଲୋକ । "Early History of Vaishnav Sect'—H. C. Rai Chodhuary, ଓ "Ancient Indian Historical Tradition'—F. E. Pergiter ଦ୍ରଷ୍ଟବ୍ୟ

ଏବଂ ଚୋଡ଼ଗଙ୍ଗଙ୍କ ଧର୍ମଗୁରୁ ରାମାନୁଜ ଆଚାର୍ଯ୍ୟ ( ଯିଏ ସେତେବେଳେ ପୁରୀରେ ଆସି ରହୁଥିଲେ ଏବଂ ଏମାର ମଠ ପ୍ରତିଷ୍ଠା କରିଥିଲେ ) କହୁଛନ୍ତି ସ୍କନ୍ଦପୁରାଣର 'ଉତ୍କଳ ଖଣ୍ଡ'ରେ ବର୍ଣ୍ଣିତ 'ନାରଦ'। ଏଇ ଚୋଡ଼ଗଙ୍ଗହିଁ ପ୍ରଥମେ ଶବରମାନଙ୍କ ଦ୍ୱାରା ପୂଜିତ ନିମ୍ବକାଠର ଦେବତା 'ଶବରୀ ନାରାୟଣ'ଙ୍କୁ ଆଣି ଏକ ପ୍ରାସାଦ ନିର୍ମାଣ କରାଇ ତହିଁରେ ସ୍ଥାପନା କରିଥିଲେ। ସେ ପୁଣି କହନ୍ତି ଯେ 'କଳିଙ୍ଗ ଜିନ' କହିଲେ ଜଗନ୍ନାଥହିଁ ବୁଝାନ୍ତି। ଅଷ୍ଟ୍ରିକ୍ ଦେବତା ଜଗନ୍ନାଥ ଦ୍ରାବିଡ଼ ଜୈନଧର୍ମୀଙ୍କ ଦ୍ୱାରା "କଳିଙ୍ଗ ଜିନ"ରେ ରୂପାନ୍ତରିତ ହୋଇଥିଲେ। ମଗଧର ରାଜା ନନ୍ଦ ( ଖ୍ରୀ : ପୂ ୫୦୦—୪୦୦ ) ଏହି କଳିଙ୍ଗ ଜିନଙ୍କୁ କଳିଙ୍ଗ ଜୟକରି ନିଜ ରାଜ୍ୟକୁ ନେଇ ଯାଇଥିଲେ। ପରେ ବୀର ସମ୍ରାଟ ଖାରବେଳ ( ଖ୍ରୀ. ପୂ ୨୦୦ ) ଯେ କି ଜଣେ ପରମ ଜୈନ ଥିଲେ—ମଗଧ ଆକ୍ରମଣ କରି କଳିଙ୍ଗ ଜିନଙ୍କୁ ଉଦ୍ଧାର କରି ନିଜ ଦେଶକୁ ଫେରାଇ ଆଣିଥିଲେ। ସେ ଯାହାହେଉ ଜଗନ୍ନାଥଙ୍କ ଆର୍ଯ୍ୟକରଣ ପରେହିଁ କୃଷ୍ଣ-ବଳରାମ-ସୁଭଦ୍ରା ବା ଜଗନ୍ନାଥ-ବଳଭଦ୍ର-ସୁଭଦ୍ରାଙ୍କର ପ୍ରବର୍ତ୍ତନ ହୋଇଥିଲା। ଏହା ଜଗନ୍ନାଥ ଆର୍ଯ୍ୟ-ପରିସର ଅନ୍ତର୍ଭୁକ୍ତ ହେବା ପରର କଥା। କୃଷ୍ଣ-ବଳରାମ ପୂଜା ସାତ୍ୱତ ଧର୍ମ ମାଧ୍ୟମରେ ବହୁ ପୂର୍ବରୁ ଚାଲି ଆସୁଥିଲା।*

## ଜଗନ୍ନାଥ ଓ ଜୈନ-ଧର୍ମ।

ଜଗନ୍ନାଥ ଧର୍ମ ବାସ୍ତବିକ ସର୍ବ ଧର୍ମର ସମନ୍ୱୟ। ଏହା ଖାଲି ଆର୍ଯ୍ୟୋତ୍ତର କାଳର ସମସ୍ତ ଧର୍ମୀୟ ମତବାଦର ନୁହେଁ, ପ୍ରାକ୍-ଆର୍ଯ୍ୟ କାଳର ଅଷ୍ଟ୍ରିକ୍ ଓ ଦ୍ରାବିଡ ଧର୍ମ-ଧାରଣାର ମଧ୍ୟ ସମ୍ମିଶ୍ରଣ। ଆର୍ଯ୍ୟ ପରିସର-ଭୁକ୍ତ ହେବା ପୂର୍ବରୁ ଜଗନ୍ନାଥଙ୍କ ଉପରେ ଦ୍ରାବିଡ଼ ପ୍ରଭାବ ଏବଂ ତା'ପରେ ବୌଦ୍ଧ ପ୍ରଭାବ ବିସ୍ତୃତ ଭାବରେ ପଡ଼ିଥିଲା।

ଯେଉଁ ଦ୍ରାବିଡ଼ ସଭ୍ୟତାର ନିଦର୍ଶନ ମହେଞ୍ଜୋଦାରୋ-ହରପ୍ପା ପ୍ରଭୃତିରୁ ମିଳେ, ସେଇ ଦ୍ରାବିଡ଼ମାନେ ଥିଲେ ମୂଳତଃ ଜୈନ। ମହେଞ୍ଜୋଦାରୋରୁ ମିଳିଥିବା ପ୍ରତ୍ନଦ୍ରବ୍ୟଗୁଡ଼ିକରୁ ପ୍ରମାଣ ମିଳେ ଯେ ସେମାନେ ଥିଲେ ଶିବଭକ୍ତ ଏବଂ କେତେକ ପରିମାଣରେ ବୃକ୍ଷ-ଧର୍ମୀ, ଯାହା ସେମାନେ ଅଷ୍ଟ୍ରିକମାନଙ୍କଠାରୁ ଗ୍ରହଣ

---

* ପଦ୍ମପୁରାଣ ମତରେ, "ସତ୍ତ୍ୱସ୍ୱରୂପ, ସତ୍ତ୍ୱାଶ୍ରୟ ସତ୍ତ୍ୱଗୁଣାତ୍ମକ କେଶବଙ୍କୁ ଯିଏ ଅନନ୍ୟମନରେ ଉପାସନା କରେ, ସେ ସାତ୍ୱତ। କୂର୍ମପୁରାଣରେ କୁହାଯାଇଛି, ଯଦୁବଂଶୀୟ ଅଂଶୁଙ୍କ ପୁତ୍ର ସତ୍ୱତ, ତାଙ୍କ ପୁତ୍ର ସାତ୍ୱତ ନାରାୟଣଙ୍କ ନିକଟରୁ ଏଇ ଧର୍ମକୁ ପାଇ ପ୍ରଚାର କରିଥିଲେ। ଏହା ଅତି ପ୍ରାଚୀନ ଧର୍ମ।

କରୁଥିଲେ । ସେମାନଙ୍କର ଧର୍ମହିଁ ଥିଲା ଜୈନ ଧର୍ମ । ଏହି ଦ୍ରାବିଡ଼ମାନଙ୍କୁ ବୈଦିକ ଆର୍ଯ୍ୟମାନେ ବେଦରେ 'ଅସୁର' ନାମରେ ଅଭିହିତ କରୁଥିଲେ । ଏହି ଅସୁରମାନେ ଏସିରୀୟଙ୍କ ଛଡ଼ା ଅନ୍ୟ କେହି ନୁହଁନ୍ତି । ଅସୁର ଜାତି ସେମିଟିକ୍ ପରିବାରର ଲୋକ ।** ସୁମେରିଆନ ସନ୍ନ୍ୟାସୀମାନଙ୍କ ସହିତ ଦ୍ରାବିଡ଼ ଜୈନଭିକ୍ଷୁମାନଙ୍କର ମୁଣ୍ଡ ଲଣ୍ଡା ହେବା ଆଦି କେତେକ ବ୍ୟବହାରିକ ସାମଞ୍ଜସ୍ୟ ଦେଖାଯାଏ । ଏମାନେ ଯେ ସିନ୍ଧୁ ସଭ୍ୟତାର ପ୍ରତିଷ୍ଠାତା ଏହା ଡଃ ସୁନୀତିକୁମାର ଚାଟାର୍ଜି ପ୍ରମୁଖ ସମସ୍ତେ ସ୍ୱୀକାର କରନ୍ତି । ଏହି ସଭ୍ୟତାର ଗୌରବର ଯୁଗ ଥିଲା ଆନୁମାନିକ ଖ୍ରୀ : ପୂ ୩୨୫୦—୨୭୫୦ ।[୧]

ପୁରୁଷୋତ୍ତମ ତତ୍ତ୍ୱ

'ପୁରୁଷୋତ୍ତମ' ତତ୍ତ୍ୱଟି ଜୈନ ପରମ୍ପରାରୁ ଗୃହୀତ । ଜୈନ ଧର୍ମଶାସ୍ତ୍ର ଅନୁସାରେ ଅଧ୍ୟାତ୍ମଶାସ୍ତ୍ରଙ୍କ ମଧ୍ୟରେ ପୁରୁଷୋତ୍ତମ ହେଉଛନ୍ତି ସର୍ବଶ୍ରେଷ୍ଠ । ଏହି ପୁରୁଷୋତ୍ତମ ଗୀତା-ବର୍ଣ୍ଣିତ ପୁରୁଷୋତ୍ତମଠାରୁ ସ୍ୱତନ୍ତ୍ର ଓ ବହୁ ପ୍ରାଚୀନ । ପଣ୍ଡିତ ନୀଳକଣ୍ଠ 'ଓଡ଼ିଆ ସାହିତ୍ୟର କ୍ରମ-ପରିଣାମ' ଗ୍ରନ୍ଥରେ କହନ୍ତି, ଗୀତାରେ ଯେଉଁ ପୁରୁଷୋତ୍ତମ ତତ୍ତ୍ୱ ବ୍ୟାଖ୍ୟାତ ହୋଇଛି ତାହା ହେଉଛି ଆଗରୁ ଲୋକରେ ପ୍ରଚଳିତ ଥିବା କୌଣସି ଉପାସ୍ୟ ଦେବତା ପୁରୁଷୋତ୍ତମଙ୍କୁ ଦାର୍ଶନିକଭାବରେ ବୁଝାଇବା ପାଇଁ । ମନେହୁଏ ଗୀତାରେ ଏ ପରମ ସମାଧାନର ତତ୍ତ୍ୱଟି ପ୍ରକାଶିତ ଓ ପ୍ରଚାରିତ ହେଲା ବେଳକୁ ଏହି ଦର୍ଶନର ସଙ୍କେତରୂପେ ପୁରୁଷୋତ୍ତମ ଉପାସନା ଲୋକରେ ପ୍ରତିଷ୍ଠିତ ହୋଇ ସାରିଥିଲା ।

ଏହି ପୁରୁଷୋତ୍ତମଙ୍କ ତତ୍ତ୍ୱର ସଙ୍କେତ ଯେ ନୀଳାଚଳରେ ପ୍ରତିଷ୍ଠିତ ଦାରୁଦେବତାଙ୍କ ଛଡ଼ା ଅନ୍ୟ କେହି ନୁହେ ଏହା ନିଶ୍ଚିତ ବୋଲି ମନେହୁଏ । ଏଣୁ କହିପାରୁଁ ଗୀତା ଯୁଗବେଳକୁ ଦାରୁଦେବତା ଲୋକରେ ଖ୍ୟାତିଲାଭ କରିସାରିଲେଣି, ଯେହେତୁ ଲୋକରେ ଉପାସ୍ୟ ଦେବରୂପେ ପୁରୁଷୋତ୍ତମ ହେଉଛନ୍ତି 'ପ୍ରାଚୀନ କଳିଙ୍ଗ ଓ ବର୍ତ୍ତମାନ ଓଡ଼ିଶାର ପୁରୁଷୋତ୍ତମ-ପୁରୀ ବା ପୁରୀର ଜଗନ୍ନାଥ । ଆଉ କୁତ୍ରାପି ଭକ୍ତର ଉପାସ୍ୟ ଦେବରୂପେ ପୁରୁଷୋତ୍ତମ ନାହାଁନ୍ତି,' ଯଦିଚ ବିଶେଷଣ ରୂପେ କେବେ କେବେ ଏ ଶବ୍ଦଟି ବ୍ୟବହୃତ ହୋଇଛି, ( ଯଥା ରାମାୟଣରେ ରାମଙ୍କ ନାମ ପୂର୍ବରୁ ) । ଜୈନଧର୍ମୀଙ୍କ ଉପାସ୍ୟ ଦେବତାଙ୍କ

---

** The Story of the Nation Assyria ।

୧ । ଡଃ ସୁନୀତିକୁମାର ଚାଟାର୍ଜିଙ୍କ "ଭାରତର ଭାଷା ଓ ଭାଷା ସମସ୍ୟା' ଦ୍ରଷ୍ଟବ୍ୟ ।

ନାମ ପୁରୁଷୋତ୍ତମ । ପୁଣି ନାରାୟଣ, ବିଷ୍ଣୁଙ୍କ ପର୍ଯ୍ୟାୟବାଚୀ ଶବ୍ଦ ପରି ଜୈନ ଉପାସ୍ୟଙ୍କ ଅନ୍ୟନାମ ପୁରୁଷୋତ୍ତମ । ବୃକ୍ଷଧର୍ମୀ ଶବରର ଦେବତା ଉପରେ ଜୈନଧର୍ମର କଳ୍ପବୃକ୍ଷର ଆରୋପ ହୋଇ କଳ୍ପବୃକ୍ଷ ବହୁ ଦିନରୁ ପୂଜା ପାଇ ଆସୁଛି । ( 'ଦାରୁଦେବତା' )

କ୍ରମେ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ନ ବୁଝାଇ କ୍ଷେତ୍ରବିଶେଷରେ ପରିଣତ ହେଲା । ପୁରୁଷୋତ୍ତମ-ପୁରୀରେ କଳ୍ପବୃକ୍ଷଧର୍ମ ଜୈନଧର୍ମ ପରମ୍ପରା ସଂଗେ ଅଭେଦ୍ୟ ଭାବରେ ଜଡ଼ିତ । ବ୍ରହ୍ମପୁରାଣରେ ପ୍ରଥମେ ବଟବୃକ୍ଷକୁ ପୁରୁଷୋତ୍ତମ ରୂପେ ବର୍ଣ୍ଣନା କରାଯାଇଥିଲା । ଯଥା :—'ପୁରୁଷେଣ ପିତଃ ଖ୍ୟାତଂ ବଟରାଜ ସନାତନମ୍' । ( ଅ ୫୬-୧୭ ) ପରେ ସ୍କନ୍ଦପୁରାଣରେ, ମଧ୍ୟ ଏଇପରି ଏକ ଶ୍ଳୋକ ଦେଖୁଁ, ଯଥା 'ନ୍ୟଗ୍ରୋଧରୂପଂ ଦୃଷ୍ଟ୍ୱାପି ନାରାୟଣଂ କଲୁଷମ୍' (୧୬) ଅର୍ଥାତ୍ ନ୍ୟଗ୍ରୋଧରୂପୀ ନାରାୟଣଙ୍କୁ ଦେଖିବାମାତ୍ରେ ମନୁଷ୍ୟର ପାପକ୍ଷୟ ହୋଇଯାଏ । ବ୍ରହ୍ମପୁରାଣ ଓ ନାରଦ ପୁରାଣରେ ଇନ୍ଦ୍ରଦ୍ୟୁମ୍ନ ସମୁଦ୍ରରେ ଭାସୁଥିବା ଦାରୁରେ ବିଶ୍ୱକର୍ମାଙ୍କ ଦ୍ୱାରା ତ୍ରିମୂର୍ତ୍ତି ନିର୍ମାଣ କରାଇ ଏକ ପ୍ରାସାଦ ତୋଳାଇ ସେଥିରେ ସେମାନଙ୍କୁ ନେଇ ପ୍ରତିଷ୍ଠା କରିଥିବା କଥା ଦେଖୁଁ । ସ୍କନ୍ଦପୁରାଣ ଲେଖାହେଲା ବେଳକୁ ଏହି ତ୍ରିମୂର୍ତ୍ତି ଅଧିକ ପ୍ରସିଦ୍ଧ ହୋଇ ଉଠିଥିଲେ । ଏଇ ପୁରାଣରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ମହାନାୟକ ରୂପେ ଦେଖାଇଦେଇଛନ୍ତି । ଏଥିରେ ମହାଭାରତ-ବର୍ଣ୍ଣିତ ମହାବେଦୀ ଚରିତର ଇନ୍ଦ୍ରଦ୍ୟୁମ୍ନ ରାଜା ଏବଂ ବ୍ରହ୍ମପୁରାଣ ଓ ନାରଦପୁରାଣର ଉପାଖ୍ୟାନଗୁଡ଼ିକୁ ଏକତ୍ର ମିଳାଇ ଏକ ସୁନ୍ଦର ଆଖ୍ୟାୟିକା ଛିଡ଼ା କରାଯାଇଛି । ( ଦା. ଦେ )

ପରବର୍ତ୍ତୀ ଜୈନବାଦ କାଳରେ ବିଭିନ୍ନ ଜୈନ ଧର୍ମଗୁରୁମାନେ କଳିଂଗ ଆସି ଏଠାର ଆଦିମ ଅଧିବାସୀ ଶବରମାନଙ୍କ ମଧ୍ୟରେ ଜୈନଧର୍ମ ପ୍ରଚାର ଜୈନ ଦର୍ଶନ କରିଥିବା କଥା ଜଣାଯାଏ । ମହାବୀର ବର୍ଦ୍ଧମାନ ଓଷଲୀ, ମୋଷଲୀ, ତୋଷଳୀ ଆସିଥିବା କଥା ଜୈନସୂତ୍ରରୁ ଜାଣୁଁ । 'ହରିଭଦ୍ରୀୟ ବୃତ୍ତି'ରେ ଦେଖୁଁ ମହାବୀରଙ୍କ ପିତାଙ୍କ ବନ୍ଧୁ ତତ୍କାଳୀନ କଳିଂଗ ରାଜା ମହାବୀରଙ୍କୁ କଳିଂଗରେ ଧର୍ମପ୍ରଚାର କରିବା ପାଇଁ ନିମନ୍ତ୍ରଣ କରିଥିଲେ । ଜୈନ ହରିବଂଶରେ ମଧ୍ୟ ଏହାର ସମର୍ଥନ ମିଳେ । ଜୈନ ଆବଶ୍ୟକ ସୂତ୍ରରେ 'କରଣ୍ଡୁ' ନାମକ ଜଣେ ପ୍ରସିଦ୍ଧ କଳିଂଗରାଜା ଜୈନଧର୍ମାବଲମ୍ବୀ ଥିଲେ ବୋଲି ସଂବାଦ ପାଉ । ଜୈନଧର୍ମର 'କେବଳୀ' ଭାବ ପୁରୁଷୋତ୍ତମର ପ୍ରସାଦ ରୂପରେ ପରିଣତ ହୋଇଥିବ ବୋଲି ଡଃ. ବି. ଏମ୍. ପାଢ଼ୀ ଅନୁମାନ କରନ୍ତି । ଏଭଳି କୈବଲ୍ୟଲଭ ପୁରୁଷୋତ୍ତମ ଛଡ଼ା ପୃଥିବୀରେ ଅନ୍ୟ କେଉଁଠି ଦେଖାଯାଏ ନାହିଁ । ଏହା ଜୈନବାଦର ଜୀବ-ଅଜୀବର ଏକାକାର—ଯାହାପରେ ନିର୍ବାଣ । ପରବର୍ତ୍ତୀ

ବ୍ରାହ୍ମଣ୍ୟ ଧର୍ମରେ ଯେଉଁ ସାଯୁଜ୍ୟ ମୁକ୍ତି ଦେଖି ତାହା କୈବଲ୍ୟ ଛଡ଼ା ଅନ୍ୟ କିଛି ନୁହେ ।

ବସ୍ତୁତଃ ଜୈନଧର୍ମ ପୃଥିବୀର ମୂଳ ଅଧ୍ୟାତ୍ମ ଧର୍ମ । ବୈଦିକ ଧର୍ମ ଏ ଦେଶକୁ ଆସିବାର ବହୁ ପୂର୍ବରୁ ଜୈନଧର୍ମ ଏ ଦେଶରେ ଥିଲା । ପ୍ରାକ୍‌ବୈଦିକମାନଂକ ଭିତରେ ଦ୍ରାବିଡ଼ମାନଂକ ମଧ୍ୟରେହିଁ ଏହା ରହିଥିଲା । ଏହା ପରବର୍ତ୍ତୀ ଜୈନଗ୍ରଂଥ-ମାନଂକରୁ ଯେପରି ଜଣାଯାଏ, ବୈଦିକ ସାହିତ୍ୟରୁ ମଧ୍ୟ ସେହିପରି ସୂଚନା ମିଳେ । ବେଦରେ ଆଦିନାଥ-ଋଷଭ, ଆଦିନାଥ ଓ ଅରିଷ୍ଟନେମୀ ପ୍ରଭୃତିଂକର ନାମୋଲ୍ଲେଖ ଥିବାରୁ ଜୈନଧର୍ମ ତତ୍‌ପୂର୍ବରୁ ଥିବା କଥା ଜଣାପଡ଼େ । ବିଷ୍ଣୁପୁରାଣ ଓ ଶ୍ରୀମଦ୍‌ଭାଗବତରେ ଭଗବାନ୍ ବିଷ୍ଣୁଂକ ଦଶାବତାର ପୂର୍ବ ଏକ ଅବତାର ବୋଲି ଋଷଭ ବର୍ଣ୍ଣିତ । ( ଶ୍ରୀମଦ୍‌ଭାଗବତ-୧୧ମ ସ୍କଂଦ, ୨ୟ ଅଧ୍ୟାୟ, ଶ୍ଳୋକ ୧୬ ଏବଂ ଅ ୪—ଶ୍ଳୋ ୧୭ )*

ଜୈନସିଦ୍ଧାଂତରେ ଈଶ୍ୱର ସତ୍ତା ସ୍ୱୀକାର କରାଯାଏ ନାହିଁ । ଅତ୍ମ-ଶରୀର ବା ଜୀବ-ଅଜୀବ ସଂଯୋଗରେହିଁ ସୃଷ୍ଟିର ଉତ୍ପତ୍ତି, ଏବଂ ତାହାହିଁ ସବୁ ବଂଧନର ମୂଳକାରଣ । ସୁତରାଂ ନୂଆ ନୂଆ ସୃଷ୍ଟି ଦେଖିବାକୁ ମିଳେ । ସେହି ସୃଷ୍ଟିରୁ ରକ୍ଷା ପାଇବାକୁ ହେଲେ 'ନିର୍ବାଣ' ଲଭ କରିବା ନିତାଂତ ପ୍ରୟୋଜନ । ପ୍ରଥମେ କର୍ମଚ୍ଛେଦ କରିବାକୁ ହେବ । କାରଣ ନାନାବିଧ କର୍ମବଂଧନ ଦ୍ୱାରା ଅତ୍ମା ଆବୃତ । କାର୍ମଣ ଶରୀରକୁ ନାଶ କରି ପାରିଲେ ନିର୍ବାଣ ଲଭହୁଏ । ଏହି ଦର୍ଶନରୁ ପରେ ସାଂଖ୍ୟଦର୍ଶନର ଉତ୍ପତ୍ତି । ସାଂଖ୍ୟର 'ପ୍ରକୃତି-ପୁରୁଷ' ସଂଯୋଗରେ ସୃଷ୍ଟିର ଉତ୍ପତ୍ତି' ତତ୍ତ୍ୱଟି ଜୈନଦର୍ଶନରୁହିଁ ବିକାଶ ଲଭ କରିଥିଲା । 'ଅତ୍ମା' ଓ 'ବସ୍ତୁ ସଂଯୋଗରେ ସୃଷ୍ଟିର ଉତ୍ପତ୍ତି ଏହି ଜୈନତତ୍ତ୍ୱଟି ଉପରେ ସାଂଖ୍ୟର ପ୍ରକୃତି ଜଡ, ପୁରୁଷ ଚେତନ ଏହି ତତ୍ତ୍ୱଟି ଆଧାରିତ । ଅତ୍ମା ଅବିନଶ୍ୱର କି ନୁହେ ସେ ବିଷୟରେ ଜୈନଦର୍ଶନ କହେ, ଅତ୍ମା ଅବିନାଶୀ, ମାତ୍ର ବସ୍ତୁ ସହିତ ତାର ସଂପର୍କ ବିନାଶଶୀଳ । ଦ୍ରାବିଡ଼ ଜୈନର ଜାନ୍ମାଂତରବାଦ ପରେ ଅର୍ଯ୍ୟ-ଧର୍ମରେ ପ୍ରବେଶ କରିଥିଲା । ଦ୍ରାବିଡ଼ ଜୈନମାନେ ଥିଲେ ବହୁ-ଉପାସକ । ସଭ୍ୟତା-ବିକାଶର ଉନ୍ମେଷ ସ୍ତରରେହିଁ ବହୁ-ଉପାସନା ଦେଖା ଯାଇଥାଏ, ପ୍ରାଥମିକ ସ୍ତରରେ ଏକ-ଉପାସନା ପ୍ରଚଳିତ

---

* Ibid.

** ସାଂଖ୍ୟ-ଦର୍ଶନ ଓ ଜୈନ-ଦର୍ଶନ ଉଭୟେ ନିରୀଶ୍ୱରବାଦୀ ହେଲେ ମଧ୍ୟ ଜୈନ ସାଦ୍ୟନ୍ତିବାଦ-ଦର୍ଶନ ନାସ୍ତିକ ବୋଲି ପରିଗଣିତ । ମାତ୍ର ସାଂଖ୍ୟ-ଦର୍ଶନ ଆସ୍ତିକ ଦର୍ଶନ ମଧ୍ୟରେ ଗଣ୍ୟ ହୋଇଥାଏ । ( ଦା.ଦେ )

ଥାଏ । ' ଅଷ୍ଟ୍ରିକ୍‌ଭାଷୀ ଗୋଷ୍ଠୀର ଶବର ଦେଇ 'ଦାରୁ'କୁ ସ୍ମରଣାତୀତ କାଳରୁ ପୂଜା କରି ଆସୁଥିଲା ଜୈନ ପ୍ରଭାବରେ ତାହା ବହୁତ୍ୱ ପ୍ରାପ୍ତ ହୋଇଥିବ, ଅର୍ଥାତ ତ୍ରିମୂର୍ତ୍ତି କିଂବା ଧର୍ମଚକ୍ର ସୁଦର୍ଶନ ଚକ୍ରକୁ ମିଶାଇ ଚତୁର୍ଧା ମୂର୍ତ୍ତିରେ ପରିଣତ ହୋଇଥିବ । ଏକରୁ ବହୁତ୍ୱ ସଭ୍ୟତାର ଉନ୍ନତ ଅବସ୍ଥାରେହିଁ ସଂଭବ ହୋଇଥାଏ ।[2] ପୂର୍ବରୁ କୁହାଯାଇଛି ଦ୍ରାବିଡ଼ମାନେ ଥିଲେ ପୃଥିବୀର ସର୍ବପ୍ରଥମ ମୂର୍ତ୍ତି-ପୂଜକ । ତେଣୁ ସେଇ ଦ୍ରାବିଡ଼ ଜୈନଂକ ପ୍ରଭାବରେହିଁ ଚକ୍ର ବା ଗୃହ ଦାରୁ-ମୂର୍ତ୍ତି ଗଢ଼ି ଉଠିଥିବ ।

ଅଷ୍ଟ୍ରିକ୍‌ଭାଷୀ ଶବରର ଦାରୁପୂଜା ଯେ ଦ୍ରାବିଡ଼ ଜୈନଂକ ପ୍ରଭାବରେ ନୂତନ ରୂପ ଧାରଣ କରିଥିଲା ଏଥିରେ ସଂଦେହ ନାଇ । ଜଗନ୍ନାଥଂକୁ ସେଥିପାଇଁ 'ଜିନନାଥ' ବୋଲି କଳ୍ପନା କରିବା ଅସଂଭବ ନୁହେଁ । ଏଠାରେ 'ନାଥ' ଅର୍ଥ ପୁରୁଷ । ଅଧିକାଂଶ ଜିନଂକ ନାମରେ 'ନାଥ' ଯୋଗ କରାଯାଇଛି । ଯଥା ଋଷଭନାଥ, ମତ୍ସ୍ୟେନ୍ଦ୍ରନାଥ, ଗୋରଖନାଥ, ଜଳନ୍ଧିନାଥ, ଜିନନାଥ । ଖ୍ରୀଷ୍ଟୀୟ ଅଷ୍ଟମ ଶତକରେ ସଂବଲପୁର ଅଂଚଳର ବଜ୍ରଯାନୀ ରାଜା ଇଂଦ୍ରଭୂତି ତାଂକ 'ଜ୍ଞାନସିଦ୍ଧି' ଗ୍ରଂଥର ମଂଗଳାଚରଣରେ ଜଗନ୍ନାଥଂକୁ 'ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜିନବରାର୍ଚ୍ଚିତଃ' ବୋଲି ବନ୍ଦନା କରିଛଂତି । ଏହାଦ୍ୱାରା ତାଂକର ଜିନତ୍ୱ ପ୍ରତିପାଦିତ ହୋଇଛି ।

ଆଉ କେତେକ ଲେଖକ ଯଥା କେଦାରନାଥ ମହାପାତ୍ର ପ୍ରମୁଖ କହଂତି, ନୀଳମାଧବ ମୂର୍ତ୍ତି ପଥରରେ ଖୋଦିତ ଜୈନ ତ୍ରିରତ୍ନ-ମୂର୍ତ୍ତି । ଏହାହିଁ କଳିଂଗର ଜିନାସନ ବା ଜିନସିଂହାସନ । ଏହାକୁହିଁ ଶବରମାନେ ପୂଜା କରୁଥିଲେ । ପରେ ଜୈନ ତ୍ରିରତ୍ନର ଅନୁକରଣରେ କାଷ୍ଠରେ ତ୍ରିମୂର୍ତ୍ତି ହେବାରୁ ଏମାନେ ହସ୍ତ-ପଦ-ଶୂନ୍ୟ । ପଂଡିତ ନୀଳକଂଠଂକ ମତରେ ଖ୍ରୀଷ୍ଟୀୟ ସପ୍ତମ-ଅଷ୍ଟମ ଶତାବ୍ଦୀ ବେଳକୁ ଉଡ୍ଡୀୟାନ କହିଲେ କେଉଁଝର, ସଂବଲପୁର, ସୋନପୁର, ଘୁମୁସର, ମୟୂରଭଂଜ ପ୍ରଭୃତିକୁ ବୁଝାଉଥିଲା । ଏଠାରେ ଶବରମାନେହିଁ ଅଧିକ ସଂଖ୍ୟାରେ ବସତି ସ୍ଥାପନ

1. The Encyclopaedia Britanica, PP 446 ଦ୍ରଷ୍ଟବ୍ୟ
2. "The nations of Antilles suppose that certain trees instructed sorcèrs to shape their trunks into idols and to instal them in temples, huts where they could be worshipped," Ibid.

କରି ରହିଥିଲେ । ସେମାନେ ଆବହମାନ କାଳରୁ ନିଂବକାଠ-ନିର୍ମିତ ଶବର୍-ନାରାୟଣ ମୂର୍ତ୍ତି ଉପାସନା କରି ଆସୁଥିଲେ । ( ମାତ୍ର 'ନାରାୟଣୀ' ଶବ୍ଦଟି ଜ ଅଷ୍ଟ୍ରିକ୍ ନୁହେଁ ! ) ବୋଧହୁଏ ଏଇମାନେହିଁ ଜଗନ୍ନାଥଂକୁ ନିଂବ କାଠରେ ଗଢ଼ି ନିଜର କରି ରଖିଥିଲେ । ପରେ ଅଷ୍ଟମ ଶତାବ୍ଦୀ ବେଳକୁ ଉଡ୍ଡିୟାନ ରାଜା ଇଂଦ୍ରଭୂତି ଯେ କି ଜଣେ ବୌଦ୍ଧ ବଜ୍ରଯାନୀ ଥିଲେ, ଜଗନ୍ନାଥଂକୁ ତାଂକ 'ଜ୍ଞାନସିଦ୍ଧି' ଗ୍ରଂଥର ମଂଗଳାଚରଣରେ 'ସର୍ବଜିନଚରାଚିତ' ଓ 'ସର୍ବ-ବୁଦ୍ଧ-ମୟ' କହିବା ଦ୍ୱାରା ତାଂଙ୍କର ଜିନତ୍ୱ ସ୍ୱୀକାର କରିବା ସଂଗେ ସଂଗେ ତାଂକର ବୌଦ୍ଧତ୍ୱ ପ୍ରତିପାଦନ କଲେ । ପୁରୀ ଶବରଅଂଚଳ ଅଂତର୍ଗତ ଥିଲା । ସେଠାର ଦେବତା ଜଗନ୍ନାଥ ନାମରେ ଅଭିହିତ ହେଉଥିଲେ । ହୁଏନସାଂ ତାଂକ ଭ୍ରମଣକାହାଣୀରେ ଉଡ୍ଡିୟାନରେ ଯେଉଁ ନବେ ଫୁଟ ଉଚ୍ଚର କାଷ୍ଠ ପୂଜା ପାଉଥିବା କଥାର ଉଲ୍ଲେଖ କରିଛଂତି, ତାହାହିଁ ବୋଧହୁଏ ନିଂବକାଷ୍ଠ-ନିର୍ମିତ ଶବର୍-ନାରାୟଣ ଛଡ଼ା ଆଉ କିଛି ନୁହେଁ, ଯାହାକି ସେ କାଳର ପାଷାଣ ଦେବା-ଦେବୀଂକ ସହିତ ସମ୍ଭଂତତ୍ୱଙ୍କ ଭାବରେ ପ୍ରତିଷ୍ଠା ଲାଭ କରି ଆସିଥିଲା । ସେ ପୁରୀ କହୁଛଂତି, କଳିଂଗ ଉପକୂଳରେ ପ୍ରଥମେ ଜଗନ୍ନାଥ ସମ୍ଭବତ ଖଂଡିଏ କଳା ପଥରରେ ଥିଲେ ଏବଂ ଏହାକୁ କଳିଂଗ ଜିନ ବା ଜିନଂକର ପ୍ରତୀକ କୁହାଯାଉଥିଲା । ପରେ ଏହାର ନାମ 'ନୀଳମାଧବ' ହେଲା । ଏ ନୀଳମାଧବ ସଂସ୍କୃତ ଶବ୍ଦ ନୀଳମାଧବରୁ ପୃଥକ । ଏହାର ଅର୍ଥ ନୀଳ-ମା-ଧବ (ଶୁଭ୍ର) ଅର୍ଥାତ୍ Blue-Mother-White—ଯାହା ଦାର୍ଶନିକ ଅର୍ଥରେ ନାସ୍ତି ( non-existence ), ଜନନ ( principle of generation ) ଏବଂ ଧବ ବା ଶୁକ୍ଳ ( phenomenal expression of the universe ) । ପଂଡିତ ନୀଳକଂଠଂକ ମତରେ ଜଗନ୍ନାଥ ଏକ ଜୈନ ଅନୁଷ୍ଠାନ । *

ପଂଡିତ ନୀଳକଂଠଂକ ମତରେ କଳିଂଗ ରାଜା ଚୋରଗଂଗ ଦେବ ( ଖ୍ରୀ: ୧୦୭୭-୧୧୪୮ ) ଆଲବାର ରାମାନୁଜଂକ ଶିଷ୍ୟତ୍ୱ ଓ ବାସୁଦେବ-ଧର୍ମ, ସାହଚର୍ଯ୍ୟ ଲାଭକରି ଜୈନରୁ ବୈଷ୍ଣବ ହୋଇଥିଲେ । ସେ ଜୈନ ପ୍ରତୀକ ନୀଳମାଧବ ବା ଜଗନ୍ନାଥଂକ ନିମଂତେ ଏକ ବଡ଼ ମଂଦିର ନିର୍ମାଣ କରାଇ ତାହାକୁ ହିଂଦୁ ଧର୍ମର ପ୍ରଧାନ ପୀଠରେ ପରିଣତ କରିବା ପାଇଁ ଚେଷ୍ଟା କରିଥିଲେ । ଏହି କଳିଂଗ ଜିନଂକୁ ମଗଧର ରାଜା ନଂଦ ଖ୍ରୀ: ପୂ ୪ର୍ଥ

*'Hints on the Significance and History of Jagannath' (ନିଖିଳ ଭାରତ ପ୍ରବାସୀ ଉତ୍କଳ ସମ୍ମିଳନୀ ସ୍ମରଣିକା, କଲିକତା, ଜାନୁଆରୀ ୧୯୫୧)

କିଂବା ୫ମ ଶତାବ୍ଦୀରେ ବଳପୂର୍ବକ ଓଡ଼ିଶାରୁ ନେଇ ଯାଇଥିବା କଥା ପୂର୍ବେ କହିଛୁଁ । କିନ୍ତୁ କଳିଂଗ ସମ୍ରାଟ ବୀର ଖାରବେଳ ଯେ କି ଜୈନ ଧର୍ମାବଲମ୍ବୀ ଥିଲେ, ମଗଧ ଆକ୍ରମଣ କରି ଖ୍ରୀ: ପୂ ଦ୍ୱିତୀୟ ଶତାବ୍ଦୀରେ 'କଳିଂଗ ଜିନ'ଙ୍କୁ ଓଡ଼ିଶାକୁ ଫେରାଇ ଆଣିଥିଲେ । (Ibid) ସ୍ୱୈରଗଂଗ ରାମାନୁଜଙ୍କ ନିର୍ଦ୍ଦେଶରେ ଜୈନ ପ୍ରତୀକ ନୀଳମାଧବ ବା ଜଗନ୍ନାଥଙ୍କୁ ମନ୍ଦିରରେ ସ୍ଥାପନା କରିଥିଲେ । ରାମାନୁଜ ନିଜେ ବାସୁଦେବ ଭକ୍ତ ଥିଲେ । ତେଣୁ ଜଗନ୍ନାଥ ବାସୁଦେବ ଧର୍ମର ଦେବତାରୂପେ ପ୍ରତିଷ୍ଠିତ ହୋଇଥିଲେ । ମନ୍ଦିରରେ କୃଷ୍ଣ, ବଳଦେବ ସୁଭଦ୍ରା ଏବଂ ଜୈନ ଓ ବୌଦ୍ଧ ଧର୍ମଚକ୍ରର ଆକାରବିଶିଷ୍ଟ ସୁଦର୍ଶନ ଚକ୍ର ଏଇ ଚାରି ମୂର୍ତ୍ତି ସ୍ଥାପିତ ହୋଇଥିଲେ । ଜୈନ 'ନାଥ' ପରଂପରା ଅନୁଯାୟୀ ଜଗନ୍ନାଥ ସୃଷ୍ଟି ହୋଇଥିବେ ବୋଲି ପଣ୍ଡିତ ନୀଳକଣ୍ଠ ମନେ କରନ୍ତି । ଏଇ ନାଥ ଶବ୍ଦର ଅର୍ଥ 'ଉପାସ୍ୟ ପୁରୁଷ' ଯଥା ଋଷଭନାଥ, ନମିନାଥ, ପାର୍ଶ୍ୱନାଥ । ଅନ୍ୟ କେହି କେହି ଅଷ୍ଟ୍ରିକ୍ ଦେବତା ପର୍ଯ୍ୟାୟୀ 'ଜଗନ୍ତ' ସହିତ ଜୈନ 'ନାଥ' ସଂଯୋଗରେ 'ଜଗନ୍ତନାଥ' ଓ ପରେ 'ଜଗନ୍ନାଥ' ସୃଷ୍ଟି ହୋଇଥିବ ବୋଲି ମନେ କରନ୍ତି ।

ଜଗନ୍ନାଥ ବଳଭଦ୍ରଙ୍କ ମଧ୍ୟରେ ସୁଭଦ୍ରାଙ୍କ ସ୍ଥାନ ସଂଦେହ ସୃଷ୍ଟି କରେ । ପ୍ରଭାତକୁମାର ମୁଖାର୍ଜିଙ୍କ ମତରେ, ଗୁପ୍ତବଂଶୀ ରାଜାମାନଙ୍କ ସମୟରୁ ବାସୁଦେବ ଧର୍ମ ବା ଭାଗବତ ଧର୍ମ ଚଳି ଆସୁଛି । ଏହା ପରେ ବୈଷ୍ଣବ

**ସୁଭଦ୍ରା**

ଧର୍ମରେ ପରିଣତ ହୁଏ । ସେଇ ବାସୁଦେବ ଧର୍ମ ପ୍ରଭାବରେ ବାସୁଦେବ ଓ ସଂକର୍ଷଣ ଜଗନ୍ନାଥ ଓ ବଳରାମ ନାମରେ ପୂଜା ପାଇବାକୁ ଲାଗିଲେ । ବରାହମିହିରଙ୍କ ବୃହତ୍ ସଂହିତା ଅନୁଯାୟୀ କୃଷ୍ଣ ଓ ବଳରାମଙ୍କ ମଧ୍ୟରେ ଯେଉଁ 'ଏକାନଂଶା ଦେବୀ'ଙ୍କ ଉଲ୍ଲେଖ ଅଛି ସେଇ ଏକାନଂଶା ଦେବୀହିଁ ପରବର୍ତ୍ତୀ କାଳର ସୁଭଦ୍ରା । ସେ ଏକାଧାରରେ ଜଗନ୍ନାଥଙ୍କ ଭଉଣୀ ଏବଂ 'ଶକ୍ତି' ବା 'ସ୍ତ୍ରୀ ମଧ୍ୟ । ତେଣୁ ଭାଗବତ ଧର୍ମର କୃଷ୍ଣ-ଏକାନଂଶା-ବଳରାମ ହିଁ ଜଗନ୍ନାଥ-ସୁଭଦ୍ରା-ବଳଭଦ୍ର । ସୁଭଦ୍ରାଙ୍କୁ ଜଗନ୍ନାଥଙ୍କ 'ଶକ୍ତି' ବା ସ୍ତ୍ରୀ ରୂପେ କଳ୍ପନା କରି ସ୍କନ୍ଦ ପୁରାଣରେ ଗୋଟିଏ ଶ୍ଲୋକ ଅଛି :—"ତସ୍ୟ ଶକ୍ତିସ୍ୱରୂପେୟଂ ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା" । ତାହାହିଁ ଏଇ ସଂଦେହ ସୃଷ୍ଟି କରିଛି ।

ଏଇ 'ଭଗିନୀ ସ୍ତ୍ରୀ ପ୍ରବର୍ତ୍ତିକା'ର ଅର୍ଥ ଡଃ ହ : କୃ. ମହତାବ ଏବଂ ଡଃ ପାଢ଼ୀ ପ୍ରମୁଖ ପ୍ରଚଳିତ ମୂଲ୍ୟବୋଧ ମଧ୍ୟରେ ଖୋଜି ପାଇପାରି ନାହାଁନ୍ତି । ଏହାର ମୂଳସୂତ୍ର ଖୋଜିବାକୁ ହେଲେ ଆମକୁ ମାତୃପ୍ରଧାନ ଗଣ-ସମାଜ ପ୍ରତି ଦୃଷ୍ଟି ପକାଇବାକୁ ହେବ । ମହାଭାରତ ଶାନ୍ତି ପର୍ବରେ ପିତାମହ ଭୀଷ୍ମ ବିଭିନ୍ନ ଯୁଗରେ ଯେଉଁ ବିଭିନ୍ନ ପ୍ରକାର ବିବାହ କଥା କହିଛନ୍ତି ସେଥିରେ ସେତା ଯୁଗରେ 'ସଂକଳ୍ପ' ବିବାହ ଅଧମତମ । ସେଥିରେ ଭ୍ରାତୃ-ଭଗିନୀ ମଧ୍ୟରେ ମଧ୍ୟ ବିବାହ

ସେବାହ୍ମ (ଯୌନ-ସଂପର୍କ) ନିଷିଦ୍ଧ ନଥିଲା ! ତାର କିଛି ଦୂର ସଂକେତ ଏଥିରେ ରହିଯାଇ ନାଇଛି !

କେବଳ ଜୈନ ବା ବୌଦ୍ଧଧର୍ମ ନୁହେଁ, ପ୍ରାୟ ସମସ୍ତ ହିଂଦୁ ଧର୍ମୀୟ ମତବାଦର ସମନ୍ୱୟ 'ଜଗନ୍ନାଥ ଧର୍ମ'ରେ ଦେଖିବାକୁ ମିଳେ । ଶାକ୍ତ, ପାଶୁପତ, ଗାଣପତ୍ୟ, ସୌର ପ୍ରଭୃତି ବହୁ ଧର୍ମ ଏବଂ ଶଂକରାଚାର୍ଯ୍ୟଂକ ଅଦ୍ୱୈତବାଦ ଏବଂ ଅଲବାର ରାମାନୁଜ ଆଚାର୍ଯ୍ୟ ପ୍ରବର୍ତ୍ତିତ ବିଶିଷ୍ଟାଦ୍ୱୈତବାଦ ପ୍ରଭୃତି ମତବାଦ ଏବଂ ମଧ୍ୱାଚାର୍ଯ୍ୟ, ଚୈତନ୍ୟ ପ୍ରଭୃତି ଧର୍ମାଚାର୍ଯ୍ୟମାନଂକର ମତବାଦ ଏଇ ଜଗନ୍ନାଥ ଧର୍ମରେ ମିଶି ଏକାକାର ହୋଇ ଯାଇଚ । ସେ ଦୂର ଦୂରାଂତରରୁ ବହୁ ପ୍ରବାହକୁ ନିଜ ମଧ୍ୟକୁ ଟାଣି ଆଣିଛଂତି । ମଧ୍ୱାଚାର୍ଯ୍ୟ, ଜୟଦେବ, ଏବଂ ଶେଷରେ ଶ୍ରୀଚୈତନ୍ୟ ପୁରୁଷୋତ୍ତମରେ ରହି ଦ୍ୱୈତ-ସଂଗୀତ ମାଧୁର୍ଯ୍ୟରସର ପ୍ଲାବନ ସୃଷ୍ଟି କରିଛଂତି ଏବଂ ସେ ପ୍ରବାହ ଜଗନ୍ନାଥ ଧର୍ମର ସାମାନ୍ୟ-ବିଶିଷ୍ଟ ଆଧ୍ୟାତ୍ମ ଚେତନାରେ ନୂତନ ତରଂଗ ସୃଷ୍ଟି କରିଚ । ଏପରିକି ଶିଖ ଧର୍ମର ଗୁରୁନାନକ, ଧର୍ମ-ସମାଜ ସଂଗଠନରେ ଜଗନ୍ନାଥ ଯଥେଷ୍ଟ ପ୍ରେରଣା ଯୋଗାଇଛଂତି, ଯାହାର ପ୍ରମାଣ ଗୁରୁ ନାନକଂକର ପୁରୁଷୋତ୍ତମ ଅବସ୍ଥାନରୁ ମିଳେ । ବ୍ରାହ୍ମଣ୍ୟ-ପ୍ରବାହ ସହିତ ସମାଂତରାଳ ଭାବେ ଶାକ୍ତମତ ଏବଂ ତଂତ୍ର-ମାର୍ଗ ମଧ୍ୟ ଜଗନ୍ନାଥଂକ ଉପରେ ତାର ପ୍ରଭାବ ପକାଇବାକୁ ଭୁଲିନାଇ । ବିମଳାଂକୁ ଭୈରବୀ ଏବଂ ଜଗନ୍ନାଥଂକୁ ଭୈରବରୂପେ ଏବଂ ପୁରୁଷୋତ୍ତମକୁ 'ଭୈରବୀଚକ୍ର" ରୂପେ ( ପଂ. ବିନାୟକ ମିଶ୍ର ) ଗ୍ରହଣ କରି ତଂତ୍ରମତ ତଥା ତଂତ୍ରସାଧନାକୁ ଯଥେଷ୍ଟ ସ୍ୱୀକୃତି ଦିଆଯାଇଚ । ଏଇ ସାଧନାର ପଂଚୋପକରଣ, ବା ପଂଚମକାରକୁ ମଧ୍ୟ ଜଗନ୍ନାଥଂକ ନୀତି-ନିୟମରେ ମିଶାଇ ଦିଆଯାଇଚ । ବିମଳାଂକ ନିକଟରେ ମହାଷ୍ଟମୀ ରାତ୍ରରେ ଧୂମ ଘାତର ଛଅଟି ଏକ ଗୁଗୁଳି ଦେବା ବ୍ୟବସ୍ଥା ରହିଚବୋଲି ମନମୋହନ ଗାଂଗୁଲି ଓ ମହନ୍ତାବଂକ ଇତିହାସରୁ ଜଣାପଡ଼େ । ଏହାଛଡ଼ା କଂସାପାତ୍ରରେ ପଡ଼ିଥିବା ପାଣି ଓ କଲା ଓଳିରେ ଜାଇଫଳ ଘଷା ପାଣି ମଦ୍ୟ ସ୍ଥାନୀୟ, 'କାଂଜି' ନାମକ ଲଂବଲଂବ ବରହ ପିଠା ମତ୍ସ୍ୟ ସ୍ଥାନୀୟ, ଅନ୍ୟାନ୍ୟ ସମସ୍ତ ବଡ଼ ଛୋଟ ପିଠା 'ମେଡ଼' ସ୍ଥାନୀୟ, ତେଂତୁଳି ରସରେ ବଟା ଅଦା ରୁଧିର ସ୍ଥାନୀୟ ମଂତ୍ର ଓ ଅଶ୍ଳୀଳ ମୂର୍ତ୍ତିର ପ୍ରଦର୍ଶନ ମୁଦ୍ରା ଓ ମୈଥୁନ ସ୍ଥାନୀୟ ଭାବରେ ଜଗନ୍ନାଥ ଓ ବିମଳାଂକଠାରେ ସମର୍ପିତ ହୁଏ । ଜଗନ୍ନାଥଂକ ମହାପ୍ରସାଦ କେବଳ ବିମଳାଂକୁହିଁ ଦିଆଯାଇଥାଏ, ଅନ୍ୟ କାହାକୁ ନୁହେଁ । ( ଓ; ଇ )

ଜଗନ୍ନାଥଂକର ଦୀର୍ଘ ଦୁଇ ହଜାର ବର୍ଷର ବିବର୍ତ୍ତନର ଚିତ୍ର ଏଥିରୁ ମିଳିପାରିବ । ମୋଟ ଉପରେ ଜଗନ୍ନାଥ ହେଉଛଂତି ସମଗ୍ର ଓଡ଼ିଶା ଭୂଖଂଡର

ଅଷ୍ଟ୍ରିକଭାଷୀଙ୍କଠାରୁ ଆରମ୍ଭ କରି ଜୈନ, ବୌଦ୍ଧ ଏବଂ ବ୍ରାହ୍ମଣ୍ୟ ଧର୍ମର କ୍ରମବିକାଶର ଇତିହାସ ସଂଗେ ସଂପୃକ୍ତ ଏବଂ ଓଡ଼ିଶା ଏବଂ ଓଡ଼ିଆ ଜାତିର ସମସ୍ତ ଚଳଣି, ଧ୍ୟାନଧାରଣା ଏବଂ କ୍ରମପରିବର୍ତ୍ତମାନ ଭାବ-ରୂପର ମୂର୍ତ୍ତ ପ୍ରତୀକ । ଗୋଟିଏ କଥାରେ କହିବାକୁ ଗଲେ ଜଗନ୍ନାଥହିଁ ହେଉଛନ୍ତି ଓଡ଼ିଶା ଏବଂ ଓଡ଼ିଶା ହେଉଛି ଜଗନ୍ନାଥ ।

## ଦ୍ରାବିଡ଼ ଓ ଆର୍ଯଭାଷୀ ନରଗୋଷ୍ଠୀ

ଉପରିକଥିତ ଜନ ଛଡ଼ା ଆଉ ଦୁଇଟି ଦୀର୍ଘମୁଣ୍ଡ ଜନ ପରିବର୍ତ୍ତୀ କାଳରେ ଭାରତବର୍ଷରେ ଆସି ବସବାସ କରୁଥିଲେ ବୋଲି ମନେହୁଏ । ଏଇ ଦୁଇ ଜନର କିଛିକିଛି କଂକାଳାବଶେଷ ମିଳିଛି ସିନ୍ଧୁ ଉପତ୍ୟକାରେ । ମକରାନ୍, ମହେନ୍-ଜୋଦାରୋ, ହରପ୍ପାର କନ୍ଦରରୁ ପ୍ରାପ୍ତ ନରକଂକାଳରୁ ଜଣାଯାଏ ଯେ ଗୋଷ୍ଠିକର ଦେହ-ଗଠନ ଅଳ୍ପ ସୁଦୃଢ଼ ଓ ବଳିଷ୍ଠ, ଅସ୍ଥିର ସେତେ ବଳିଷ୍ଠ ନୁହେଁ, ଦୈର୍ଘ୍ୟ ମଧ୍ୟ ଟିକିଏ ଊଣା, ମାଂସ ମୁଖାବୟବ ତୀକ୍ଷ୍ଣ ଓ ସୁସ୍ପଷ୍ଟ, ନାସିକା ତୀକ୍ଷ୍ଣ ଓ ଉନ୍ନତ, କପାଳ ଧନୁପରି ବଂକିମ । ଏମାନଂକଠାରେ ଭୂମଧ୍ୟ ନରଗୋଷ୍ଠୀର ଦେହଲକ୍ଷଣ ସହିତ ସାଦୃଶ୍ୟ ଦେଖାଯାଏ । ସିନ୍ଧୁ ଉପତ୍ୟକାରେ ପ୍ରାଗୈତିହାସିକ ସଭ୍ୟତାର ଯେଉଁ ପରିଚୟ ମିଳେ, ତାହା ଏଇମାନଂକରହିଁ ସୃଷ୍ଟି ।* ଉତ୍ତର-ଭାରତରେ ସର୍ବତ୍ର, ସବୁ ବର୍ଣ ମଧ୍ୟରେହିଁ, ବିଶେଷତଃ ଉଚ୍ଚବର୍ଣର ଲୋକମାନଂକ ମଧ୍ୟରେ ଏଇ ଦୀର୍ଘମୁଣ୍ଡ ନରବଂଶର ରକ୍ତଧାରା ପ୍ରବହମାନ । ଏମାନଂକର ଆଉ ଗୋଟିଏ ଧାରାର ମଧ୍ୟ ପରିଚୟ ମିଳେ । ଉପରୋକ୍ତ ଦୀର୍ଘମୁଣ୍ଡ ଜନଗଣ ଯେଉଁ ଜନସ୍ତର ଗଢ଼ିଥିଲେ, ଉତ୍ତର-ପଶ୍ଚିମରୁ ଆଗତ ଏକ ଗୋଲମୁଣ୍ଡ ଜନ ଆସି ତା' ଭିତରେ ନିଜର ରକ୍ତପ୍ରବାହ ସଞ୍ଚାର କଲେ । ଏମାନଂକର ସର୍ବପ୍ରାଚୀନ ସାକ୍ଷ୍ୟ ସଂଗୃହୀତ ହୋଇଛି ମହେନ୍-ଜୋ-ଦାରୋ ଏବଂ ହରପ୍ପାରୁ ପ୍ରାପ୍ତ ମୁଣ୍ଡ-କଂକାଳରୁ । ଏଇ ଗୋଲମୁଣ୍ଡ ଜାତିହିଁ De Lapang, Ripley, ଓ Luschan ଏବଂ ରମାପ୍ରସାଦ ଚନ୍ଦ କଥିତ ଅଲପାଇନ (Homo Alpinees) ନରଗୋଷ୍ଠୀ । ଏମାନଂକ ସଂଗେ ପୂର୍ବ-ୟୁରୋପୀୟ ଦିନାରୀୟ ଏବଂ କେତେକାଂଶରେ ଆର୍ମେନୀୟ ଜାତିର ସମ୍ବନ୍ଧ ସୁସ୍ପଷ୍ଟ । ତେଣୁ ବିଜ୍ଞାନୀଂକର କେହି ଏମାନଂକୁ କହନ୍ତି ଆଲ୍ପୋ-ଦିନାରୀୟ ନରଗୋଷ୍ଠୀ ଏବଂ ଆଇକ୍‌ଷ୍ଟେଡ୍‌ଟ୍ କହନ୍ତି ପଶ୍ଚିମ ଓ ପୂର୍ବ ବ୍ରାକିଡ୍ ବା ଗୋଲମୁଣ୍ଡ ନରଗୋଷ୍ଠୀ । ବଂଗଳା, ଓଡ଼ିଶା ପ୍ରଭୃତି ପୂର୍ବଉପକୂଳୀୟ ପ୍ରଦେଶରେ ଉତ୍ତମ ସଂକର ଓ ମଧ୍ୟମ ସଂକର ମଧ୍ୟରେ ଯେଉଁ ଗୋଲ ଓ ମଧ୍ୟମ ମୁଣ୍ଡାକୃତି, ତୀକ୍ଷ୍ଣ ଓ ଉନ୍ନତ ବା ମଧ୍ୟମ ନାସାକୃତି ଓ ମାଧ୍ୟମିକ ଦେହ-

* ଡଃ ଚାଟାର୍ଜି ଓ ଅନ୍ୟମାନେ ।

ଦୈର୍ଘ୍ୟର ଲକ୍ଷଣ ଦେଖାଯାଏ, ତାହା ଅନେକାଂଶରେ ଏଇ ନରଗୋଷ୍ଠୀର ଦାନ। ବସ୍ତୁତ ବଂଗଳାରେ ଓ ଓଡ଼ିଶାରେ ଯେଉଁ ସଂସ୍କୃତି ଶତାବ୍ଦୀ ପରେ ଶତାବ୍ଦୀ ଧରି ଗଢ଼ିଉଠିଛି ତାର ପ୍ରାୟ ସମଗ୍ର ମୂଳ ଉପାଦାନଟି ପ୍ରଧାନତ ଆଲପାଇନ ଓ ଆଦିଅଷ୍ଟ୍ରେଲୀୟ ଏଇ ଦୁଇ ଜନର ଦାନ। ପରବର୍ତ୍ତୀ କାଳରେ ଆଗତ ଆର୍ଯ୍ୟଭାଷାଭାଷୀ ଆଦି-ନର୍ଡିକ୍ ନରଗୋଷ୍ଠୀର ରକ୍ତପ୍ରବାହ ଓ ସଂସ୍କୃତି ତାର ଉପର ସ୍ତରର ଏକ କ୍ଷୀଣ ଆସ୍ତରଣ ମାତ୍ର ଏବଂ ଏଇ ଆସ୍ତରଣ ସମାଜର ଉପର ସ୍ତରରେହିଁ ଆବଦ୍ଧ, ଏହାର ଧାରା ଲୋକଂକର ଜୀବନ ଓ ସମାଜର ମୂଳ ସ୍ତରରେ ବିସ୍ତୃତ ହୋଇ ପାରି ନାଇ।*

ଯେ ଯାହାହେଉ, ପାମୀର ମାଳଭୂମି, ତାକ୍‌ଲାମାକାନ ମରୁଭୂମି, ଆଲପ୍‌ସ ପର୍ବତ, ଦକ୍ଷିଣ ଆରବ ଏବଂ ପୂର୍ବୟୁରୋପବାସୀ ଏଇ ଆଲ୍‌ପାଇନ ଜନର ବଂଶଧର ଭାରତବର୍ଷରେ ବହୁ ଅଂଚଳରେ ବିସ୍ତୃତ ହୋଇ ରହିଛଂତି, ଗୁଜରାଟ, କର୍ଣ୍ଣାଟ, ମହାରାଷ୍ଟ୍ର, କୁର୍ଗ, ମଧ୍ୟଭାରତ, ବିହାର, ବଂଗଳା, ଓଡ଼ିଶା ପ୍ରଭୃତି ପ୍ରଦେଶରେ। ସବୁଠି ଏଇ ଦେହ ବୈଶିଷ୍ଟ୍ୟ ସମାନ ଭାବରେ ବିଦ୍ୟମାନ ନଥିଲେ ମଧ୍ୟ ଭାରତବର୍ଷରେ ଯେଉଁଠି ଗୋଲମୁଂଡ, ଉନ୍ନତନାସ ମନୁଷ୍ୟର ରକ୍ତଧାରା ଯେଉଁ ପରିମାଣରେ ଅଛି, ସେଠି ଏଇ ଗୋଲମୁଂଡ, ଉନ୍ନତନାସ ଆଲପାଇନ ନରଗୋଷ୍ଠୀ ଉପସ୍ଥିତ। ପଶ୍ଚିମ ବ୍ରାହ୍ମଣଙ୍କ ବଂଶଧର ବର୍ତ୍ତମାନ ମହାରାଷ୍ଟ୍ର, କୁର୍ଗ ଓ ଗାଂଗେୟ ଉପତ୍ୟକାର ଦୀର୍ଘଦେହ ମଣିଷଂକ ମଧ୍ୟରେ ଏବଂ ପୂର୍ବ ବ୍ରାହ୍ମଣ୍ ଶାଖା ବଂଗଳା ଓ ଓଡ଼ିଶା ଲୋକଂକ ମଧ୍ୟରେ ବିଦ୍ୟମାନ। ଏଇ ଦୁଇ ଶାଖାହିଁ ଆଇକ୍‌ଷ୍ଟେଡ଼୍‌ଟଂକ ମତରେ ଆର୍ଯ୍ୟଭାଷୀ 'ଇଂଡିଡ୍' ନାମକ ବୃହତ୍ତର ନରଗୋଷ୍ଠୀର ଅଂତର୍ଗତ। ଆସାମୀୟ ଓ ପୂର୍ବପ୍ରାଂତଶାୟୀ ପାର୍ବତ୍ୟ ଦେଶମାନଂକରେ ମଂଗୋଲୀୟ ରକ୍ତଧାରାର ପରିଚୟ ସୁସ୍ପଷ୍ଟ। ଆଲପୋ-ଦିନାରୀୟ ଜାତିର ଲୋକମାନେ ଆର୍ଯ୍ୟ ଭାଷାଭାଷୀ।

ଏଥିପୂର୍ବରୁ ଜନତତ୍ତ୍ୱର ବିଶ୍ଳେଷଣ ପ୍ରସଂଗରେ ବୁଝାଯାଇଛି ଯେ ଉତ୍ତୋଟି ଦୀର୍ଘମୁଂଡ ଜାତି ଆଦି-ଅଷ୍ଟ୍ରେଲ୍‌ୟମାନଂକ ପରେ ଭାରତବର୍ଷର ଜନପ୍ରବାହ ମଧ୍ୟକୁ ଝାଂପ ପ୍ରଦାନ କରିଥିଲେ। ଏଥିରୁ ଦ୍ୱିତୀୟ ଧାରାଟି ପଂଜାବ ଅତିକ୍ରମ କରି ବେଶୀ ଦୂର ଅଗ୍ରସର ହୋଇ ପାରି ନାହିଁ। ପ୍ରଥମ ଧାରାଟି ମଧ୍ୟ ଓ ଦକ୍ଷିଣ ଭାରତରେ ବସ୍ତିଲାଭ କରିଥିଲା ଏବଂ ସେଠାରେ ପୂର୍ବତନ ଆଦି-ଅଷ୍ଟ୍ରେଲ୍‌ୟଂକ ସଂଗରେ

---

* 'ବାଂଗାଲୀର ଇତିହାସ'—ଡଃ ନିହାରରଂଜନ ରାୟ।

† Ibid.

ସେମାନଂକର କଚ୍ଛଂଶ ସମିଶ୍ରଣ ଘଟିଥିଲା । ଭୂମଧ୍ୟ ଧାରାଟି ସଗରେ ସୁମେରୀୟ-ଅସୀରୀୟ-ବାବିଲନୀୟ ପ୍ରଭୃତି ଭୂମଧ୍ୟ ନରଗୋଷ୍ଠୀର ସବଧ ଘଟନ୍ତି । ଏହି ଧାରାଟିହିଁ ହରପ୍ପା, ମହେଞ୍ଜୋ-ଦାରୋର ପ୍ରାଗୈତିହାସିକ ସିଂଧୁ-ସଭ୍ୟତାର ଜନକ । ଏମାନେ ବସ୍ତି ସ୍ଥାପନ କରିଥିଲେ ଉତ୍ତର-ଭାରତରେ ସର୍ବତ୍ର । ଏହି ପ୍ରଥମ ଓ ତୃତୀୟ ଦୀର୍ଘମୁଂଡ ନରଗୋଷ୍ଠୀ ସମନ୍ୱୟରେ ଯେଉଁ ଜନ ଗଢ଼ି ଉଠିଥିଲା, ସେହି-ମାନେହିଁ ଖୁବ ସଂଭବ ଦ୍ରାବିଡ଼ ଭାଷାଗୋଷ୍ଠୀର ବର୍ତ୍ତମାନ ତାମିଲ-ତେଲେଗୁ-ମାଲୟାଳୀ କନ୍ନଡ଼ଭାଷୀ ଲୋକଂକର ପୂର୍ବପୁରୁଷ । ତେବେ ସିଧ୍ୟଗାର କମ୍ ଉପତ୍ୟକାରେ ବେଲୁଚିସ୍ଥାନର ଦ୍ରାବିଡ଼ଭାଷୀ ବ୍ରାହୁଇମାନଂକ ଅସ୍ତିତ୍ୱରୁ ଅନୁମାନ ହୁଏ ଯେ, ଏହି ଦ୍ରାବିଡ଼ ଭାଷା ଥିଲା ସିଂଧୁ-ଉପତ୍ୟକାର ତୃତୀୟ ଧାରାର ଦୀର୍ଘମୁଂଡ ନରଗୋଷ୍ଠୀର ଭାଷା (ବାଂଗ) ।

ତେଣୁ ଏହି ଦ୍ରାବିଡ଼ ବା ଦ୍ରବିଡଭାଷୀ ନରମାନଂକର ପରିଚୟ ବଡ଼ ଜଟିଳ ମନେ ହୁଏ । ପ୍ରାକ-ଆର୍ଯ୍ୟ ଯୁଗରେ ଦ୍ରାବିଡ଼ ଭାଷାଭାଷୀ ନରଗୋଷ୍ଠୀ ଥିଲେ ତାହା ସଠିକ କହିବା କଷ୍ଟ, ଯଦିଚ ଐତିହାସିକ ଯୁଗରେ ଦାମିଲ-ଦ୍ରମିଲ ତାମିଲ ଜାତିର ଲୋକଂକ ଭାଷା ଦ୍ରାବିଡ଼ ବୋଲି ନିଃସଂଦେହରେ କୁହା ଯାଇପାରେ ।

## ଦ୍ରାବିଡ଼ ସଭ୍ୟତା ଓ ପୌର ସଂସ୍କୃତି

ନବ୍ୟ ପ୍ରସ୍ତର ଯୁଗର ଏହି ଦ୍ରାବିଡ଼ ଭାଷାଭାଷୀ ଲୋକମାନେ ଭାରତ-ବର୍ଷରେ ନାଗର ସଭ୍ୟତାର ସୃଷ୍ଟି କଲେ । ଆର୍ଯ୍ୟ ଭାଷାରେ 'ପୁର', 'ପୁର' ଓ 'କୁଟ' ପ୍ରଭୃତି ନଗର-ଜ୍ଞାପକ ଶବ୍ଦ ଗୁଡ଼ିକ ଦ୍ରାବିଡ ଭାଷାରୁ ଉଦ୍ଭୂତ । ରାମାୟଣରେ ସ୍ୱର୍ଣ୍ଣ ଲଂକାର ବିବରଣ, ମହାଭାରତରେ ମୟଦାନବର ଉପାଖ୍ୟାନ ଏବଂ ମହେଞ୍ଜୋ-ଦାରୋର ନଗର ବିନ୍ୟାସର ଉନ୍ନତ ଓ ସମୃଦ୍ଧ ରୂପ, ଭାରତର ବିଭିନ୍ନ ପ୍ରାଗୈତିହାସିକ ଧ୍ୱଂସାବଶେଷ ଏମାନେହିଁ ପ୍ରାକ୍ ଆର୍ଯ୍ୟଭାଷୀ ଦୀର୍ଘମୁଂଡ ଦ୍ରାବିଡ଼-ଭାଷା ଭାଷୀ ନରଗୋଷ୍ଠୀର ନାଗରିକ ସଭ୍ୟତା ଅଡ଼କୁ ଇଂଗିତ କରେ । ସେମାନେ ବିଭିନ୍ନ ଖଣିଜ ବସ୍ତୁର ବ୍ୟବହାର ଜାଣିଥିଲେ । ସୁନା, ରୁପା, ସୀସା, ବ୍ରୋଂଜ ଓ ଟିଣର ବ୍ୟବହାର ଜାଣିଥିଲେ । ନାନା ପ୍ରକାର ପଥର, ଜାଂତବ ହାଡ଼, ପୋଡ଼ାମାଟି, ଖଣିଜ ଦ୍ରବ୍ୟ ଓ ସାମୁଦ୍ରିକ ଦ୍ରବ୍ୟ ଇତ୍ୟାଦି ଅଳଂକରଣ ଓ ବିବିଧ ରଚନାରେ ସେମାନେ ବ୍ୟବହାର କରୁଥିଲେ । ବର୍ଚ୍ଛା, ତୀର ଖଡ଼୍ଗ, କୁଠାର, ଗଦା, ଧନୁ, ମୁଷଳ, ତରବାରୀ, ଖରଫଳକ ଥିଲା

ସେମାନଂକର ଅସ୍ତ୍ରୋପକରଣ । ପଥରର ହଳମୁଖ, ଚକମକ ପଥରର ଛୁରି ଓ କୁରାଢ଼ି, ନାନା ପ୍ରକାର ଧାତୁ ଓ ମାଟିର ଥାଳି ଗିନା, ନାନା ପ୍ରକାର ନିତ୍ୟ ବ୍ୟବହାର୍ଯ୍ୟ ଗୃହୋପକରଣ, ମାଟିର ଖେଳନା, ତଂବା ଓ ବ୍ରୋଂଜର ଦେହ-ସଜ୍ଜା, ଖେଳିବା ପାଇଁ ଗୋଟି ଓ ପଶା, ପ୍ରଭୃତି ଅସଂଖ୍ୟ ଓ ବିବିଧ ଉପାଦାନ ଏଇ ସଭ୍ୟତାର ବୈଶିଷ୍ଟ୍ୟ । ଗୋରୁଗାଡ଼ି ବୋଧହୁଏ ଏଇ ସଭ୍ୟତାର ଦାନ । ସୂତାକଟା ଓ ଲୁଗାବୁଣା ତ ସେମାନେ ଜାଣିଥିଲେ । ଯବ ଓ ଗହମ, ମାଛ, ମେଷ, ଶୂକର ଓ କୁକ୍କୁଟ-ମାଂସ ଥିଲା ଏମାନଂକର ଆହାର୍ଯ୍ୟ । ବଡ଼ ମେଂଢା, ଗୋରୁ, ମଇଁଷି, ହାତୀ, ଓଟ, ଘୁଷୁରି, ଛେଳି, କୁକ୍କୁଟ, କୁକୁର ପ୍ରଭୃତି ଥିଲେ ଏମାଂନଙ୍କର ଗୃହପାଳିତ ପଶୁ । ଏମାନଂକର ବିଳାସ ଦ୍ରବ୍ୟର ପ୍ରାଚୁର୍ଯ୍ୟ ଏବଂ ଆରାମ ଉପ-ଭୋଗର ଉପକରଣ ତଥା ଜ୍ୟାମିତିକ ରେଖାଂକନ ଓ କାରୁଶିଳ୍ପର ଯେଉଁ ପରିଚୟ ଆମେ ପ୍ରାଗୈତିହାସିକ ସୈଂଧବ ସଭ୍ୟତାର ଧ୍ୱଂସାବଶେଷ ମଧ୍ୟରୁ ପାଉଁ, ତାହା ସେଂମାନଙ୍କର ସମୃଦ୍ଧ ନଗର-ସଭ୍ୟତା ତଥା ପୌର ସଂସ୍କୃତିର ସ୍ମାରକ ।

ଶ୍ରେଷ୍ଠ ବଡ଼ ରାସ୍ତା, ଜଳ ନିଃସରଣ ପ୍ରଣାଳୀ, ବଡ଼ ଶ୍ରେଷ୍ଠ ଏକାଧିକ ତାଲ-ବିଶିଷ୍ଟ ଇଟା ଓ କାଠର ଘର, ଦୁର୍ଗ, ଓ ସିଡ଼ି, ଖିଲଣଯୁକ୍ତ ଦରଜା, ଝରକା, ସ୍ନାନା-ଗାର, ଜଳକୁଂଡ, ପ୍ରାଂଗଣ, ପୂଜାମଂଦିର, ମୃତଦେହ ସତ୍କାର ପାଇଁ ସ୍ଥାନ ନିର୍ଦ୍ଦେଶ ପ୍ରଭୃତି ଯାହା କିଛି ନଗର-ବିନ୍ୟାସର ଅତ୍ୟାବଶ୍ୟକ ଉପାଦାନ, ଏଇ ତାମ୍ର-ପ୍ରସ୍ତର ଯୁଗୀୟ ଦୀର୍ଘମୁଂଡ ଦ୍ରାବିଡ଼ ନରଗୋଷ୍ଠୀ ଦ୍ୱାରା ରଚିତ ସଭ୍ୟତାରେ ସେ ସବୁର କିଛି ଅଭାବ ନ ଥିଲା । ଭାଷାତତ୍ତ୍ୱରୁ ମଧ୍ୟ ଜଣାଯାଏ ଯେ 'କମାର' ଶବ୍ଦଟି ଦ୍ରାବିଡ଼ 'କର୍ମାର' ଶବ୍ଦରୁ ଗୃହୀତ । ଶିଳ୍ପକଳା ସଂଗେ ସେମାନଂକର ପରିଚୟର ପ୍ରମାଣ 'ରୂପ' ଓ 'କଳା ଏଇ ଦୁଇଟିଯାକହିଁ ଦ୍ରାବିଡ଼ ଶବ୍ଦ । 'ତଂଡୁଲ' ଓ 'ବ୍ରୀହି' ଦ୍ରାବିଡ ଭାଷାରୁ ଆର୍ଯ୍ୟ-ଭାଷାକୁ ଯାଇଥିଲା । ଆର୍ଯ୍ୟ ସଭ୍ୟତାର ପ୍ରଥମ ସ୍ତରରେହିଁ ଦ୍ରାବିଡ ସଭ୍ୟତାର ଏଇ ସବୁ ବାସ୍ତବ ଉପକରଣ-ସୂଚକ ଶବ୍ଦାବଳୀ ଗୃହୀତ ଯାଇଥିଲା । ସେଥିପାଇଁ ପ୍ରତ୍ୟେକଟି ଶବ୍ଦ ଋକ୍‌ବେଦ ଓ ବ୍ରାହ୍ମଣ ପ୍ରଭୃତିରେ ଦେଖିବାକୁ ମିଳେ । ସେମାନଂକର କାରୁକଳା, ମୃତ୍ତିଶିଳ୍ପ ଓ ଜ୍ୟାମିତିକ ନକ୍‌ସାର ପରଂପରା ଆଜି ମଧ୍ୟ କେତକ ସ୍ଥାନରେ ଅନୁସୃତ ହୁଏ । ସେମାନେ ଯେ ମତ୍ସ୍ୟାହାରୀ ଥିଲେ ଏହା ସୁବିଦିତ, ବୈଦିକ ଆର୍ଯ୍ୟଭାଷୀମାନେ ଥିଲେ ମାଂସାହାରୀ । ପରବର୍ତ୍ତୀ କାଳରେ, ନାନାକାରଣରୁ ଏମାନଂକ ମଧ୍ୟରେ ବିଭିନ୍ନ ଧର୍ମଗୋଷ୍ଠୀର ଅହିଂସା-ବାଦର ଅଭ୍ୟୁଦୟ ଫଳରେ ଆମିଷାହାର ପ୍ରତି ବିରାଗ ଜନ୍ମେ । ଏଇମାନଂକ ମଧ୍ୟରେ ହିଁ ଜୈନ ଧର୍ମର ମୂଳପତନ ହୁଏ । (ବାଂ ଇ)

ପ୍ରତ୍ନତାତ୍ତ୍ୱିକ ବିଶ୍ଳେଷଣ ଦ୍ୱାରା ଜଣାଯାଇଚ ଯେ ସୈଂଧବ ସଭ୍ୟତାର ଉଷାକାଳ ଖ୍ରୀ: ପୂ ୩୦୦୦ ଶତାବ୍ଦୀ । ଏହା ଭାରତରେ ଆର୍ଯ ନରଗୋଷ୍ଠୀର ପ୍ରବେଶର ବହୁ ପୂର୍ବର କଥା । ଜୈନ ପରଂପରା ଅନୁଯାୟୀ ଆଦିନାଥ ଋଷଭ, ଯେ କି ପ୍ରଥମ ଜିନ ତୀର୍ଥଂକର, ଜୈନ ଧର୍ମର ପ୍ରତିଷ୍ଠା କରିଥିଲେ । ଏଇ ସିଂଧୁ-ଉପତ୍ୟକାବାସୀ ଜୈନମାନେ ଶ୍ରମଣ-ଧର୍ମ ଅନୁସରଣ କରୁଥିଲେ । ଜୈନଧର୍ମାବଲଂବୀ ଥିବାରୁ ଦ୍ରାବିଡ଼ମାନଂକର ଅନ୍ୟ ନାମ ଥିଲ ବ୍ରାତ୍ୟ । ଲିଛବୀ ପ୍ରଭୃତିର ଅଧିବାସୀଗଣ ଏବଂ 'ଅସୁର' ଜାତି ମଧ୍ୟ ଜୈନଧର୍ମୀ ଥିଲେ । 'ବ୍ରାହ୍ମଣ'ମାନଂକରେ ଉଲ୍ଲେଖ ଅଛି ଯେ 'ଅସୁର' ମାନେ ପ୍ରଜାପତିଂକ ଠାରୁ ଜନ୍ମ ହୋଇଥିଲେ ଏବଂ ସେମାନେ ବୈଦିକ ଅଯମାଂନକର ବିରୋଧୀ ଥିଲେ (ଋକ୍‌ବେଦ, ୧୮, ୧୭୪, ୫) । ଜୈନମାନଂକର ବିଶ୍ୱାସ ଯେ ପ୍ରଜାପତି ଋଷଭଂକ ଛଡା ଅନ୍ୟ କେହି ନୁହଂତି । ସାର୍ ଜନ୍ ମାର୍ଶାଲ ଯଥାର୍ଥରେ କହିଛଂତି, ସୈଂଧବ ସଂସ୍କୃତି ଓ ବୈଦିକ ସଂସ୍କୃତି ମଧ୍ୟରେ ବହୁ ମୌଳିକ ପାର୍ଥକ୍ୟ ଦେଖାଯାଏ । ସୈଂଧବ ସଂସ୍କୃତି ମୂର୍ତ୍ତି-ଉପାସନା ଗ୍ରହଣ କରିଚ, ମାତ୍ର ବୈଦିକ ସଂସ୍କୃତିରେ ମୂର୍ତ୍ତି ଉପାସନା ନାଇ, ଏହା uniconic । ଜୈନମାନେ ଯେ ଭାରତରେ ମୂର୍ତ୍ତିପୂଜାର (Iconism) ପ୍ରବର୍ତ୍ତକ, ଏହା ସ୍ୱୀକୃତ । ଡ: ଜ: ନାୟାର Indus Valley Civilisation ରେ କହିଛଂତି :—

> ସୈଂଧବ ସଭ୍ୟତାର ରୂପ ରେଖ

"It is a fact that the Jains are the first Indian people who took inconism in their religious worship and made images of their Tirthankuras which resembled those found in Harappa and Mahenjodaro. The Harpapa statuette is a male torso in nude form which resembles the torsos found in Lochianpur (Patna)" ('Jain Journal,' April 1972)

ଅର୍ଥାତ୍ ସୈଂଧବ ଉପତ୍ୟକାର ଜୈନମାନେ ମୂର୍ତ୍ତିପୂଜକ ଥିଲେ ଏବଂ ଏମାନେହିଁ ଭାରତରେ ଧର୍ମ ମଧ୍ୟରେ ମୂର୍ତ୍ତି-ଉପାସନା ପ୍ରବର୍ତ୍ତନ କରିଥିଲେ । ଏମାନେ ତୀର୍ଥାଂକରମାନଂକର ମୂର୍ତ୍ତିକୁ ପୂଜା କରୁଥିଲେ । ହରପ୍‌ପାରୁ ଆବିଷ୍କୃତ ଏକ ମସ୍ତକହୀନ ନଗ୍ନ ମୂର୍ତ୍ତି ସହିତ ପାଟନା ନିକଟସ୍ଥ ଲୋହିଆନପୁରରୁ ମିଳିଥିବା ମସ୍ତକହୀନ ମୂର୍ତ୍ତିର ବହୁ ସାମଂଜସ୍ୟ ଦେଖାଯାଏ । ପରେ ଯେଉଁ ସବୁ ତୀର୍ଥାଂକର ବିଗ୍ରହମାନ ତିଆରି ହୋଇଥିଲ, ସେ ସବୁ ସହିତ ହରପ୍‌ପା ମହେଂଜୋଦାରୋରୁ ପ୍ରାପ୍ତ ମୂର୍ତ୍ତିମାନଂକର ସାଦୃଶ୍ୟ ରହିଚ । ମହେନ୍-ଜୋ-ଦାରୋରୁ ମିଳିଥିବା ସଂଚକ (seal) ରେ ଯେଉଁ ଯୌଗିକ ମୁଦ୍ରା ଦେଖାଯାଏ ତାହା ଜୈନ ଯୋଗୀଂକର

ଲିପିର ଆତ୍ମପ୍ରକାଶ ଦେଖିବାକୁ ପାଉଁ । ତା' ପୂର୍ବରୁ ପ୍ରାପ୍ତ ପ୍ରନ୍ନ ବଂଗଳା ଲିପିରେ ଖୋଦିତଲେଖମାନ ଆଖିରେ ପଡ଼େ । ଏ ବିଷୟରେ ପରବର୍ତ୍ତୀ ଅଧ୍ୟାୟରେ (ସାରଳାଯୁଗ) ଆଲୋଚନା କରିବୁଁ । ଯେପରି ଦେଖାଯାଉଚି ଜୟଦେବଂକୁ ଉଂଜଂଙ୍କ ପରି ରସାତଳକୁ ନ ପକାଇବା ଯାଏ ଆମ ଗବେଷଣା ନିରସ୍ତ ହେବ ନାହିଁ । ଉପେଂଦ୍ର ଭଂଜ କମ୍ୟୁନିଷ୍ଟ ରୁଷ୍, ଏବଂ ଜହରଲାଲ ନେହରୁ ଏବଂ ଗ୍ୟାଂ-କାଇ-ସାକୋଂକ କଥା ଲେଖିଯାଇଛଂତି ବୋଲି କହି ଆମେ ତାଂକୁ ଯେପରି ଶ୍ରେଷ୍ଠ କରି ପକାଇଛୁଁ, ଜୟଦେବଂକୁ ସେପରି ପରିଶେଷ ହିନସ୍ତା ନ କରିବା ଯାଏଁ ଆମର ଅନୁସନ୍ଧିତ୍ସା ଶେଷ ହେବ ନାହିଁ ।

## ଭାଷା-ସାହିତ୍ୟର ଅଭ୍ୟୁତ୍ଥାନ

ଜୟଦେବଂକ କାଳରେ ଅର୍ଥାତ୍ ଖ୍ରୀଷ୍ଟୀୟ ତ୍ରୟୋଦଶ ଶତକର ଶେଷାବଧି ଭାରତବର୍ଷରେ କୌଣସି ଭାଷା-ସାହିତ୍ୟ ପ୍ରାଂଜଳ ରୂପ ପରିଗ୍ରହ କରି ନ ଥିଲା । ଏକଥା ଜଣା ଶୁଣା ତଥାପି କେତେକଜଣ ଓଡ଼ିଆ ଅଧ୍ୟାପକ ଜୟଦେବଂକ ଭଣିତା ଥିବା କେତେକ ଓଡ଼ିଆ ଗୀତ ଉଦ୍ଧାର କରି ଏହାକୁ ଜୟଦେବଂକର ଓଡ଼ିଆ ରଚନା ବୋଲି ବଜାରରେ ଚଳାଇ ନେବାକୁ ଚେଷ୍ଟା କରୁଥିବାର ବେଳେ ବେଳେ ଦେଖା-ଯାଉଚି । ଏହା ବାସ୍ତବରେ ଏକ ବିଡ଼ଂବନାର ବିଷୟ । ଜୟଦେବଂକ ନାମରେ ଭଣିତ କେତେକ ଓଡ଼ିଆ ଗୀତ ଅଜକ ପ୍ରାୟ ୬୦ ବର୍ଷ ତଳେ 'ଉତ୍କଳ ଦୀପିକା' ପ୍ରେସରେ ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା । ଅଧ୍ୟାପକ ପଠାଣି ପଟ୍ଟନାୟକଂକ ପାଖରେ ଏ ବହିର ଖଂଡେ କପି ଅଛି ବୋଲି ଲେଖକ ତାଂକଠାରୁ ଜାଣିଚି । ମାତ୍ର ଗୀତ ଗୁଡ଼ିକ ଯେ ଜୟଦେବ-କୃତ ହୋଇ ନ ପାରେ, ଏ ବିଷୟରେ ସମସ୍ତେ ନିଃସଂଦେହ ।

ଜୟଦେବଂକର ବହୁ ପରେ ନାଭାଜି ଦାସ (ଶକାବ୍ଦ ୧୫୦୦), ଓ ବଂଗଳାରେ ଚଂଡୀ ଦାସ, ଜ୍ଞାନ ଦାସ, ବ୍ରଜଭାଷାରେ ବିଦ୍ୟାପତି, ରାୟ ରମାନଂଦ (ଓଡ଼ିଶା) ପ୍ରମୁଖ ଭାଷା-ସାହିତ୍ୟ ମାଧ୍ୟମରେହିଁ ନିଜ ନିଜ କୃତିମାନ ରଚନା କରି ଯାଇଛଂତି । ଅନ୍ୟ ଦିଗରେ ଚଂଡୀ ଦାସଂକଠାରୁ ଅରଂଭ ହୋଇଥିବା ଖାଂଟି ବଂଗଳା ସାହିତ୍ୟରେ ନଂଦନନ୍ଦିନୀ ବିରହିଣୀ ରାଧାଂକ ଆବିର୍ଭାବ ଦେଖିବାକୁ ପାଉଁ । ରାଧାଂକ ବିରହ ହିଁ ପରାଧୀନତା ଯୁଗଠାରୁ ବୈଷ୍ଣବ ସାହିତ୍ୟରେ ବଡ଼ ସ୍ଥାନ ଅଧିକାର କରେ । ଏଇ ସାହିତ୍ୟର ପ୍ରତିପାଦ୍ୟ ହେଉଚି, ରାଧାଂକ ଅଭିସାର ଏବଂ ପ୍ରିୟ ଅଦର୍ଶନରେ

ବିରହ, ଅବଶେଷରେ ପୁନର୍ମିଳନ । ଏହି ପଦାବଳୀର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଦୁଇ ଅର୍ଥରେହିଁ କରାଯାଏ । ହତାଶ ପ୍ରେମିକା ଯେଉଁ ବିଳାପ

ମାଥୁର ପଦାବଳୀ

କରୁଛନ୍ତି ତାହା ମୁସଲମାନ-ପଦାନତ ଦେଶରେ ହତାଶ ସ୍ୱଦେଶପ୍ରେମୀର ବିଳାପ ରୂପେ ମଧ୍ୟ ଗ୍ରହଣ କରାଯାଇପାରେ ।

ଚଣ୍ଡୀ ଦାସଙ୍କ ପ୍ରେମିକା କହୁଛନ୍ତି : —

"ସୁଖେର ଲାଗିୟେ ଏ ଘର ବାଂଧିନୁ
ଅନଲେ ପୁଡ଼ିୟା ଗେଲ...
ସାଗର ଶୁଖାଲ ମାଣିକ ଲୁକାଲ
ଅଭାଗୀର କରମ ଦୋଷେ ।"

ଏଇ ଦୁଃଖ ହତାଶାପୂର୍ଣ୍ଣ ଯୁଗରେ ପରାଧୀନତାର ମର୍ମବେଦନା ଧର୍ମର ଭାଷାରେ ( ପ୍ରିୟଜନର ଅଦର୍ଶନରେ ଅର୍ଥାତ୍ ସ୍ୱାଧୀନତା ବିଲୁପ୍ତିରେ ) ବିରହୀତ ( ହିନ୍ଦୁ ଜାତିର ) ମାଥୁର ବା ବିଚ୍ଛେଦ ଏବଂ ତଜ୍ଜନିତ ହା-ହୁତାଶ କ୍ରନ୍ଦନ ମଧ୍ୟରେ ବେଶ୍ ପ୍ରମୂର୍ତ୍ତ । *

ବିଦ୍ୟାପତିଙ୍କ କଂଠରେ :—

"ହରି କି ମଥୁରା ପୁରେ ଗେଲ,
ଆଜ ଗୋକୁଲ ଶୂନ୍ୟ ଭେଲ ।
ରୋଦତି ପିଂଜରେ ଶୁକେ,
ଧେନୁ ଧାବଇ ମାଥୁର ମୁଖେ ।
ଅବସୋଇ ଯମୁନାର କୂଲେ ।
ଗୋପ ଗୋପୀ ନାହି ବୁଲେ ।"

ବିଦ୍ୟାପତିଙ୍କ ମାଥୁରଗାନ ଓ ବଂଗଳା ମହାଜନ ପଦାବଳୀରେ ଏହା ଆହୁରି ଅଧିକ ବିଶଦଭାବରେ ପରିସ୍ଫୁଟ । ଯେଥିପାଇଁ ସ୍ୱର୍ଗୀୟ ଦୀନେଶଚନ୍ଦ୍ର ସେନ କହିଛନ୍ତି : — ବୈଷ୍ଣବର ମାଥୁରଗାନ...ଅପର ଦିକେ ବଂଗେର ତତ୍କାଳୀନ ଇତିହାସ ସେଇ ବିୟୋଗାଂତ ଦୃଶ୍ୟେର ଉପାଦାନ ଯୋଗାଇୟାଛେ । କତ ବିୟୋଗାଂତ ନାଟକେର ସାର ନିଂଡାଇୟା ଯେ ମାଥୁର ଗାନ ରଚିତ ହଇୟାଛିଲ, ତାହା ବଲିବାର ନୟ । ( ବୃହତ୍ ବଂଗ, ୨ୟ ଖଂଡ )

* 'ସାହିତ୍ୟେ ପ୍ରଗତି'—ଡଃ ଭୂପେଂଦ୍ରନାଥ ଦତ୍ତ ।

## ଗୀତଗୋବିନ୍ଦର ଭାଷା ଉପରେ ଅପଭ୍ରଂଶର ପ୍ରଭାବ

କବି ଜୟଦେବ ନିଜ ରଚନାକୁ 'ପ୍ରବନ୍ଧ' ସଂଗୀତ କହିଛନ୍ତି । "ଶ୍ରୀ ବାସୁଦେବ ରତିକେଳି କଥା ସମେତ ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧମ୍ ।" ଶୁଦ୍ଧ ପ୍ରବନ୍ଧ-ଗୀତର ସ୍ୱର ଧାତୁ ଓ ଛ'ଟା ଅଂଗ । ଧାତୁ ଅର୍ଥାତ ଅବୟବ ବିଭାଗ, ଯଥା ଉଦ୍‌ଗ୍ରାହକ, ମେଲାପକ, ଧ୍ରୁବ ଓ ଆଭୋଗ । ଯେଉଁମାନେ ପଂଚ ଧାତୁର କଥା କହନ୍ତି ସେମାନେ ଧ୍ରୁବ ଓ ଆଭୋଗ ମଧ୍ୟରେ ଗୋଟିଏ ଅଂଶକୁ ଅଂତରା ଆଖ୍ୟା ଦେଇଛନ୍ତି । ଅଂଗ ଛଟି, ଯଥା, ସ୍ୱର, ବିରୁଦ, ପଦ, ତେନ, ପାଠ, ତାଳ । ସ୍ୱର ସ-ରି-ଗ ମ ପ୍ରଭୃତି ଆଲାପ, ବିରୁଦ ପ୍ରଶଂସା ବା ଗୁଣବାଚକ । ପଦ ଅର୍ଥାତ୍ କଥା ଯାହା ଅର୍ଥ ପ୍ରକାଶ କରେ । ସଂଗୀତର ସମସ୍ତ ଅଂଶହିଁ ପଦ । ତେନ ମଂଗଳ ବାଚକ ଶବ୍ଦ । ତାଳ ପରିମିତ ସମୟରେ ଯତି ବା ବିରାମ । ଶୁଦ୍ଧ ପ୍ରବନ୍ଧ-ଗୀତ ପାଂଚ ପ୍ରକାର । ମେଦନୀ, ନନ୍ଦନୀ, ଦୀପନୀ, ପାବନୀ ଓ ତାରାବଳୀ । ସ୍ୱର, ବିରୁଦ, ପଦ, ତେନ, ପାଠ, ତାଳ ଏଇ ଛ ଅଂଗଯୁକ୍ତ ଗାନ ମେଦନୀ । ସ୍ୱର, ପଦ, ତେନ, ପାଠ, ତାଳ ଏଇ ପଂଚ ଅଂଗ ଯୁକ୍ତ ଗାନ ଦୀପନୀ । ସ୍ୱର, ପଦ, ତାଳ ଯୁକ୍ତ ଗାନ ପାବନୀ । ଏବଂ ପଦ ଓ ତାଳ ଯୁକ୍ତ ଗାନ ତାରାବଳୀ । ଶ୍ରୀ ଗୀତଗୋବିନ୍ଦର ଗାନ ପଂଚଧାତୁ ଓ ଛ ଅଂଗ ଯୁକ୍ତ ମେଦନୀ ଜାତିର ଅଂତର୍ଗତ । ( ହ. ମୁ )

'ଜୟଦେବ-କାବ୍ୟର ମୌଳିକ ସ୍ୱରୂପ ନିରୂପଣ କରିବାକୁ ହେଲେ ଏକଥା ମନେ ରଖିବାକୁ ହେବ ଯେ ଗୀତଗୋବିନ୍ଦ ଯେଉଁ ସମୟରେ ରଚିତ ହୋଇଥିଲା, ସେ ସମୟ ପ୍ରାଚୀନ ସଂସ୍କୃତ ଭାଷା ଓ ସାହିତ୍ୟର ପ୍ରାୟ ଶେଷ ଅବସ୍ଥା ଏବଂ ଅପଭ୍ରଂଶ ବା ଦେଶୀ ଭାଷା ଓ ସାହିତ୍ୟର ଅଭ୍ୟୁଦୟ କାଳ । ସେଥିପାଇଁ ଏଇ ଯୁଗ-ପରିବର୍ତ୍ତନ ( transition ) କାଳରେ ଏଇ ପ୍ରକାର ରଚନା ଦେଖିବାକୁ ମିଳେ, ଯାହା ପୁରାତନ ସଂସ୍କୃତ କାବ୍ୟର ନିୟମ ନିଗଡ଼ ଦ୍ୱାରା ସଂପୂର୍ଣ୍ଣ ନିୟନ୍ତ୍ରିତ ନୁହେଁ, ଅଥଚ ନୂତନ ଦେଶୀ ସାହିତ୍ୟର ପୂର୍ଣ୍ଣ ସ୍ୱାଧୀନତା ମଧ୍ୟ ହାସଲ କରିନାଇ । ଏହା ଦେଶୀ ଭାଷା ଓ ସାହିତ୍ୟ ଉପରେ ସଂସ୍କୃତର ପ୍ରଭାବର ଫଳ ନୁହେଁ, ବରଂ ସଂସ୍କୃତ ଉପରେ ଦେଶୀ ଭାଷା ଓ ସାହିତ୍ୟର ପ୍ରଭାବର ପରିଣାମ । କାରଣ ଏଇ ସମୟରେ ଗୀତଗୋବିନ୍ଦ ଛଡ଼ା ଅନ୍ୟତ୍ର ମଧ୍ୟ ଦେଖିବାକୁ ମିଳେ ଯେ, ଦେଶୀ ଭାଷା ଓ ସାହିତ୍ୟର ଅଭ୍ୟୁତ୍‌ଥାନ ସଂଗେ ସଂଗେ ଓ ତାର ଅନିବାର୍ଯ୍ୟ ପ୍ରଭାବ ଫଳରେ ପ୍ରାଚୀନ ସଂସ୍କୃତ ଭାଷା ଓ ସାହିତ୍ୟର ଗତି ଓ ପ୍ରକୃତିରେ

ଯଥେଷ୍ଟ ପରିବର୍ତ୍ତନ ଘଟିଚି । ନବୋଦିତ ଓ ଜନସାଧାରଣଂକ ମଧ୍ୟରେ କ୍ରମଶଃ ବିସ୍ତୃତ ଦେଶୀୟ ଭାଷା ଓ ସାହିତ୍ୟର ଆଦର୍ଶକୁ ଆତ୍ମସାତ୍ କରି ସଂସ୍କୃତ ଭାଷା ଓ ସାହିତ୍ୟକୁ ପୁନରୁଜ୍ଜୀବିତ ଓ ନୂତନ ରୂପରେ ଗଠନ କରିବାର ଗୋଟିଏ ପ୍ରଚେଷ୍ଟା ସଂକଳ୍ପ ଦେଖାଦେଇଥିଲା । ଆମର ମନେହୁଏ ଜୟଦେବଂକ ଗୀତଗୋବିଂଦ ଏଇ ନୂତନ ପ୍ରଚେଷ୍ଟାର ଏକ ଉତ୍କୃଷ୍ଟ ନିଦର୍ଶନ । ( ଏକ୍ସ )

ଦେଶୀ ଗାନର ଆଦର୍ଶରେ ରଚିତ ହେଲେ ମଧ୍ୟ ଗୀତଗୋବିଂଦର ଗାନଗୁଡ଼ିକୁ ଠିକ୍ ଦେଶୀ କୁହାଯାଇପାରିବ ନାଇ । ଦେଶୀ ଭାଷାର ପଦ୍ଧତି ଓ ଭଂଗୀ, ଦେଶୀ ସାହିତ୍ୟର ଗୀତିବାହୁଲ୍ୟ ଓ ଭାବପ୍ରବଣତା କ୍ରମଶଃ ସଂସ୍କୃତରେ ରଚିତ କାବ୍ୟ ନାଟକରେ ଆସି ପ୍ରବେଶ କରିଥିଲା । ଗୀତଗୋବିଂଦରେ ତାହାହିଁ ଦେଖାଯାଏ । କିଂତୁ ଏହାର ଅଲଂକାର-ପ୍ରାଚର୍ଯ୍ୟ ଓ ପରିଣତ ରଚନା-କୌଶଳ ସଂସ୍କୃତର ଅନୁଯାୟୀ, ପ୍ରାକୃତର ନୁହେ । ଯେଉଁ ଯମକ ଓ ଅନୁପ୍ରାସାଦିର ନିପୁଣ ପ୍ରୟୋଗ ଏଥିରେ ସଂସ୍କୃତ ଶବ୍ଦ ଓ ବର୍ଣ୍ଣବିନ୍ୟାସରେ ମିଳେ, ତାହା ବ୍ୟଂଜନବର୍ଣ୍ଣ-ବିରଳ ପ୍ରାକୃତ ବା ଅପଭ୍ରଂଶ ରଚନାରେ ଏଇ ପରିମାଣରେ ସଂଭବପର ନୁହେ । ଏଥିରେ ସଂସ୍କୃତ ରଚନା ଭଂଗୀ କେବଳ ଦେଶୀ ଗାନର ପ୍ରଭାବ ସ୍ୱୀକାର କରି ଦେଶୀ ଧରଣର ଗାନ ଓ ପଦାବଳୀ ରଚନା କରିଚି ମାତ୍ର । ଆମେ ଯେଉଁ ପରିବର୍ତ୍ତନର ଯୁଗ କଥା କହୁଛୁଁ, ସେଇ ଯୁଗରେହିଁ ଏଭଳି ଅନନ୍ୟମିତ ରଚନା ସଂଭବ ହୋଇପାରେ । (*Ibid*)

ରାଣା କୁଂଭଂକ ରସିକପ୍ରିୟା ଟୀକାରେ ଗୀତଗୋବିଂଦର ଢଗୋଟି ଗୀତର ନୂତନ ନାମକରଣ କରାଯାଇଚି । ଯଥା : ପ୍ରଳୟ ପୟୋଧିଜଳେ’ ଗୀତଟିର ନାମ ଦଶାବତାର-କୀର୍ତ୍ତିଧବଳ, ‘ଶ୍ରିତ କମଳାକୁଚମଂଡଳ’ର ନାମ ହରି ବିଜୟ ମଂଗଳାଷ୍ଟ୍ର, ‘ଲଳିତ ଲବଂଗଲତା’ର ନାମ ମାଧବ ମହୋତ୍ସବ କମଳାକର ଇତ୍ୟାଦି ।

## ସଂସ୍କୃତ ଓ ଦେଶୀ ରୀତିର ସମନ୍ୱୟ

ଏହା ସତ୍ୟ ଯେ ଭାବ ଓ ରୂପ ଏଇ ଦୁଇ ଦିଗରୁ ତତ୍କାଳୀନ କାବ୍ୟ-ସାହିତ୍ୟରେ ଗୀତଗୋବିଂଦ ଗୋଟିଏ ନୂତନ ପଦ୍ଧତି ପ୍ରବର୍ତ୍ତନ କରିଥିଲା । ଏହି ପଦ୍ଧତିକୁ ସଂପୂର୍ଣ୍ଣ ଦେଶୀ କୁହାଯାଇ ପାରିବନାଇ କି ସଂପୂର୍ଣ୍ଣ ସଂସ୍କୃତ ମଧ୍ୟ କୁହାଯାଇ ପାରିବ ନାଇ । ସଂସ୍କୃତ ଛଂଦରେ ରଚିତ ବର୍ଣ୍ଣନାମୂଳକ ଶ୍ଳୋକଗୁଡ଼ିକ ଛାଡ଼ିଦେଲେ ଯେଉଁ ରାଗମୂଳକ ପଦାବଳୀ ଗୀତଗୋବିଂଦର ଶ୍ରେଷ୍ଠ ସଂପଦ ସେଗୁଡ଼ିକ ନାମକୁ

ମାତ୍ର ସଂସ୍କୃତରେ ରଚିତ ହେଲେ ମଧ୍ୟ ଏହାର ଭାଷା ଓ ଛନ୍ଦର ଭଙ୍ଗୀ ଯେତେଟା ପ୍ରାକୃତ ବା ଦେଶୀ ଭାଷା ଓ ଛନ୍ଦର ଅନୁସାରୀ ସେତେଟା ସଂସ୍କୃତର ନୁହେଁ । ଗୀତଗୋବିନ୍ଦରେ ସଂସ୍କୃତ ଅଳଂକାର ଓ ଶବ୍ଦାର୍ଥ ଗୌରବ ସବିଶେଷ ରକ୍ଷିତ ହୋଇଛି ସତ, କିନ୍ତୁ ପଦାବଳୀରେ ବ୍ୟବହୃତ ଭାବର ରଚନା ପଦ୍ଧତି ସଂସ୍କୃତ-କାବ୍ୟର ଅନୁରୂପ ନୁହେଁ, ବରଂ ଏଇ ସ୍ୱଚ୍ଛ ଓ ସହଜଗେୟ ପଦଗୁଡ଼ିକ ଦେଶୀ ଗାନର ପଦ୍ଧତିର ଅନୁସରଣ କରିଛନ୍ତି । ଏପରିକି ଅତି ଅଳ୍ପ ଚେଷ୍ଟାରେ ଅନେକ ପଦ ଯେ ସଂସ୍କୃତରୁ ପ୍ରାକୃତରେ ଏବଂ ପ୍ରାକୃତରୁ ସଂସ୍କୃତରେ ପରିଣତ କରାଯାଇପାରେ ଏହା ଦେଖାଇବା କଠିନ ନୁହେ । (ଏକ୍ନ)

ଅନ୍ୟ ଗୋଟିଏ କଥା ହେଉଛି ଜୟଦେବଙ୍କ ରଚନାକୁ ପ୍ରାଚୀନ ସଂସ୍କୃତ ଗୀତକବିତାର କୌଣସି ବିଶିଷ୍ଟ ପର୍ଯ୍ୟାୟରେ ନିଶ୍ଚିତ ରୂପେ ଅନ୍ତର୍ଭୁକ୍ତ କରିବା କଷ୍ଟ । ପୂର୍ବତନ ସଂସ୍କୃତ କାବ୍ୟର ଭାଷା, ଭାବ, ଛନ୍ଦ, ଗ୍ରହଣ କଲେ ମଧ୍ୟ ପ୍ରକୃତରେ ଜୟଦେବ ସେମାନଙ୍କୁ ନୂତନ ଢଂଗ ଓ ନୂତନ ଭଙ୍ଗୀରେ ପ୍ରୟୋଗ କରିଛନ୍ତି, ଏବଂ ତାଙ୍କର ସମସ୍ତ କାବ୍ୟଟିକୁ ସେ ବାହାରେ ଓ ଭିତରେ ଯେଉଁ ନୂତନ ଓ ବିଚିତ୍ର ରୂପ ଦେଇଛନ୍ତି ତାହା ପୂର୍ବବର୍ତ୍ତୀ ସଂସ୍କୃତ କାବ୍ୟର ସଂପୂର୍ଣ୍ଣ ଅନୁରୂପ ନୁହେଁ, ବରଂ ସମସାମୟିକ ଦେଶୀ ଭାଷା-ସାହିତ୍ୟର ଅଧିକତର ନିକଟବର୍ତ୍ତୀ । ଏଇ କାରଣରୁ 'ଗୀତଗୋବିନ୍ଦ'ର ଗେୟ ପଦଗୁଡ଼ିକ "ସଦୁକ୍ତି କର୍ଣ୍ଣାମୃତ" କିଂବା କାଶ୍ମୀରି କାବ୍ୟସଂକଳନ 'ସୁଭାଷିତାବଳୀ'ରେ ସ୍ଥାନ ପାଇ ନାଇ । ସଂସ୍କୃତ କାବ୍ୟ-ସଂକଳୟିତାମାନେ ଏଗୁଡ଼ିକୁ ସଂଭବତ ଅପାଂକ୍ତେୟ ମନେ କରିଛନ୍ତି ।

ବାହ୍ୟତ ନାଟକର କଂଚତ୍ର ଆବରଣ ଥିଲେ ମଧ୍ୟ ତାଙ୍କର ରଚନା ଗୀତପ୍ରାଣ ଓ ଗୀତସର୍ବସ୍ୱ । ମେଘଦୂତ ପ୍ରଭୃତି ପ୍ରାଚୀନତର ଗୀତ-କବିତା ସହିତ ଏହାର ସାଦୃଶ୍ୟ ଅତି ଅଳ୍ପ । ସର୍ଗ ବିଭାଗ ଅନୁସାରେ ଏହାକୁ ଠିକ୍ କାବ୍ୟ ବୋଲି ମଧ୍ୟ ଧରି ଯାଏ ନାଇ, କାରଣ ସର୍ଗବଂଧ କାବ୍ୟର ବିଶିଷ୍ଟ ଲକ୍ଷଣାବଳୀ ଏଥିରେ ନାଇ । ଅନ୍ୟଦିଗରୁ ପୁଣି ଗୀତଗୋବିନ୍ଦକୁ ଦେଶୀ ଗୀତନାଟ୍ୟ ଶ୍ରେଣୀୟ ରଚନା ବୋଲି କୁହା ଯାଇ ନ ପାରେ । ଭାବପ୍ରବଣତା ଓ ଗୀତବାହୁଲ୍ୟ ଦୃଷ୍ଟିରୁ ଏହାର ଗୀତାଭିନୟ ସଂଗେ ବହୁ ସାଦୃଶ୍ୟ ଥିଲେ ମଧ୍ୟ ପ୍ରାଚୀନ ଯାତ୍ରାଦ ସହିତ ଏହାର ବହୁ ପାର୍ଥକ୍ୟ ମଧ୍ୟ ରହିଛି ।

କେବଳ ଗୀତମାଧୁର୍ଯ୍ୟ ନୁହେ, ଶିଳ୍ପ-ମାଧୁର୍ଯ୍ୟ ମଧ୍ୟ ଗୀତଗୋବିନ୍ଦର ଅନ୍ୟତମ ବୈଶିଷ୍ଟ୍ୟ । ଡକ୍ଟର ସୁଶୀଲକୁମାର ଦେଙ୍କ ମତରେ "କେବଳ ଭାବ ବା

କଥାବସ୍ତୁ ଦିଗରୁ ଦେଖିଲେ ଜୟଦେବଙ୍କ ଗୀତଗୋବିନ୍ଦରେ ବିଶେଷ ନୂତନତ୍ୱ ଅଛି ବୋଲି ମନେ ହୁଏ ନାହିଁ । ପୂର୍ବରାଗଠାରୁ ମିଳନ ଯାଏ ପ୍ରେମର ଯାହା କିଛି ଲୀଳା ସେ ସବୁର ସରସ ଚିତ୍ର ଦୂରଗାମୀ ସଂସ୍କୃତ ସାହିତ୍ୟରେ ପୂର୍ଣ୍ଣରୂପରେ ରହି ଅଛି···ଏହି ସମସ୍ତ ଚିରାଗତ ଭାବ ଓ ସର୍ବସାଧାରଣ ବିଷୟଟିକୁ ସେ ଯେଉଁ ବିଶିଷ୍ଟ ଆକାର ଓ ଭଂଗିମା ଦେଇଛନ୍ତି ତାହାହିଁ ତାଙ୍କ କାବ୍ୟର ରସରୂପ ଏବଂ ପ୍ରଧାନ ବୈଶିଷ୍ଟ୍ୟ .. ।" କେବଳ ଶିଳ୍ପୀ ହିସାବରେ ଜୟଦେବଙ୍କ କୃତିତ୍ୱ ଏତେ ଅସାଧାରଣ ଯେ ଅନେକ ସମୟରେ ତାଙ୍କର ଶିଳ୍ପନୈପୁଣ୍ୟକୁ ତାଙ୍କ କବି ପ୍ରତିଭାର ସର୍ବସ୍ୱ ବୋଲି ମନେ କରିବା କିଛି ଅସ୍ୱାଭାବିକ ନୁହେଁ । ଗୀତଗୋବିନ୍ଦରେ ଅର୍ଥ ଗୌରବ ପୃଥକ ବସ୍ତୁ ନୁହେଁ । ଏହା କାବ୍ୟର ଶବ୍ଦ-ସୌନ୍ଦର୍ଯ୍ୟ ଓ ଛନ୍ଦୋଲାଳିତ୍ୟ ମଧ୍ୟରୁ ସ୍ୱତଃ ଆସିଥାଏ । କେବଳ ବହିରଂଗ କାରୁକାର୍ଯ୍ୟ ନୁହେଁ ଆବେଗର ସାନ୍ଦ୍ରତା ଏହାର ପ୍ରତ୍ୟେକ ପଦରେ ଅଂତଃଶୀଳ ।

ଗୀତଗୋବିନ୍ଦ ଯେ ସଂସ୍କୃତ ଅପେକ୍ଷା ପ୍ରାକୃତ ଭଂଗୀର ଅଧିକତର ନିକଟବର୍ତ୍ତୀ ଏହା ସହଜରେ ମନେହୁଏ । 'ପ୍ରାକୃତ ପିଂଗଳ' ପ୍ରଭୃତିରେ ଉଦାହୃତ ପାଦାକୁଳକ ପ୍ରଭୃତି ଯେଉଁ ସବୁ ମାତ୍ରାଛନ୍ଦ ଏଥିରେ ପ୍ରଯୁକ୍ତ ହୋଇଛି ତାହା ପ୍ରାକୃତ ବା ଅପଭ୍ରଂଶ କବିତାର ଆତ୍ମୀୟ, ସଂସ୍କୃତର ନୁହେଁ । ସଂସ୍କୃତ ଛନ୍ଦରେ ଅଂତ୍ୟାନୁପ୍ରାସ ଅଛି କିନ୍ତୁ ପାଦାନ୍ତ ମେଳ (ବା rhyme) ନାହିଁ । ଗୀତଗୋବିନ୍ଦର ସମସ୍ତ ପଦାବଳୀ ଅପଭ୍ରଂଶ କବିତା ପରି ମେଳଯୁକ୍ତ । ଏଥିର ପଦାବଳୀର ରଚନା-ପ୍ରଣାଳୀରେ ମଧ୍ୟ ଭିନ୍ନତା ଦେଖାଯାଏ । ସଂସ୍କୃତ କବିତା ସାଧାରଣତଃ ପାଦଚତୁଷ୍ଟୟ ସମନ୍ୱିତ ଏବଂ ଗୋଟିଏ Stanza ରେ ପର୍ଯ୍ୟବସିତ ଏବଂ ଏହିପରି ଶ୍ଳୋକର ସମଷ୍ଟିକୁ ନେଇ ହିଁ କାବ୍ୟ । ଏହି ଶ୍ଳୋକଗୁଡ଼ିକ କେତେବେଳେ ସଂବଂଧ, କେତେବେଳେ ଅସଂବଂଧ, କିନ୍ତୁ ଏକ ଏକ ଶ୍ଳୋକ ପ୍ରାୟ ସଂପୂର୍ଣ୍ଣ ଭାବର ଜ୍ଞାପକ । ପଦାବଳୀର ପ୍ରକୃତି ସଂପୂର୍ଣ୍ଣ ବିଭିନ୍ନ । ଏମାନଙ୍କୁ ବ୍ୟଷ୍ଟି ଭାବରେ ନେଲେ ସଂପୂର୍ଣ୍ଣ ଅର୍ଥ ଗ୍ରହଣ କରାଯାଏ ନାହିଁ । ଗାନ ପରି ପୃଥକ ଭାବରେ ବିଭିନ୍ନ ଭାବର ପ୍ରକାଶକ ହେଲେ ମଧ୍ୟ ଏଗୁଡ଼ିକୁ ସମଷ୍ଟି ଭାବରେ ହିଁ ଧରିବାକୁ ହେବ ଏବଂ ଅଂତର୍ଗ୍ରଥିତ ଧ୍ରୁବପଦ (refrain) ଏହାର ଭାବ ପରମ୍ପରାର ଯୋଗସୂତ୍ର । ଗୀତଗୋବିନ୍ଦ ପଦାବଳୀର ଏହି ଧାରାଟି ଦେଶୀ ଗାନର ପ୍ରଥାକୁ ହିଁ ଅବଲଂବନ କରିଅଛି । ଏହା ଦେଶୀ ଗାନର ଏକ ବିଶିଷ୍ଟ ପଦ୍ଧତି । (ହ: ମୁ)

ଗୀତଗୋବିନ୍ଦର ଅପଭ୍ରଂଶ ସହିତ ନିବିଡ଼ ସାଦୃଶ୍ୟ ଦୃଷ୍ଟିରୁ Piscuel ପ୍ରମୁଖ ପଣ୍ଡିତଗଣ ମନେ କରିଥାନ୍ତି ଯେ ଗୀତଗୋବିନ୍ଦ ସଂଭବତଃ ପ୍ରଥମେ

## ଜୟଦେବ ଓ ଗୀତଗୋବିନ୍ଦ

ଜନସାଧାରଣଙ୍କ ପାଇଁ କୌଣସି ପ୍ରାକୃତ ବା ଅପଭ୍ରଂଶ ଭାଷାରେ ଜୟଦେବଙ୍କ ଦ୍ୱାରା ରଚିତ ହୋଇଥିଲା ଏବଂ ପରେ ସଂସ୍କୃତାଭିମାନୀ ପାଠକମାନଙ୍କ ନିମନ୍ତେ କୌଣସି ପଣ୍ଡିତ ବା ପଣ୍ଡିତମଣ୍ଡଳୀ ଦ୍ୱାରା ସଂସ୍କୃତରେ ଭାଷାନ୍ତରିତ ହୋଇଛି । ମାତ୍ର ଗୀତଗୋବିନ୍ଦର ସ୍ୱତଃସ୍ଫୂର୍ତ୍ତ ଛନ୍ଦମାଧୁର୍ଯ୍ୟ ଓ ଅନୁପମ ଶବ୍ଦାଲଙ୍କାରତ୍ୱ ଓ ସ୍ୱଚ୍ଛନ୍ଦ ଭାବପ୍ରକାଶ ଯେ ସମ୍ପୂର୍ଣ୍ଣ ମୌଳିକ ରଚନାରେ ହିଁ ସମ୍ଭବ ଏବଂ ଏହା ଯେ ବହିରଙ୍ଗ ପରି କାବ୍ୟରେ ଆରୋପିତ ହୋଇ ନ ପାରେ ଏକଥା ପ୍ରତ୍ୟେକ କାବ୍ୟରସିକ ମାତ୍ରେ ହିଁ ସମସ୍ୱରରେ ସ୍ୱୀକାର କରିବେ ।

କେବଳ ଏକମାତ୍ର ଗୀତଗୋବିନ୍ଦ ନୁହେଁ, ଏହି ଯୁଗ-ପରିବର୍ତ୍ତନ କାଳର ଅନ୍ୟାନ୍ୟ ବହୁ ସଂସ୍କୃତ କାବ୍ୟ ନାଟକରେ ମଧ୍ୟ ଦେଶୀ ଭାଷା ଓ ଦେଶଜ ରୀତିର ପ୍ରଭାବ ପରିଲକ୍ଷିତ ହୁଏ । ଗୁଜରାଟର କବି ରାମକୃଷ୍ଣ ରଚିତ ଗୋପାଳ କେଳିଚନ୍ଦ୍ରିକା ନାଟକରେ ମଧ୍ୟ ଗୀତଗୋବିନ୍ଦ ଅନୁରୂପ ପଦାବଳୀ ଦୃଷ୍ଟ ହୁଏ । ଏହି ରଚନାଟି ନାମରେ ନାଟକ ହେଲେ ମଧ୍ୟ ସଂସ୍କୃତ ନାଟକର ଲକ୍ଷଣାକ୍ରାନ୍ତ ନୁହେଁ, ସଂଗୀତର ଆଧିକ୍ୟ ଓ ଭାବପ୍ରବଣତା ପ୍ରତି ପକ୍ଷପାତରେ ପୂର୍ଣ୍ଣ । ଗୀତଗୋବିନ୍ଦର କିଂଚିତ୍ ପୂର୍ବବର୍ତ୍ତୀ ସଂସ୍କୃତ 'ମହାନାଟକ'ରେ ମଧ୍ୟ ଦେଶୀ ରୀତିର ପ୍ରଭାବ ଯଥେଷ୍ଟ ଦେଖାଯାଏ । ଏଥିରେ ପ୍ରାକୃତ ଯାତ୍ରାର ସହଜଭଙ୍ଗୀ ଅଳ୍ପ ବହୁତ ପ୍ରତିବିମ୍ବିତ । ପରବର୍ତ୍ତୀ ସମୟର ଆନନ୍ଦଲତିକା, ନନ୍ଦଘୋଷବିଜୟ, ଚିତ୍ରଯଜ୍ଞ ପ୍ରଭୃତି ନାଟକ ନାମଧେୟ ରଚନା ଗୁଡ଼ିକ ଏହି ଧାରା ହିଁ ଅନୁସରଣ କରିଛନ୍ତି । ବିଦ୍ୟାପତିଙ୍କ ପୂର୍ବବର୍ତ୍ତୀ ମୈଥିଳ କବି ଉମାପତି ଶର୍ମାଙ୍କର ସଂସ୍କୃତ ନାଟକ 'ପାରିଜାତ ହରଣ'ରେ ମୈଥିଳୀ ଭାଷାରେ ରଚିତ ପଦାବଳୀର ସମାବେଶ ରହିଛି ଏବଂ ଏହା ଲକ୍ଷ୍ୟ କରିବାର ବିଷୟ ଯେ ଏହି ମୈଥିଳ ଗାନ ଗୁଡିକ ସଂସ୍କୃତରେ ଅନୂଦିତ ହୋଇ ନାହିଁ । ଏ ସଂପର୍କରେ ଆହୁରି ମଧ୍ୟ ଲକ୍ଷଣୀୟ ଯେ ଗୀତଗୋବିନ୍ଦର କେବଳ ବର୍ଣ୍ଣନାମୂଳକ ସଂସ୍କୃତ ଶ୍ଳୋକଗୁଡ଼ିକ ହିଁ ସମସାମୟିକ ଶ୍ରୀଧର ଦାସ-ସଂକଳିତ ସଦୁକ୍ତିକର୍ଣ୍ଣାମୃତ ଓ କାଶ୍ମୀରିକ ବଲ୍ଲଭଦେବ-ସଂଗୃହୀତ ସୁଭାଷିତାବଳୀରେ ଉଦ୍ଧୃତ ହୋଇଛି, ମାତ୍ର ଗୀତଗୋବିନ୍ଦର ଗେୟ ପଦାବଳୀ ମଧ୍ୟରୁ ଗୋଟିଏ ହେଲେ କେଉଁଥିରେ ଉଦ୍ଧୃତ ହୋଇ ନାହିଁ । ସମ୍ଭବତ ଏଗୁଡ଼ିକ ଦେଶୀ ଭାବ, ଭାଷା ଓ ଭଙ୍ଗୀର ଅନୁକରଣରେ ରଚିତ ଧ୍ରୁବପଦ ସମନ୍ୱିତ ଗାନ ହୋଇଥିବାରୁ ସଂସ୍କୃତ ଶ୍ଳୋକର ସୁଭାଷିତ ସଂଗ୍ରହରେ ସ୍ଥାନ ପାଇନାହିଁ । (ଏକ୍ସ)

# ଗୀତଗୋବିନ୍ଦ ଉପରେ ତାନ୍ତ୍ରିକ ବାମାଚାରର ଓ ସୁଫୀବାଦର ପ୍ରଭାବ

ଆଧୁନିକ ଯୁଗରେ ଲୌକିକ ଇନ୍ଦ୍ରିୟ କାମନା ସଙ୍ଗେ ଅପ୍ରାକୃତ ପ୍ରେମଲୀଳାର ସମନ୍ୱୟ ସ୍ଥାପନ କରି ଗୀତଗୋବିନ୍ଦ ଜନସାଧାରଣଙ୍କ ହୃଦୟ ସ୍ପର୍ଶ କରିବାକୁ ସମର୍ଥ ହୋଇଥିଲା । ରାଧାକୃଷ୍ଣଙ୍କ ଚିରନ୍ତନ ପ୍ରେମଲୀଳାକୁ କବି କେବଳ ଧ୍ୟାନ-ଧାରଣାର ନିତ୍ୟ ବୃନ୍ଦାବନରେ ଆବଦ୍ଧ ରଖି ନାହାଁନ୍ତି, ସେ ତାହାକୁ ପାଠକ ମଣ୍ଡଳୀଙ୍କ ନିକଟରେ ବାସ୍ତବ ଜଗତର ବିଭିନ୍ନ ରୂପ ଓ ରସରେ ମୂର୍ତ୍ତିମନ୍ତ କରି ତୋଳିଛନ୍ତି, କବିମାନସର ସୁଖ ଦୁଃଖ ଆକାଂକ୍ଷା ଓ ଅନୁଭୂତିର ରସରେ ଅଭିଷିକ୍ତ କରି ଅପୂର୍ବ ବାସ୍ତବ ସୁଷମାରେ ମଣ୍ଡିତ କରିଛନ୍ତି । ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ ଭାଷାରେ ପ୍ରାକୃତ ପ୍ରେମଲୀଳାର ପ୍ରତିଚ୍ଛବି ରୂପେ ଅପ୍ରାକୃତ ବୃନ୍ଦାବନ ଲୀଳା ମାନବୀୟ ଭାବ ଓ ଭାଷାରେ ଉଜ୍ଜ୍ୱଳ ଗୀତିମୟ ଶବ୍ଦଚିତ୍ର ପରମ୍ପରାରେ ସର୍ବସାଧାରଣଙ୍କର ଅଧିଗମ୍ୟ ହୋଇଅଛି । ଆଦିରସ ଭଳି ମାନବ ହୃଦୟର ଗୋଟିଏ ନିଗୂଢ଼ ମଧୁର ଶକ୍ତିଶାଳୀ ବୃତ୍ତିକୁ ଧର୍ମ ସାଧନାର ଅଙ୍ଗୀଭୂତ କରି ଅପରୂପ, ଦେବ ଲୀଳାକୁ ସୁପରିଚିତ ମାନବଲୀଳାରେ ନିର୍ଦ୍ଦିଷ୍ଟ ରୂପ ପ୍ରଦାନ କରାଯାଇଛି । ('କବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ')

ବୌଦ୍ଧ ବଜ୍ରଯାନ ଓ ସହଜଯାନର ପ୍ରଭାବ ଏବଂ ଶେଷରେ ବ୍ରାହ୍ମଣ୍ୟ ଓ ଶାକ୍ତ ଧର୍ମ ଉପରେ ତନ୍ତ୍ରର ସର୍ବଗ୍ରାସୀ ବିସ୍ତାର ଫଳରେ ଜୟଦେବ ନିଜ କାବ୍ୟରେ ପରକୀୟା ତତ୍ତ୍ୱ ଓ କାନ୍ତାଭାବ ମାଧ୍ୟମରେ ଲୌକିକ ମୈଥୁନ ଯୋଗ ସହିତ ଅପାର୍ଥିବ ଭଗବତ ପ୍ରେମର ଏକ ସାଲିସ ବା ସମନ୍ୱୟ ଘଟାଇବାକୁ ଚେଷ୍ଟା କରିଛନ୍ତି ଏବଂ ଆଶାତୀତ ଭାବରେ ସଫଳକାମ ମଧ୍ୟ ହୋଇଛନ୍ତି ।

ବଙ୍ଗଳାର ଅଭିଜାତବର୍ଗ ହୁଏତ ମହାଯାନୀ ନୋହିଲେ ବ୍ରାହ୍ମଣ୍ୟବାଦୀ ତାନ୍ତ୍ରିକ ଥିଲେ । ଆଉ ଗଣସମୂହ ହୀନଯାନ, ସହଜଯାନ, ନାଥଧର୍ମ ଓ ଅନ୍ୟାନ ପନ୍ଥାବଲମ୍ବୀ ଥିଲେ । ପରେ ସେନ୍ ରାଜାମାନଙ୍କ ଅମଳରେ ବ୍ରାହ୍ମଣ୍ୟ ଶାସନ ପ୍ରତିଷ୍ଠିତ ହେଲେ ବଙ୍ଗାଳୀ ବ୍ରାହ୍ମଣମାନଙ୍କୁ ପୌରାଣିକ ବ୍ରାହ୍ମଣ୍ୟ ଧର୍ମରେ ବିଶ୍ୱାସୀ କରିବା ନିମନ୍ତେ ଲକ୍ଷ୍ମଣସେନ ଧର୍ମାଧ୍ୟକ୍ଷ ହଲାୟୁଧଙ୍କ ଦ୍ୱାରା 'ବ୍ରାହ୍ମଣ ସର୍ବସ୍ୱ' ଓ ପଶୁପତିଙ୍କ ଦ୍ୱାରା 'ମତ୍ସ୍ୟସୂକ୍ତ' ପ୍ରଣୟନ କରାଇଥିଲେ, ଅବଶ୍ୟ ସଂସ୍କୃତରେ । ଐତିହାସିକଙ୍କ ମତରେ ବଙ୍ଗଳାର ପାଳରାଜାମାନେ ମହାଯାନୀ ବୌଦ୍ଧ ଥିଲେ । ସେମାନେ ବୁଦ୍ଧ ଭଟ୍ଟାରକଙ୍କ ନାମରେ ବ୍ରାହ୍ମଣମାନଙ୍କୁ ଦାନ କରୁଥିଲେ (ମଦନପାଳ ଦେବଙ୍କ

ମନହଲ ଲିପି) । ଲକ୍ଷ୍ମଣସେନଙ୍କ ସଭାକବି ଜୟଦେବ ବ୍ରାହ୍ମଣ୍ୟ ଧର୍ମର ପୁନରୁଜ୍ଜୀବନ ନିମନ୍ତେ ଏହାକୁ ବଜ୍ରଯାନ-ସହଜଯାନ ଓ ବ୍ରାହ୍ମଣ୍ୟ ତନ୍ତ୍ରର ଦେହାତ୍ମର ସହିତ ସମନ୍ୱିତ କରି ନୂତନ କାନ୍ତାଭାବ ଓ ପରକୀୟା ତତ୍ତ୍ୱର ପ୍ରତିଷ୍ଠା କରିଥିବା ସମ୍ପୂର୍ଣ ସ୍ୱାଭାବିକ ।

କେତେକ ଗବେଷକଙ୍କ ମତରେ ନବ୍ୟ-ବୈଷ୍ଣବଧର୍ମ ଓ ବୈଷ୍ଣବ ସାହିତ୍ୟ ଉପରେ ମୁସଲମାନୀ ସୁଫୀ ଧର୍ମର ପ୍ରଭାବ ପରିଲକ୍ଷିତ ହୁଏ । ସୁଫୀତତ୍ତ୍ୱର ଆଶକ୍ ଓ ମାସୁଫ୍‌ଙ୍କର ପ୍ରେମକାହାଣୀର ହିନ୍ଦୁ ସଂସ୍କରଣ ରୂପେ ରାଧା ଓ କୃଷ୍ଣଙ୍କର ପ୍ରେମ କାହାଣୀକୁ ପ୍ରମୂର୍ତ୍ତ କରାଯାଇଛି । ଏଇ ନବ୍ୟ-ବୈଷ୍ଣବମାନେ ରାଜନୀତିକାର ଦ୍ୱାରକାର ଶ୍ରୀକୃଷ୍ଣଙ୍କୁ ଜାଣନ୍ତି ନାଇ । ଏମାନେ "ଶିକଣ କାଲା, ଗଲାୟ ମାଲା, ବାଜେ ନୂପୁର ପାୟେ" (ମହାଜନ ପଦାବଲୀ) ଗୋକୁଳର କୃଷ୍ଣଙ୍କ କଥାହିଁ ଜାଣନ୍ତି । ଏହା ବୃନ୍ଦାବନର୍ କିଶୋର, ଯଶୋଦାନନ୍ଦନ ଶ୍ରୀ କୃଷ୍ଣ ଓ ବୃଷଭାନୁ ନନ୍ଦିନୀ ଶ୍ରୀରାଧାଙ୍କ ପ୍ରେମ ଓ ରତିକ୍ରୀଡ଼ା ବର୍ଣନାରେ ପୂର୍ଣ୍ଣ । ଏଇ ସାହିତ୍ୟରେ ଉଭୟଙ୍କର ପ୍ରେମ, ବିଚ୍ଛେଦ ଓ ପୁନର୍ମିଳନର ସଂଗୀତ ଅଛି । ଶ୍ରୀମଦଭାଗବତରେ ରାଧା ନାହାନ୍ତି, ଜୟଦେବ କାବ୍ୟରେ ରାଧା ଅଛନ୍ତି, କିନ୍ତୁ ଅନ୍ୟ ଭାବରେ ଅଛନ୍ତି । ମୁସଲମାନ ଯୁଗରେ ସେ ରାଧା କ୍ରନ୍ଦନରତା ଓ ସମ୍ପୂର୍ଣ୍ଣ ବିରହିଣୀ ପାଲଟି ଯାଇଛନ୍ତି । (ଚଣ୍ଡୀଦାସ ଓ ଅନ୍ୟାନ୍ୟ ମହାଜନ ପଦାବଳୀରେ)

## ଦେଶୀ ସାହିତ୍ୟର ବିକାଶ-କ୍ରମ

ଐତିହାସିକମାନେ କହନ୍ତି, ମୁସଲମାନ ରାଜାମାନେ ହିଁ ବଂଗଳା ସାହିତ୍ୟର ସ୍ରଷ୍ଟା । ବ୍ରାହ୍ମଣମାନେ ଗୌଡ଼-ପ୍ରାକୃତ ଭାଷାକୁ ଘୃଣା ଚକ୍ଷୁରେ ଦେଖୁଥିଲେ । ମୁସଲମାନ ରାଜାମାନଙ୍କ ପ୍ରଚେଷ୍ଟାରେହିଁ ରାମାୟଣ ପ୍ରଭୃତି ବଂଗଳା ଭାଷାରେ ଲିଖିତ ହୁଏ । କବି କୃତ୍ତିବାସ କହିଛନ୍ତି, ଗୌଡ଼ର ଜଣେ ହିନ୍ଦୁ ରାଜାଙ୍କ ଅନୁଜ୍ଞାରେ ସେ ରାମାୟଣ ବଂଗଭାଷାରେ ଲେଖିବାକୁ ଆରମ୍ଭ କରନ୍ତି । ପୁଣି ସମ୍ରାଟ ହୁସେନ ସାହାଙ୍କ ସଭାସଦ୍ ଗୁନରାଜ ଖାଁ "ଶ୍ରୀକୃଷ୍ଣ ବିଜୟ" ନାମକ ବଂଗଳା ଗଦ୍ୟରେ ଏକ ପୁସ୍ତକ ପ୍ରଣୟନ କରନ୍ତି । ଏହାଙ୍କ ଦେଖାଦେଖି "ରସୁଲ ବିଜୟ" ନାମକ ଏକ ପୁସ୍ତକ ଶେଖ ଚାନ୍ଦ୍ ନାମକ ଜଣେ ମୁସଲମାନ କବି ପ୍ରଣୟନ କରନ୍ତି । ଏହି ସମୟରେ ମହାଭାରତ ମଧ୍ୟ ବିଭିନ୍ନ ଲୋକମାନଙ୍କ ଦ୍ୱାରା ବଂଗଳାରେ ଲିଖିତ ହୁଏ । (ଡଃ ଭୁପେନ୍ଦ୍ରନାଥ ଦତ୍ତ)

ପ୍ରାୟ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତକର ଶେଷପର୍ବ ଆଡ଼କୁ ପ୍ରାଂଜଳ ରୂପ ଗ୍ରହଣ କରି ବିଭିନ୍ନ ଭାରତୀୟ ଭାଷା-ସାହିତ୍ୟମାନଙ୍କର ଆବିର୍ଭାବ ଘଟି ସା ଥିଲା। ମାତ୍ର ଏଇ ଆବିର୍ଭାବ ଏ । ଦିନକେ ସଂଭବ ହୋଇ ନଥିଲା । ଏହା ପ୍ରାୟ ତ୍ରୟୋଦଶ ଶତାବ୍ଦୀର ଶେଷଭାଗରୁ କ୍ରମେ ଦାନା ବାନ୍ଧି ଚତୁର୍ଦ୍ଦଶ ଶତକର ମଧ୍ୟ ଭାଗରେ ନିର୍ଦ୍ଦିଷ୍ଟ ଓ ସୁପରିସ୍ଫୁଟ ରୂପ ଗ୍ରହଣ କରିଥିଲା । ତାମିଲ ଭାଷା-ସାହିତ୍ୟ ବୋଧହୁଏ ତ୍ରୟୋଦଶ ଶତକ ଆଡ଼କୁ ଏକ ନିର୍ଦ୍ଦିଷ୍ଟ ରୂପରେଖ ଗ୍ରହଣ କରି ସାରିଥିଲା । କାରଣ କଂବନ ରାମାୟଣ ଭାରତର ସବୁ ରାମାୟଣ ମଧ୍ୟରେ ପ୍ରାଚୀନତମ ବୋଲି ଜଣାଯାଏ । ଓଡ଼ିଶାର 'ଶୂଦ୍ରକବି' ସାରଳା ଦାସ ଖ୍ରୀଷ୍ଟୀୟ ୧୪୩୫-୪୫ ବେଳକୁ ନିଜ ମହାଭାରତ ରଚନା ସାଂଗ କରିଥିଲେ ବୋଲି ଅନୁମିତ ହୁଏ । ଓଡ଼ିଆ ଲିପିର ମଧ୍ୟ କୌଣସି ସ୍ପଷ୍ଟ ପରିଚୟ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି କପିଳେନ୍ଦ୍ର ଦେବଙ୍କ ପୂର୍ବରୁ ଦେଖାଯାଏ ନାଇ । ତାଙ୍କର ସିମାଚଳମ୍ ନୃସିଂହନାଥ ମନ୍ଦିର ଲିପିଟି ଏ ଦିଗରେ ପ୍ରଥମ ନିଦର୍ଶନ ବୋଲି ଲିପିତତ୍ତ୍ୱବିତ୍ ଡ଼ଃ କୁଞ୍ଜବିହାରୀ ତ୍ରିପାଠୀ ପ୍ରଭୃତିଙ୍କର ମତ । ଉତ୍ତରଭାରତର ହିଂଅ କବି ତୁଳସୀ ଦାସ ଖ୍ରୀ: ୧୫୭୪ ସାଲରେ ହିନ୍ଦୀ ଅବଧି ଉପଭାଷାରେ ତାଙ୍କର 'ରାମଚରିତ ମାନସ' ପ୍ରଣୟନ ଆରଂଭ କରିଥିଲେ ବୋଲି ଗ୍ରୀୟରସନ୍ଙ୍କ କାଳ-ନିର୍ଣ୍ଣୟରୁ ଜଣାଯାଏ ।

ଏଇପରି ଭାବରେ ଭାରତୀୟ ଭାଷା-ସାହିତ୍ୟମାନଙ୍କର କ୍ରମବିକାଶ ସଂବଂଧରେ ଏକ ମୋଟାମୋଟି ଧାରଣା ମିଳେ । ଦ୍ୱାଦଶ ଶତକର ଶେଷ ପାଦରେ ଓଡ଼ିଆ ଭାଷା-ସାହିତ୍ୟର ଅପରିଣତ ଅବସ୍ଥା ଦୃଷ୍ଟିରୁ ଜୟଦେବ ବା ଅନ୍ୟ କୌଣସି କବିଙ୍କ ପ୍ରଣୀତ ଓଡ଼ିଆ ଗୀତ ଆଶା କରିବା ସଂପୂର୍ଣ୍ଣ ବିଡ଼ଂବନା ହେବ ।

## ବଂଗଳାରେ ସେନ୍-ପର୍ବରେ ବୀରଭୂମି

ବଂଗଳାରେ ସେନାୟନ ପର୍ବ ସାମଂତସେନ ପୁତ୍ର ହେମଂତସେନଙ୍କଠାରୁ ଆରଂଭ । ବଂଗଳାର ସେନ୍-ରାଜବଂଶ 'ଦାକ୍ଷିଣାତ୍ୟ କ୍ଷୌଣୀନ୍ଦ୍ର', 'ବ୍ରହ୍ମ-କ୍ଷତ୍ରିୟ', ଏବଂ 'କର୍ଣାଟ କ୍ଷତ୍ରିୟ' ବୋଲି ଆତ୍ମପରିଚୟ ଦେଇଛନ୍ତି । ଡଃ ନୀହାରରଂଜନ ରାୟ ତାଂକ 'ବାଂଗାଲୀର ଇତିହାସ'ରେ ଲେଖିଛନ୍ତି ପାଲରାଜାମାନଙ୍କ ସୈନ୍ୟ-

* 'ଦିଗନ୍ତ', ୧୯୬୬, ୪।୫ ସଂଖ୍ୟାରେ ଏଇ ଲିପିର ଫଟୋଚିତ୍ର ଓ ପାଠ ଦ୍ରଷ୍ଟବ୍ୟ । ଲେଖକ ଡଃ କୁଞ୍ଜବିହାରୀ ତ୍ରିପାଠୀ ।

ଦଳରେ ଅନେକ ଭିନ୍ନପ୍ରଦେଶୀ ଯଥା —ଖସ-ମାଳବ-ହୂଣ୍-କୁଳିକ-କର୍ଣ୍ଣାଟ-ଲାଟ— ଲୋକ ନିଯୁକ୍ତ ହେଉଥିଲେ, କର୍ଣ୍ଣାଟମାନେ ବି ବାଦ ପଡ଼ି ନଥିଲେ । କୌଣସି ସେନ୍‌ବଂଶୀୟ କର୍ଣ୍ଣାଟୀ ରାଜକର୍ମଚାରୀ ହୁଏତ କ୍ରମେ କ୍ଷମତାଶାଳୀ ହୋଇ ଏବଂ ପରେ ପାଲବଂଶର ଦୁର୍ବଳତାର ସୁଯୋଗ ନେଇ ନିଜ ଆଧିପତ୍ୟ ବିସ୍ତାର କରିଥିବେ । ଅଥବା ଦକ୍ଷିଣାଗତ କୌଣସି ସମରାଭିଯାନ ସଂଗେ ମଧ୍ୟ ଏକ କର୍ଣ୍ଣାଟୀ ସେନ୍-ପରିବାର ବଂଗଳା ଦେଶକୁ ଆସିଥିବା ବିଚିତ୍ର ନୁହେ । କର୍ଣ୍ଣାଟୀ ଚାଲୁକ୍ୟରାଜ ଷଷ୍ଠ ବିକ୍ରମାଦିତ୍ୟ ଥରେ ( ୧୬ ) ଉତ୍ତର-ଭାରତକୁ ସମରାଭିଯାନ କରିଥିଲେ ଏବଂ ଅଂଗ, ବଂଗ, କଳିଂଗ, ଗୌଡ଼, ମଗଧ, ନେପାଳ ପ୍ରଭୃତି ଦେଶ ଜୟ କରିଥିଲେ । ତାଂକର ଜଣେ ସାମନ୍ତ ବି ଆହୁରି ଥରେ କଳିଂଗ, ବଂଗ, ଗୁର୍ଜର, ମାଳବ ପ୍ରଭୃତି ଜୟ କରିଥିଲେ ( ୧୦୬୬-୬୩ ) । କର୍ଣ୍ଣାଟୀ ଚାଲୁକ୍ୟବଂଶର ରାଜା ତୃତୀୟ ସୋମେଶ୍ୱର ( ୧୧୨୭-୬୮ ) ଓ ତାଂକ ପୁତ୍ର ସୋମ ବଂଗ, କଳିଂଗ, ମଗଧ, ନେପାଳ, ଅନ୍ଧ୍ର, ଗୌଡ଼ ଓ ଦ୍ରାବିଡ଼ ଦେଶରେ ବିଜୟୀ ସମରାଭିଯାନ ଦାବୀ କରିଛନ୍ତି । ବସ୍ତୁତ ଏଇ ବଂଶର ରାଜା ପ୍ରଥମ ସୋମେଶ୍ୱର କର୍ତ୍ତୃକ ପରମାରରାଜ ପ୍ରଥମ ଭୋଜ ଓ କଲଚୁରିରାଜ କର୍ଣ୍ଣଂକ ପରାଜୟ ପରଠାରୁ ଉତ୍ତର-ଭାରତରେ କର୍ଣ୍ଣାଟୀ ପ୍ରତାପ ପ୍ରବାହର ଦ୍ୱାର ଉନ୍ମୁକ୍ତ ହୁଏ ।

ଏଥି ପୂର୍ବରୁ 'ଓଡ଼ିଶା ଇତିହାସ'ରେ ଚୋଳବଂଶୀୟ ରାଜା ରାଜେନ୍ଦ୍ର ଚୋଳ ( ୧ ୧୪-୪୪ ) ଓଡ଼ିଶା ଆକ୍ରମଣ କରି ବିଜୟ ହାସଲ କରିଥିବା କଥା ତାଂକର ତ୍ରୟୋଦଶ ରାଜ୍ୟାଂକରେ ଉତ୍କୀର୍ଣ୍ଣ ଏକ ଶିଳାଲିପିରୁ ସଂବାଦ ପାଉଥିବ୍ । ସେଇଥିରେ ସେ ଦୁର୍ଗମ 'ଓଡ୍ଡବିଷୟ' ବା ଓଡ଼ିଶା, 'କୋଶଳନାଡୁ' ବା ମହାକୋଶଳ ଏବଂ 'ଦଂଡଭୁକ୍ତି' (ମେଦିନୀପୁର) ପ୍ରଭୃତି ରାଜ୍ୟ ଅଧିକାର କରିଥିବା କଥା ବର୍ଣ୍ଣିତ ଅଛି । ଡଃ ମହତାବ୍ ଲେଖିଛନ୍ତି : ରାଜେନ୍ଦ୍ର ଚୋଳଂକ ଉତ୍ତର ଭାରତ ବିଜୟର ଅବଶେଷ ଏତିକି ମାତ୍ର ରହିଲା ଯେ ପଶ୍ଚିମବଂଗ, ମହାକୋଶଳ ଓ ଓଡ଼ିଶାରେ କେତେକ କର୍ଣ୍ଣାଟବାସୀ ସାମନ୍ତରାଜା ବହୁକାଳ ଯାବତ କେତେକ ଅଂଚଳରେ ରାଜତ୍ୱ କଲେ ।

## ସେନ୍-ପର୍ବରେ ବୀରଭୂମିର ସ୍ଥିତି

ସାମନ୍ତସେନଂକ ପୁତ୍ର ହେମନ୍ତସେନ ଦ୍ୱିତୀୟ ମହୀପାଳଂକ ରାଜତ୍ୱ-କାଳରେ ସାମନ୍ତ-ଚକ୍ରର ବିଦ୍ରୋହ ଫଳରେ ଏବଂ ଭ୍ରାତୃବିବାଦର ସୁଯୋଗ ନେଇ

ରାଢ଼ଦେଶ ଅଂଚଳରେ କିଛି ସ୍ଥାନୀୟ ସାମନ୍ତାଧିପତ୍ୟ ପ୍ରତିଷ୍ଠା କରିଥିବାର ଜଣାଯାଏ । ହେମନ୍ତସେନଙ୍କ ପୁତ୍ର ବିଜୟସେନ୍ (ଆ ୧୦୯୫ —୧୧୫୮) ଶୂର-ପରିବାରର କନ୍ୟା ବିଳାସଦେବୀଙ୍କୁ ବିବାହ କରିଥିଲେ । ଶୂର ପରିବାରରେ ବିବାହ ଫଳରେ ପ୍ରଭାବ ପ୍ରତିପତ୍ତି ବିସ୍ତାର କରିବାକୁ ବିଜୟସେନ୍ ନିଶ୍ଚୟ ପ୍ରଚୁର ସହାୟତା ଓ ସୁବିଧା ପାଇଥିବେ । ବୀରଭୂମି ଏଇ 'ରାଢ଼ ଦେଶ'ର ହିଁ ଅଂତର୍ଗତ । କିଂତୁ ସେ କିପରି ପାଲ୍ ବଂଶର ପ୍ରଭୁତ୍ୱରୁ ଉତ୍ତର-ବଂଗକୁ କାଢ଼ି ନେଇଥିଲେ ସେ ବିଷୟରେ କିଛି ନିଶ୍ଚିତ ଜଣାଯାଏ ନାଇ । (ବାଂ.ଇ)

ଏକାଦଶ ଶତାବ୍ଦୀର ରାଜେନ୍ଦ୍ରଚୋଲଙ୍କର ଉପରୋକ୍ତ ତିରୁମଲୟ ଲିପିରେ ଉତ୍ତର ରାଢ଼ର ଉଲ୍ଲେଖ ଦେଖାଯାଏ । ଏଥି ପୂର୍ବରୁ ନବମ ଶତକର ବଂଗରାଜ ଦେବେନ୍ଦ୍ର ବର୍ମଣଙ୍କର ଏକ ଲିପରେ ସର୍ବପ୍ରଥମେ ଉତ୍ତର-ରାଢ଼ର ଉଲ୍ଲେଖ ଦେଖି-ଥିଲି । ତିରୁମଲୟ ଲିପିର କିୟଦଂଶ ତଳେ ଦିଆଗଲା । ଏଥିରେ ଉତ୍ତୀର ଲାଟମ (ଉତ୍ତର-ରାଢ଼) ଏବଂ ତକ୍କଣ-ଲାଟମର (ଦକ୍ଷିଣ ରାଢ଼) ନାମ ଏକ ସଂଗରେ ମିଳୁଚି ।ଏହା ମେଦିନୀପୁରର ଦକ୍ଷିଣ ପଶ୍ଚିମରେ ।

"Tandabutti (Dandabutti) in whose gardens bees abounded...... (Land which he acquired) after having destroyed Dharmpala (in) hot battle ; Takkanaladam whose fame reached (all) directions (and which he occupied) after having forcibly occupied Ranasura; Vangala desa where the rain water never stopped (and from which) Govindachandra fled, having descended (from his) male elephant; elephants of rare strength, woman and treasure (which he seized) after having (been) pleased to frighten the strong Mahipala on the field of hot battle with the (noise of the) conches (got) from the deep sea. Uttiraladam (on the shore of the) expansive ocean (producing) pearls [ଅନୁବାଦାଂତର] Uttiraladam as rich in pearls as the ocean କିଂବା Utti-raladam close to the sea yielding pearls etc. ] and the Ganga whose waters bearing fragrant flowers dashed against the bathing places." *

ରାଜା ଭୋଜବର୍ମଣଙ୍କ ବେଲାବ ଲିପିରେ ଉତ୍ତର-ରାଢ଼ ଏବଂ ତଦନ୍ତର୍ଗତ ସିଦ୍ଧଲ ଗ୍ରାମର ଉଲ୍ଲେଖ ଅଛି । ସିଦ୍ଧଲ ଗ୍ରାମ ବର୍ତ୍ତମାନ ବୀରଭୂମର ଅନ୍ତର୍ଗତ ସିଦ୍ଧଲ ଗ୍ରାମ । ଏହି ସିଦ୍ଧଲ ଗ୍ରାମ ହିଁ ସେନ-ସମ୍ରାଟ ଜଣେ ମନ୍ତ୍ରୀ ପଣ୍ଡିତ ଭବଦେବ ଭଟ୍ଟଙ୍କ ଜନ୍ମଭୂମି ବୋଲି 'ବାଂଗାଲାର ଇତିହାସ'ରେ କୁହାଯାଇଛି । ସିଦ୍ଧଲ ଗ୍ରାମ କେନ୍ଦୁବିଲ୍ୱ ଗ୍ରାମର ପଶ୍ଚିମ ଦିଗକୁ ଅନତି ଦୂରରେ ଅବସ୍ଥିତ । ଭୁବନେଶ୍ୱର ଲିପିରେ ଭବଦେବ ଭଟ୍ଟ ତାଙ୍କ ଜନ୍ମଭୂମି ସିଦ୍ଧଲ ଗ୍ରାମ କଥା କହିଛନ୍ତି ଏବଂ ରାଢ଼ର ଏହି 'ଅନ୍ତଳ ଯେ ଅଜଳା ଓ ଜାଂଗଲମୟ' ସେ-କଥାର ଇଂଗିତ ଦେଇଛନ୍ତି । (ବାଂ.ଇ)

ବଲ୍ଲାଳସେନଙ୍କ ନୈହାଟୀ ପଟ୍ଟୋଲୀରେ ଉତ୍ତର ରାଢ ଏବଂ ତଦନ୍ତର୍ଗତ ବାଲ୍ଲହିଟ୍ଠା, ଜଲସୋଥି, ଖାଣ୍ଡୟିଲ୍ଲା, ଅମ୍ବୟିଲ୍ଲା ଏବଂ ମୋଲାଡଣ୍ଡୀ ଗ୍ରାମ ଗୁଡ଼ିକର ଉଲ୍ଲେଖ ଅଛି । ଦକ୍ଷିଣ-ରାଢ଼ର (ତକ୍କନଲାଢ଼ମ୍) ଉଲ୍ଲେଖ ରାଜେନ୍ଦ୍ର-ଚୋଳଙ୍କ ତିରୁମଲୟ ଲିପିରେ ଠିକ୍ ଦଣ୍ଡଭୁକ୍ତି (ତଣ୍ଡଭୁତ୍ତି) ବା ମେଦିନୀପୁର) ଜୟପରେ ହିଁ ଦେଖାଯାଏ । ସେ ଓଡ୍ଡବିଷୟ କୋଶଳୈ ନାଡ୍ଡୁ ଜୟ କରି ତଣ୍ଡବୁତ୍ତି (ବର୍ତ୍ତମାନ ଦାନ୍ତନ=ଦଣ୍ଡଭୁକ୍ତି) ଅଧିକାର କରିଥିଲେ । ଦଣ୍ଡଭୁକ୍ତି ପରେ ହିଁ ଦକ୍ଷିଣ-ରାଢ । ଶ୍ରୀଧରାଚାର୍ଯ୍ୟଙ୍କର ନ୍ୟାୟକନ୍ଦଲୀ ଗ୍ରନ୍ଥରେ (୯୯୧—୯୨) ଦକ୍ଷିଣ ରାଢର ଅଧିପତି ତାଙ୍କ ପୃଷ୍ଠପୋଷକ ଥିବା କଥା ଉଲ୍ଲେଖ ଅଛି । କୃଷ୍ଣ ମିଶ୍ରଙ୍କ ପ୍ରବୋଧଚନ୍ଦ୍ରୋଦୟ ନାଟକରେ (୧୧-୧୨ ଶତକ) ମଧ୍ୟ ରାଢ ଓ ଦକ୍ଷିଣ-ରାଢର ଉଲ୍ଲେଖ ମିଳେ । ରାଢ଼ଦେଶର ଦୁଇଟି ରାଷ୍ଟ୍ର ବିଭାଗର ପରିଚୟ ପାଇଥାଉଁ । ଷଷ୍ଠ ଶତକର ମଲ୍ଲସାରୁଲ ଲିପି, ଦଶମ ଶତକର ଇର୍ଦ୍ଦା ଲିପି ଏବଂ ଲକ୍ଷ୍ମଣସେନଙ୍କ ନୈହାଟି ଓ ଗୋବିନ୍ଦପୁର ଲିପିରେ ବର୍ଦ୍ଧମାନଭୁକ୍ତିର ସଂବାଦ ମିଳେ । ଇର୍ଦ୍ଦା-ଲିପିରେ ଦଣ୍ଡଭୁକ୍ତିମଣ୍ଡଳ ଅର୍ଥାତ୍ ଦାନ୍ତନ ପର୍ଯ୍ୟନ୍ତ ବର୍ଦ୍ଧମାନଭୁକ୍ତିର ସୀମା ବିସ୍ତୃତ । ଇର୍ଦ୍ଦା ଲିପି ଓ ରାଜେନ୍ଦ୍ରଚୋଳଙ୍କ ତିରମଲୟ ଲିପି ଛଡ଼ା ସନ୍ଧ୍ୟାକର ନନ୍ଦୀଙ୍କ "ରାମଚରିତ"ରେ ମଧ୍ୟ ତଣ୍ଡବୁତ୍ତି=ଦ ଣ୍ଡଭୁକ୍ତି ଓ ଦଣ୍ଡଭୁକ୍ତିମଣ୍ଡଳର ଉଲ୍ଲେଖ ଅଛି । ଦଣ୍ଡଭୁକ୍ତି ବର୍ତ୍ତମାନ ମେଦିନୀପୁର (ପ୍ରାଚୀନ ମିଧୁନପୁର) ଜିଲ୍ଲାର ଦକ୍ଷିଣ ଓ ଦକ୍ଷିଣ-ପଶ୍ଚିମ ଅଂଶ ।

ଲକ୍ଷ୍ମଣସେନଙ୍କ ଶକ୍ତିପୁର ପଟ୍ଟୋଲୀରେ ରାଢର ବିଭାଗ ବଦଳର ଖବର ମିଳିଥାଏ । ସେତେବେଳକୁ ଏହାର ନାମ କଂକଗ୍ରାମଭୁକ୍ତି, ଏବଂ ଉତ୍ତର ରାଢ ଏହି ଭୁକ୍ତିର ଅନ୍ତର୍ଗତ । କଂକଗ୍ରାମ କାହାରି ମତରେ ରାଜମହଲ ନିକଟବର୍ତ୍ତୀ କାକଜୋଲ, ଅନ୍ୟ କାହାରି ମତରେ ମୁର୍ଶିଦାବାଦ ଜିଲ୍ଲାର ଭରତପୁର ଥାନାର କାଗ୍ରାମ । ଡଃ ନୀହାରରଂଜନ ରାୟଙ୍କ ମତରେ ଶାସନୋଲ୍ଲିଖିତ ସ୍ଥାନଗୁଡ଼ିକର ଅବସ୍ଥିତି ଦୃଷ୍ଟିରୁ

ମନେହୁଏ ଯେ, ବର୍ତ୍ତମାନ ମୁର୍ଶିଦାବାଦ ଏବଂ ବୀରଭୂମ ଜିଲ୍ଲାର ଅଧିକାଂଶ, ଏବଂ ସାଁଓତାଲ ପରଗଣାର କିୟଦଂଶ ଏଇ କଂକଗ୍ରାମ ଭୁକ୍ତିର ଅଂତର୍ଗତ ଥିଲା । (୧)

ପ୍ରାଚୀନ ରାଢ଼ ଜନପଦର ଦୁଇଟି ବିଭାଗ ମଧ୍ୟରେ ସୁବ୍ଭ=ସୁଂଧ ବିଭାଗଟି ସମ୍ୟକ ପ୍ରସିଦ୍ଧ ଥିଲା ଏବଂ ସଂଭବତଃ ପ୍ରାଚୀନତର । ମହାଭାରତରେ କର୍ଣ୍ଣ ଓ ଭୀମଂକ ଦିଗ୍ବିଜୟ ସଂବଂଧରେ ସୁଂଧ ଜନମାନଂକର ଉଲ୍ଲେଖ ଦେଖିବାକୁ ମିଳେ । କର୍ଣ୍ଣ ସୁଂଧ, ପୁଂଡ୍ର ଓ ବଂଗ ଜନମାନଂକୁ ଯୁଦ୍ଧରେ ପରାସ୍ତ କରିଥିଲେ । ରଘୁବଂଶରେ ମହୋଦଧିର ତାଳବନଶ୍ୟାମୋପକଂଠେ ସୁଂଧମାନଂକର ପରାଜୟ ବିଷୟ ବର୍ଣ୍ଣିତ ଅଛି । (*Ibid*)

ବିଜୟ ସେନ୍‌ଙ୍କ ଦେଓପାଡ଼ା ଲିପିରେ (ଯାହାର ରଚୟିତା ଥିଲେ ଉମାପତି ଧର) ତାଂକ ଦ୍ୱାରା ଗୌଡ଼, କାମରୂପ, କଳିଂଗରାଜ ଏବଂ ବୀର, ନାନ୍ୟ, ରାଘବ ଏବଂ ବର୍ଦ୍ଧନ ନାମରେ କେତେଜଣ ସାମଂତଂକର ପରାଜୟ ଦାବୀ କରାଯାଇଛି । ବୀର କୋଟାଟବୀର ବୀରଗୁଣ ହେବା ଅସଂଭବ ନୁହେ । ବର୍ଦ୍ଧନ ରାମଚରିତୋକ୍ତ କୌଶାଂବୀର (ବଗୁଡ଼ା ବା ରାଜସାହି ଜିଲ୍) ରାଜା ଦ୍ୱୋରପବର୍ଦ୍ଧନ ହୋଇ ପାରଂତି । ଏ ଦୁଇଜଣଯାକ ହିଁ ବରେଂଦ୍ରୀ ଯୁଦ୍ଧରେ ରାମପାଳଂକର ସହାୟକ ଥିଲେ । ରାଘବ ସଂଭବତଃ କଳିଂଗରାଜା ଅନଂତ ବର୍ମଣ ଚୋଡ଼ଗଂଗ ଦେବଙ୍କ (୧୦୭୭- ୧୧୪୭) ଦ୍ୱିତୀୟ ପୁତ୍ର ହୋଇ ପାରଂତି ବୋଲି ଡଃ ମିଃରଃ ରାୟ ଅନୁମାନ କରଂତି । ବିଜୟସେନ୍ ଚୋଡ଼ଗଂଗଂକ ମଧ୍ୟରେ କିଛିକାଳ ପାଇଁ ବଂଧୁତା ହୋଇଥିବା ସଂଭବ ବୋଲି ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଂକ ଦ୍ୱାରା ସଂପାଦିତ ଆନଂଦଭଟ୍ଟଂକ ଦ୍ୱାରା ରଚିତ "ବଲ୍ଲାଳଚରିତମ୍" ଗ୍ରଂଥରେ ବର୍ଣ୍ଣିତ ହୋଇଛି । ଏକଥା ଡଃ ମହତାବ୍ ମଧ୍ୟ ତାଂକ ଓଡ଼ିଶା ଇତିହାସ ପୃ୧୬୦ରେ ଉଲ୍ଲେଖ କରିଛଂତି । ଡଃ ମହତାବ୍ ପୁଣି ଲେଖିଛଂତିଃପାଳରାଜାଂକ ପ୍ରଭୁତ୍ୱରୁ ବଂଗଦେଶକୁ ମୁକ୍ତ କରି ବିଜୟସେନ୍ ବଂଗର ଅଧୀଶ୍ୱର ହେବା ପରେ ଚୋଡ଼ଗଂଗଂକ ସହିତ ତାଂକର ସଂଘର୍ଷ ଘଟିଥିଲା ଓ ସେଥିରେ ଚୋଡ଼ଗଂଗ ପରାସ୍ତ ହୋଇଥିଲେ ବୋଲି ବିଜୟସେନ୍‌ଙ୍କ ସଂବଂଧୀୟ ଏକ ଶିଳାଲିପିରୁ ଜଣାଯାଏ । ମିଥିଳାର କର୍ଣ୍ଣାଟ-ବଂଶୀୟ ସେନ୍-ରାଜା ନାନ୍ୟଦେବ ବୋଲି ମନେହୁଏ । ଯେଉଁ ଗୌଡ଼ପତିଂକୁ ବିଜୟସେନ ପରାଜିତ କରିଛଂତି ବୋଲି ଦାବୀ କରଂତି ସେ ମଦନପାଳ ହେବାହିଁ

* ବାଂ: ଇ । (୧) *Ibid*

ସଭର୍ବ । ଗୌଡ଼ ଜୟ ଅର୍ଥ ବରେନ୍ଦ୍ରୀ ଜୟ । ବିଜୟସେନଙ୍କ କଳିଙ୍ଗ ଓ କାମରୂପ ଜୟର ପ୍ରକୃତ ନିର୍ଧାରଣ କରିବା କଠିନ ବୋଲି ଡଃ ନୀ: ର: ରାୟ ମନ୍ତବ୍ୟକ୍ତ କରନ୍ତି ।

ବିଜୟସେନଙ୍କ ପୁତ୍ର ବଲ୍ଲାଲସେନ (୧୧୫୮—୧୧୭୯) ପରେ ଗୌଡ଼ ଅଭିଯାନ କରି ଜୟ କରିଥିଲେ, ବୋଧହୁଏ ଗୋବିନ୍ଦପାଳଙ୍କ ଅମଳରେ । ବଲ୍ଲାଳଙ୍କ ପ୍ରଣୀତ 'ଅଦ୍ଭୁତସାଗର' ଗ୍ରନ୍ଥରେ ଗୌଡ଼ବିଜୟର ଟିକିଏ ଇଙ୍ଗିତ ଅଛି । ଏଇ ଗ୍ରନ୍ଥ ସମାପନ ପୂର୍ବରୁ ବଲ୍ଲାଲସେନ ପୁତ୍ର ଲକ୍ଷ୍ମଣସେନଙ୍କ ହାତରେ ରାଜ୍ୟଭାର ଓ ଗ୍ରନ୍ଥ ସମାପନଭାର ଅର୍ପଣ କରି ସପତ୍ନୀକ ଗଙ୍ଗା-ଯମୁନା ସଙ୍ଗମରେ ନିରଞ୍ଜରପୁରଠାରେ ବାନପ୍ରସ୍ଥ-ଜୀବନ ଅତିବାହିତ କରିବାକୁ ଚାଲି ଯାଇଥିଲେ ।

ଲକ୍ଷ୍ମଣସେନ୍ କଳିଙ୍ଗ ଓ କାମରୂପକୁ ବିଜୟୀ ସମରାଭିଯାନ ପ୍ରେରଣ କରିଥିବା କଥା ତାଙ୍କ ଲିପିରେ ଦାବୀ କରିଛନ୍ତି । ତାଙ୍କ ପୁତ୍ରମାନଙ୍କ ଲିପିରେ ମଧ୍ୟ କୁହାଯାଇଛି ଯେ ସେ ପୁରୀ, ବାରାଣାସୀ ଓ ପ୍ରୟାଗରେ ବିଜୟସ୍ତମ୍ଭ ପ୍ରୋଥିତ କରିଥିଲେ । କାଶୀ ଓ କଳିଙ୍ଗ ଜୟର ସୁସ୍ପଷ୍ଟ ଉଲ୍ଲେଖ ଲକ୍ଷ୍ମଣସେନଙ୍କ ଲିପିରେ ମିଳେ । ଲକ୍ଷ୍ମଣସେନ ସେନ୍-ସିଂହାସନ ଆରୋହଣ କାଳବେଳକୁ ପ୍ରାୟ ଷାଠିଏ ବର୍ଷର ପରିଣତ ପ୍ରୌଢ଼ । ତେଣୁ ସେ ଗୌଡ-କଳିଙ୍ଗ-କାମରୂପ ରଣାଙ୍ଗନମାନଙ୍କରେ ଯେଉଁ ଶୌର୍ଯ୍ୟବୀର୍ଯ୍ୟ ପ୍ରକାଶ କରିଥିବା କଥା କୁହାଯାଇଛି ଏବଂ କଳିଙ୍ଗ-ଲଳନାମାନଙ୍କ ସଙ୍ଗେ କେଳି କରିଥିବା ବିଷୟର ଉଲ୍ଲେଖ ଦେଖିବାକୁ ମିଳେ ତାହା କପୋଳକଳ୍ପିତ ବୋଲିହିଁ ମନେହୁଏ ।

"କ୍ଷ୍ମାକ୍ଷେପାଦ୍ ଗୌଡ଼ଲକ୍ଷ୍ମୀଂ ଜୟତି ବିଜୟତେ କେଳିମାଜାନ୍ କଳିଙ୍ଗାନ୍ ।"
ଚେତଶ୍ଚେଦକ୍ଷିତିନ୍ଦୋପ୍ରପତି ବିତପତେ ସୂର୍ଯ୍ୟବଦ୍ ଦୁର୍ଜନେଷୁ... ।"
ସ୍ୱେଚ୍ଛାମ୍ଳେଚ୍ଛାନ୍ ବିନାଶଂ ନୟତି ବିନୟତେ କାମରୂପାଭିମାନଂ
କାଶୀଭର୍ତ୍ତୁଃ ପ୍ରକାଶଂ ହରତି ବିହରତେ ମୂର୍ଦ୍ଧ୍ନ ଯୋ ମାଗଧସ୍ୟ ।"

ଶରଣ ଏଇ ଶ୍ଳୋକରେ ଲକ୍ଷ୍ମଣସେନଙ୍କ ସ୍ତୁତି କରିବାକୁ ଯାଇ ସେ ଚେଦି, କଳିଙ୍ଗ, କାମରୂପ, କାଶୀ ଓ ମ୍ଳେଚ୍ଛ ରଜାଙ୍କୁ ଯୁଦ୍ଧରେ ପରାସ୍ତ କରିଥିବା କଥା ଲେଖିଛନ୍ତି ।

ଡଃ ମହତାବ୍‌ଙ୍କ ମତରେ ଏ ସମସ୍ତ ବର୍ଣ୍ଣନା "କେବଳ ସ୍ତାବକ କବିଙ୍କ ଅନୁପ୍ରାସିକ ପ୍ରଶସ୍ତି ଗାନ ମାତ୍ର" । ଡଃ ନୀହାରରଞ୍ଜନ ରାୟ ତାଙ୍କ ବାଂ ଇ ଗ୍ରନ୍ଥରେ ଲକ୍ଷ୍ମଣସେନ୍‌ଙ୍କ ଗୌଡ଼ କଳିଙ୍ଗ କାମରୂପ ଅଧିକାର ଦାବୀ ପଛରେ 'ନିଃସଂଶୟ ଲିପିପ୍ରମାଣ ଅଛି" ବୋଲି ମନେକରନ୍ତି ।

ସେ ଯାହାହେଉ, ଲକ୍ଷ୍ମଣସେନଂକ କଳିଂଗବିଜୟ ଦାବୀ ଅମୂଳକ ହେଲେ ମଧ୍ୟ ବୀରଭୂମି ବା ଉତ୍ତର-ରାଢ଼ ଓଡ଼ିଶାର ଅଂତର୍ଗତ ଥିଲା ବୋଲି କହିବାର କୌଣସି ହେତୁ ନାଇ । ପୂର୍ବରୁ କୁହାଯାଇଛି, ବଲ୍ଲାଳସେନଂକ ସମୟରେ ଗୌଡ଼, ବରେଂଦ୍ରୀ ଏବଂ ମିଥିଳା ସେନ୍ ରାଜ୍ୟଭୁକ୍ତ ଥିଲା । ଏହା ସାଂଗକୁ ଆଉ ଗୋଟିଏ ଅଂଚଳ ମଧ୍ୟ ସେନ୍-ଅଧିକାରଭୁକ୍ତ ଥିଲା; ତାହା ହେଉଛି ବାଗଡ଼ୀ ବା ସୁଂଦରବନ ମେଦିନୀପୁର ଅଂଚଳ । ଲକ୍ଷ୍ମଣସେନଂକ ଅମଳରେ ଏ ସମସ୍ତ ଅଂଚଳ ସେନ୍-ପରିଧିଭୁକ୍ତ ହୋଇଥିଲା । ଲକ୍ଷ୍ମଣସେନଂକର ଦୁଇଟି ଲିପିରେ ଏବଂ ଶକ୍ତିପୁର ପଟ୍ଟୋଲୀରେ ବର୍ଧମାନଭୁକ୍ତି ଓ କଂକଗ୍ରାମଭୁକ୍ତିର ସାକ୍ଷାତ୍ ମିଳେ—ଯାହା ବର୍ତ୍ତମାନ ବୀରଭୂମ ଜିଲ୍ଲାକୁ ଆବୃତ କରିଥିଲା ।

ତେଣୁ ଡଃ ମହତାବ୍ ହଠାତ୍ ବନ୍ଧୁ ଉନ ନୀରବ ରହିବା ପରେ ବୀରଭୂମି ସେନ୍ ଯୁଗରେ ଓଡ଼ିଶାର ଅଂତର୍ଗତ ଥିଲା ବୋଲି 'ଝଂକାର' ସଂପାଦକୀୟରେ (ଫେବ୍ରୁୟାରୀ ୧୯୭୬) କହିବାର ଅର୍ଥ କଣ ବୁଝିହେଉନାହିଁ । ଅବଶ୍ୟ ଏକଥା ଉଲ୍ଲେଖନୀୟ ଯେ ସେନ୍-ଅଭ୍ୟୁଦୟ ପୂର୍ବରୁ କଳିଂଗ ନରପତି ଅନଂତବର୍ମା ଚୋଡ଼ଗଂଗଦେବ ଥରେ ରାମପାଳ ବଂଶ ଆଉ ଆଉ ଓଡ଼ିଶାକୁ ପାଳବଂଶ ଅଧିକାରରୁ ମୁକ୍ତ କରିଥିଲେ । ରାମପାଳଂକ ପୁତ୍ର କୁମାରପାଳଂକ ଅମଳରେ ଚୋଡ଼ଗଂଗ ଦକ୍ଷିଣ-ରାଢ଼ ଆକ୍ରମଣ କରିଥିଲେ । ମାତ୍ର କୁମାରପାଳ ତାଂକ ସୁଦକ୍ଷ ମଂତ୍ରୀ ବୈଦ୍ୟଦେବଂକ ସହାୟତାରେ ଚୋଡ଼ଗଂଗଂକ ଆକ୍ରମଣକୁ ପ୍ରତିହତ କରିଥିବା କଥା ତାଂକର ଏକ ତାମ୍ରଶାସନରୁ ଜଣାଯାଏ । ଚୋଡ଼ଗଂଗଂକ ଆକ୍ରମଣ ରୋକିବାକୁ ଯାଇ ଦକ୍ଷିଣ ବଂଗରେ ଏକ ପ୍ରବଳ ଜଳ-ଯୁଦ୍ଧ ହୋଇଥିବା କଥା ପାଳରାଜାଂକ ଅନୁଶାସନରୁ ମଧ୍ୟ ଜଣାପଡେ । ରାଖାଲଦାସ ବ୍ୟାନାର୍ଜିଂକ "ବାଂଲାର ଇତିହାସ" ଗ୍ରଂଥରେ ଏଇ ନୌଯୁଦ୍ଧର ବର୍ଣନା ଉଦ୍ଧୃତ ହୋଇଛି । (ଡଃ ମହତାବ୍ 'ଓଡ଼ିଶା ଇତିହାସ'ରେ ଏହା ମଧ୍ୟ ଉଦ୍ଧାର କରିଛଂତି) ସେତେବେଳେ ଚୋଡ଼ଗଂଗଂକ ଗତି ରୋଧିତ ହୋଇଥିଲେ ମଧ୍ୟ ସେ ମଂଦାର ଦୁର୍ଗ ଅଧିକାର କରିନେଇ ମଂଦାରାଧିପତିଂକୁ ସେଠାରୁ ତଡ଼ି ଦେଇଥିଲେ ବୋଲି ଡଃ ମହତାବ୍ ଲେଖିଛଂତି । ମଂଦାରରେ ଅବସ୍ଥିତ ବର୍ତ୍ତମାନ ହୁଗୁଲି ଜିଲ୍ଲାର ଆରାମବାଗର ଆଠ ମାଇଲ୍ ପଶ୍ଚିମରେ ସ୍ଥିତ 'ଭିତର ଗଡ଼' ନାମକ ସ୍ଥାନ । (ଓ.ଇ) ଡଃ ନୀ:ର: ରାୟ ମଧ୍ୟ ଚୋଡ଼ଗଂଗଂକ ମଂଦାର-ବିଜୟ ସମର୍ଥନ କରିଛଂତି । ସେ ଲେଖିଛଂତି : ଦ୍ୱାଦଶ ଶତକୀୟ ଓଡ଼ିଶାର ଚୋଡ଼ଗଂଗ ରାଜାଂକ ଆଧିପତ୍ୟ ମିଧୁନପୁର (ନାଃସଂଦେହରେ ବର୍ତ୍ତମାନ ମେଦିନୀପୁର) ପର୍ଯଂନ୍ତ ବିସ୍ତୃତ ହୋଇଥିଲା । ଅନଂତବର୍ମଣ ଚୋଡ଼ଗଂଗ ଗଂଗାତୀରରେ ମଂଦାରରାଜାଂକୁ

ପରାଭୂତ କରି ତାଂକ ଦୁର୍ଗନଗର ଅାରମ୍ୟ ଧ୍ୱଂସ କରିଥିଲେ । ମନ୍ଦାର ନାଃସଂଦେହରେ ବର୍ତ୍ତମାନ ମନ୍ଦାରଣ, ଏବଂ ଆରାମ୍ୟ ବର୍ତ୍ତମାନ ଆରାମବାଗ, ଉଭୟ ବର୍ତ୍ତମାନ ହୁଗୁଲୀ ଜିଲରେ ।

ମାତ୍ର ଏ ସମରାଭିଯାନ ସ୍ଥାୟୀ ରାଜତ୍ୱ ନୁହେ । ସୁଦୂର ଅତୀତରେ ପ୍ରତାପୀ ରାଜାମାନେ ଏଭଳି ଅଭିଯାନ ବରାବର କରୁଥିଲେ । ତା'ଛଡ଼ା ପାଲବଂଶ ରାଜତ୍ୱ ସମୟରେ ଚୋଡ଼ଗଂଗ ହୁଗୁଳି ଜିଲାର ଆରାମବାଗ ବିଜୟ କରିଥିଲେ ବୋଲି ଲକ୍ଷ୍ମଣସେନଂକ ରାଜତ୍ୱରେ ରାଢ ଦେଶ କଳିଂଗ ରାଜାଂକ ଆଧିପତ୍ୟରେ ଥିଲା ବୋଲି କହିବା କେତେଦୂର ସମୀଚୀନ ତାହା ଡଃ ମହତାବ୍ ନିଜେହିଁ ବୁଝୁଥିବେ ।

ଏହାଛଡ଼ା ବୀରଭୂମିର ଅଜୟନଦ ତୀରସ୍ଥ କେନ୍ଦୁବିଲ୍ୱ ଗ୍ରାମ ନିକଟବର୍ତ୍ତୀ ଶ୍ୟାମରୂପାଗଡ ବା ସେନ୍‌ପାହାଡ଼ୀ—ଯେଉଁଠି ବଲ୍ଲାଲସେନ ଏକ ନୀଚଜାତୀୟା ରମଣୀ ସହ ତଂତ୍ରସାଧନାରେ ଲିପ୍ତ ଥିଲେ— ବୀରଭୂମି ବା ଉତ୍ତର ରାଢ଼ ସେନ୍-ଅଧିକାରଭୁକ୍ତ ଥିବା ସପକ୍ଷରେ ଅନ୍ୟ ଏକ ଅକାଟ୍ୟ ପ୍ରମାଣ ।

## ଲେଖ-ପ୍ରମାଣର ସାରାଂଶ

ସଦୁକ୍ତିକର୍ଣାମୃତ ଗ୍ରଂଥର ଶୃଂଗାର-ପ୍ରବାହରେ ଉମାପତି ଧରଂକର ସୁଂଦର କାବ୍ୟମୟ ଶ୍ଳୋକଟି "ଦୂରୋଦଂଚିତ ବାହୁମୂଳ ବିଲସଚ୍ଚୀନ ପ୍ରକାଶସ୍ତନା" (ଊର୍ଦ୍ଧ୍ୱବାହୁ ହୋଇ ଫୁଲ ତୋଳୁଥିବା ତରୁଣୀର ନାଭିହ୍ରଦ ବର୍ଣନା) ସହ ଜୟଦେବ, ଗୋବର୍ଧନାଚାର୍ଯ୍ୟ, ଶରଣ, ଧୋୟୀ-କବିରାଜ, ଲକ୍ଷ୍ମଣସେନ, କେଶବ-ସେନ୍ ପ୍ରମୁଖଂକର ଶ୍ଳୋକାବଳୀ ସନ୍ନିବିଷ୍ଟ ହୋଇଛି । ଏମାନଂକ ବ୍ୟତୀତ ବହୁ ଗୌଡ଼-ବଂଗୀୟ କବିଂକ ରଚନା ଏଇ ସଂକଳନରେ ସ୍ଥାନ ପାଇଛି । ଯଥା :— ଜଲଚଂଦ୍ର, ଯୋଗେଶ୍ୱର, ବୈଦ୍ୟ ଗଂଗାଧର, ସାଞ୍ଚିଧର, ବେତାଳ, ବ୍ୟାସ-କବିରାଜ, କେଵଟ, ପପୀପ, ଜନୈକ ବଂଗାଲ, ଚଂଦ୍ରଚଂଦ୍ର, ଗଂଗୋକ, ହଂବୋକ ଇତ୍ୟାଦି । ଏମାନେ ସମସ୍ତେ ଥିଲେ ସମକାଳୀନ ବଂଗଳାର କବି । ଏହାଛଡ଼ା ବଟୁଦାସଂକ ପ୍ରଶସ୍ତିମୟ ପାଂଚଟି ଶ୍ଳୋକ ଯେଉଁ ପାଂଚ ଜଣ କବିଂକ ଦ୍ୱାରା ରଚିତ ସେମାନେ ମଧ୍ୟ ସମସାମୟିକ ବଂଗାଳୀ କବି । ଏ ପାଂଚଜଣ ହେଉଛଂତି— ମଧୁ, ସାଞ୍ଚିଧର, ବେତାଳ, ଉମାପତି ଧର ଓ କବିରାଜ-ବ୍ୟାସ । ତା'ଛଡ଼ା ଗୋବର୍ଧନାଚାର୍ଯ୍ୟଂକ ଆର୍ଯ୍ୟ ସପ୍ତଶତୀ ନାମକ ଶୃଂଗାରକାବ୍ୟଟି ଖ୍ରାଜ୍ଜଳିଦଦ୍ଦ, ଏହାକୁ ସେ ଜଣେ ସେନ୍‌କୁଳତିଳକଂକ ପୃଷ୍ଠପୋଷକତାରେ ରଚନା କରିଛଂତି

ବୋଲି ଏହି କାବ୍ୟରେହିଁ ସ୍ପଷ୍ଟ କହିଯାଇଛନ୍ତି । ତାଂକର ଦୁଇ ଭ୍ରାତା ବା ଶିଷ୍ୟଂକ ନାମ ଥିଲା ଉଦୟନାଚାର୍ଯ୍ୟ ଓ ବଳଭଦ୍ର । ଶରଣ ତ ସଦୁକ୍ତିରେ ସଙ୍କଳିତ ତାଂକର ଗୋଟିଏ ଶ୍ଳୋକରେ ଜନୈକ ସେନ୍-ବଂଶଧରଙ୍କଂକ ରାଜତ୍ୱ କାଳରେ ବାସ କରୁଥିବା କଥାର ସ୍ପଷ୍ଟ ଇଂଗିତ ଦେଇ ଯାଇଛନ୍ତି । ଅନ୍ୟ ଗୋଟିଏ ଶ୍ଳୋକରେ ଗୌଡ଼ଲକ୍ଷ୍ମୀ ପ୍ରସଙ୍ଗରେ ଚେଦି, କଳିଂଗ, କାମରୂପ ଓ ମ୍ଳେଚ୍ଛରାଜାଂକ ପରାଜୟର ଇଂଗିତ ଅଛି । (ଏ ଶ୍ଳୋକଟି ଉପରେ ଉଦ୍ଧୃତ କରିଛୁ ।) ଧୋୟୀ (ଧୋୟୀକ, ଧୂୟୀ)—କବିରାଜ କାଳିଦାସଂକ ମେଘଦୂତ ଆଦର୍ଶ ରେ 'ପବନଦୂତ' ନାମକ ଏକ କାବ୍ୟ ରଚନା କରି ତାଂକ ପୃଷ୍ଠପୋଷକ ଲକ୍ଷ୍ମଣସେନଂକୁ ସେଥିରେ କୌଶଳ ସହକାରେ ନାୟକ ସ୍ଥଳରେ ଅଭିଷିକ୍ତ କରିଛନ୍ତି ଏବଂ ତାଂକର ସ୍ତୁତି କରିଛନ୍ତି । ଲକ୍ଷ୍ମଣସେନ କୁଆଡ଼େ ଥରେ ଦକ୍ଷିଣଦେଶକୁ ଯାଇଥିଲେ । ସେଠାରେ କୁବଳୟବତୀ ନାମ୍ନୀ ଜଣେ ଗଂଧର୍ବକନ୍ୟା ତାଂକ ପ୍ରତି ପ୍ରେମାସକ୍ତା ହୋଇପଡ଼ିଲା । ଦକ୍ଷିଣା ମଳୟବାୟୁକୁ ଦୂତ କରି ବିରହିଣୀ କୁବଳୟବତୀ ଲକ୍ଷ୍ମଣସେନଂକ ନିକଟକୁ ପ୍ରେମ-ବାର୍ତ୍ତା ପ୍ରେରଣ କରିଛନ୍ତି । ଏହାହିଁ ହେଲା ଏ ଦୂତକାବ୍ୟର ବିଷୟବସ୍ତୁ । ଡଃ ନୀ:ର: ରାୟଂକ ମତରେ, କାବ୍ୟଟିର ମୌଳିକତ୍ୱ ବିଶେଷ କିଛି ନାଇ, ଭାବ-ଗାମ୍ଭୀରତାର ପରିଚୟ ସ୍ୱଳ୍ପ, ତେବେ ଏକ ଏକ ଶ୍ଳୋକର ଶବ୍ଦ-ଗରିମା ଏବଂ କଳ୍ପନାର ମାଧୁର୍ଯ୍ୟ ଚିତ୍ତ ସ୍ପର୍ଶ କରେ ।

ଉମାପତି ଧର ଲକ୍ଷ୍ମଣସେନଂକ ପିତାମହ ବିଜୟ ସେନଂକ ଦେଓପାଡ଼ା-ପ୍ରଶସ୍ତିର ରଚୟିତା । ଏ ପ୍ରଶସ୍ତିର ୪ଟି ଶ୍ଳୋକ ସଦୁକ୍ତିରେ ଉଦ୍ଧାର କରାଯାଇଛି । ସଦୁକ୍ତି ସଂକଳନରେ ଉମାପତି ଧରଂକ ନାମରେ ଆଉ ଏକ ଶ୍ଳୋକ ରହିଛି ଯାହା ଲକ୍ଷ୍ମଣସେନଂକ ମାଧାଇନଗର ପଟ୍ଟୋଲୀରେ ଠିକ ଏକା ପ୍ରକାରେ ଦେଖିବାକୁ ମିଳେ । ଅତଏବ ଯେପରି ଦେଖାଯାଉଛି ବୃଦ୍ଧକବି ଉମାପତି ଧର ତିନି ପୁରୁଷ ଧରି ସେନ୍-ରାଜସଭା ସହିତ ଜଡ଼ିତ ଥିଲେ । ମେରୁତୁଂଗ ତାଂକ ପ୍ରବଂଧଚିଂତାମଣିରେ ମଧ୍ୟ ଲେଖିଛନ୍ତି ଯେ ଉମାପତି ଧର ଲକ୍ଷ୍ମଣସେନଂକର ଅନ୍ୟତମ ମଂତ୍ରୀ ଥିଲେ । ଆମର ମନେହୁଏ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାଇ । କାରଣ ଲକ୍ଷ୍ମଣସେନ ରାଜା ହେଲାବେଳକୁ ପ୍ରାୟ ଷାଠିଏ ବର୍ଷ ବୟସରେ ପହଂଚିଥିଲେ । ସେ ଆନୁମାନିକ ଖ୍ରୀ ୧୧୭୯ ଠାରୁ ୧୨୦୫ ପର୍ଯ୍ୟଂତ ରାଜତ୍ୱ କରିଥିଲେ । ତାଂକ ପିତାମହ ବିଜୟସେନଂକ ରାଜତ୍ୱକାଳ ଥିଲା ଆନୁମାନିକ ଖ୍ରୀ: ୧୦୯୫—୧୧୫୮ ପର୍ଯ୍ୟଂତ । ତାଂକ ପିତା ବଲ୍ଲାଳସେନଂକ ରାଜତ୍ୱକାଳ ଥିଲା ଆ. ୧୧୫୮—୧୧୭୯ ପର୍ଯ୍ୟଂତ । ତେଣୁ ଉମାପତିଧର ବିଜୟସେନଂକ

ରାଜତ୍ୱର ଶେଷ ପାଦରେ ହିଁ ଏଈ ସେନ୍-ସଭାରେ ଯୋଗ ଦେଇଥିବେ । ସେ ଯେ କେବଳ ଲକ୍ଷ୍ମଣସେନଙ୍କ ଅନ୍ୟତମ ମନ୍ତ୍ରୀ ବା ସଭାକବି ଥିଲେ ତା ନୁହେଁ, ଯେଉଁ ତୁର୍କୀ-ଅଭିଯାତ୍ରୀ ମହମ୍ମଦ ବଖ୍ତିଆର ଖିଲ୍‌ଜୀ ଲକ୍ଷ୍ମଣସେନଙ୍କୁ ଆକସ୍ମିକ ଯୁଦ୍ଧରେ ପରାଭୂତ କରି ସେନ୍-ରାଜ୍ୟଶ୍ରୀ ଦଖଲ କରିଥିଲା, ବୃଦ୍ଧ ଧର କବି ସେଇ 'ମ୍ଲେଚ୍ଛନରେନ୍ଦ୍ର'ଙ୍କ ପ୍ରଶସ୍ତି-ଗାନ କରିବାକୁ ମଧ୍ୟ କୁଣ୍ଠିତ ନାହାନ୍ତି । ସେ ଶ୍ଲୋକଟି "ସାଧୁ ମ୍ଲେଚ୍ଛ ନରେନ୍ଦ୍ର ସାଧୁ ଭବତୋ ମାତୈବ ବୀରପ୍ରସୂନ" ଅନ୍ୟତ୍ର ଉଦ୍ଧାର କରାଯାଇଛି ।

ତେଣୁ ଏଇ ସବୁ ପାରସ୍ପରିକ ସମ୍ବନ୍ଧ-ଦୃଷ୍ଟିରୁ ଜୟଦେବଙ୍କୁ ଲକ୍ଷ୍ମଣସେନଙ୍କ ରାଜସଭାରୁ କିମ୍ବା ତାଙ୍କର ସମସାମୟିକ ସେନ୍-ସଭାର ଅନ୍ୟ କବି ଚତୁଷ୍ଟୟ, ଯଥା ଉମାପତି ଧର, ଗୋବର୍ଦ୍ଧନାଚାର୍ଯ୍ୟ, ଧୋୟୀ-କବିରାଜ ଓ ଶରଣଙ୍କଠାରୁ ବିଚ୍ଛିନ୍ନ କରିବା କଦାପି ସମ୍ଭବ ନୁହେଁ । ତେଣୁ କବି ଜୟଦେବ ଯେ ସେନ୍-ରାଜସଭା ସହିତ ଅବିଚ୍ଛେଦ୍ୟ ଭାବରେ ଜଡ଼ିତ, ଏଥିରେ ସନ୍ଦେହର ଅବକାଶ ନାହିଁ ।

କବି ଜୟଦେବ ଓଡ଼ିଶାର ହୁଅନ୍ତୁ ବା ବଙ୍ଗଳାର ହୁଅନ୍ତୁ ସେଥିରେ ତାଙ୍କର ମହତ୍ତ୍ୱ ଓ କବି-ପ୍ରତିଷ୍ଠା ଆଦୌ କ୍ଷୁଣ୍ଣ ହୁଏ ନାହିଁ ବା ହେବା ଉଚିତ ନୁହେଁ । ସେ ସମଗ୍ର ଭାରତବର୍ଷର କବି ଏବଂ ପ୍ରତ୍ୟେକ ଭାରତୀୟର ପ୍ରାତଃସ୍ମରଣୀୟ କବିମାନଙ୍କ ମଧ୍ୟରେ ଅନ୍ୟତମ । ତେଣୁ ଏଇ ସବୁ କ୍ଷୁଦ୍ର ବାଦ-ବିସମ୍ବାଦରେ ଲିପ୍ତ ରହି ସତ୍ୟର ଅପଲାପ କରିବାକୁ ଯିବା ଆଦୌ ସମୀଚୀନ ନୁହେଁ । ଗବେଷକ ଚିର ସତ୍ୟାନୁସନ୍ଧାନୀ । ଉପସ୍ଥିତ ତଥ୍ୟ ଓ ପ୍ରମାଣାବଳୀ ଉପରେ ନିର୍ଭର କରିହିଁ ସେ ସିଦ୍ଧାନ୍ତରେ ଉପନୀତ ହୋଇଥାଏ । ତାର ନିଜର ବ୍ୟକ୍ତିଗତ ଅଭିରୁଚି ବୋଲି କିଛି ନାହିଁ । ସେ ଯଦି ନିଜର ବ୍ୟକ୍ତିଗତ ଅଭିରୁଚିକୁ ପ୍ରାଧାନ୍ୟ ଦେବାକୁ ଯାଇ ଐତିହାସିକ ସତ୍ୟକୁ ବାଆଁରେଇଆ କରେ ବା ବିକୃତ କରେ, ତେବେ ସେ ନିଜର କ୍ଷତି ସାଧନ କରିବା ସଙ୍ଗେ ସଙ୍ଗେ ମହାନ କବିଙ୍କର ମଧ୍ୟ ଅଲକ୍ଷ୍ୟରେ କ୍ଷତିସାଧନ କରେ । ଦୁଃଖର କଥା ଆମ ଓଡ଼ିଶାରେ ଏଭଳି ଉଦ୍ୟମର ଅଭାବ ନାହିଁ । ଅନେକେ ଉପେନ୍ଦ୍ର ଭଞ୍ଜଙ୍କୁ, ସାରଳା ଦାସଙ୍କୁ ଏବଂ ଅନ୍ୟାନ୍ୟ କବିଙ୍କୁ ଅତିରଞ୍ଜିତ କରି ବା ତାଙ୍କ ସମ୍ବନ୍ଧରେ ସତ୍ୟର ଅପଲାପ କରି ଯେପରି ଅଜ୍ଞାତସାରରେ ସେଇ ମହାକବିମାନଙ୍କୁ ହାସ୍ୟାସ୍ପଦ କରାଉଛନ୍ତି, କବି ଜୟଦେବଙ୍କ ସମ୍ପର୍କରେ ସେପରି ନ ହେଉ, ଏହାହିଁ ଆମର ଐକାନ୍ତିକ କାମନା ।

---

## ।। ତ୍ରୟୋଦଶ ଅଧିକରଣ ।।

# ସାରଳା-ଯୁଗ

### ଓଡ଼ିଆ ଭାଷା-ସାହିତ୍ୟର ଜନ୍ମ

ସାରଳା ଦାସଙ୍କ କାଳରୁ ଓଡ଼ିଆ ଭାଷା-ସାହିତ୍ୟର ଦୃଷ୍ଟାନ୍ତ ନଜରକୁ ଆସେ । ଏଥି ପୂର୍ବରୁ କେତେକ ଗଙ୍ଗବଂଶୀୟ ଏବଂ ଅନ୍ୟାନ୍ୟ ରାଜାମାନଙ୍କର ଅଭିଲେଖରୁ ଓଡ଼ିଆ ଭାଷାର ନିଦର୍ଶନ ପାଇଥାଉଁ । ମାତ୍ର ସୁଧିବଦ୍ଧ ସାହିତ୍ୟ-କୃତି ଭାବରେ ସାରଳା ମହାଭାରତ ହିଁ ପ୍ରଥମ ଓଡ଼ିଆ ସାହିତ୍ୟ ରୂପେ ଦୃଷ୍ଟିକୁ ଆସେ । ଓଡ଼ିଆ ଲିପି ମଧ୍ୟ ଏତେବେଳକୁ ପୂର୍ଣ୍ଣ ବିକାଶ ଲାଭ କରିଥିଲା, ଯାହା କପିଳେନ୍ଦ୍ର-ଦେବଙ୍କ ଦ୍ୱାରା ଉତ୍କୀର୍ଣ୍ଣ ସିଂହାଚଳମ ନୃସିଂହନାଥ ମନ୍ଦିର ସଲଗ୍ନ ଓଡ଼ିଆ ଶିଳା-ଲେଖରୁ ଜଣାପଡ଼େ । ଏଇ ସମୟରୁ ସଂସ୍କୃତରେ ଲେଖାଯାଇଥିବା ପୁରାଣଗୁଡ଼ିକ ଓଡ଼ିଆ ପ୍ରାକୃତରେ ରଚିତହୁଏ । ସାରଳା ଦାସଙ୍କ ମହାଭାରତ, ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ, ଏବଂ ବଳରାମ ଦାସଙ୍କ ଜଗମୋହନ ରାମାୟଣ ଏବଂ ଜଗନ୍ନାଥ ଦାସଙ୍କ ଭାଗବତ ସାରଳା ଯୁଗର ବିଶିଷ୍ଟ ଅବଦାନ । ସାରଳା ଦାସ ଯେ ଓଡ଼ିଆ ଭାଷା-ସାହିତ୍ୟର ପ୍ରାଣ-ପ୍ରତିଷ୍ଠାତା ଏଥିରେ କୌଣସି ସନ୍ଦେହ ନାଇ । ସେ ଓଡ଼ିଶାରେ ସୂର୍ଯ୍ୟବଂଶର ସ୍ଥାପୟିତା ସମ୍ରାଟ କପିଳେନ୍ଦ୍ର ଦେବଙ୍କର (ଖ୍ରୀ. ୧୪୩୫-୬୭) ସମସାମୟିକ ଥିଲେ ବୋଲି ତାଙ୍କ ମହାଭାରତରେ ହିଁ ଉଲ୍ଲେଖ କରି ଯାଇଛନ୍ତି ।

ସାରଳା ଦାସଙ୍କ ପୂର୍ବରୁ ଓଡ଼ିଆ ଭାଷାରେ ବତ୍ସା ଦାସ ବା ବଚ୍ଛ ଦାସଙ୍କ 'କଳସା ଚଉତିଶା' ଥିଲା ବୋଲି ସ୍ୱର୍ଗତ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଏବଂ ଅନ୍ୟମାନେ କହନ୍ତି । ସାରଳା ମହାଭାରତରେ ଥିବା

ବେଦମନ୍ତ୍ର ଯୁଗତେ ସେ ପଢ଼ନ୍ତି ଯେ କଳସା
ବଶିଷ୍ଠ ମାରକଣ୍ଡ ଆବର ଦୁର୍ବାସା ।"

ପଢ଼ି ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀ-ପ୍ରକାଶିତ "ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ"ର ଇଂରାଜୀ ଭୂମିକାରେ ଏହାକୁ ବଚ୍ଛ ଦାସଙ୍କ "କଳସା ଚଉତିଶା" ବୋଲି ଧରି ନେଇ ତହିଁର ରଚନା କାଳ ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀ ବୋଲି ଅନୁମାନ କରିଛନ୍ତି । ସେ କଳସାକୁ ନାମବାଚକ ବିଶେଷ୍ୟରୂପେ ଗ୍ରହଣ କରିଛନ୍ତି ।

ଅନ୍ୟମାନେ ତାଂକର ମତ ଅନୁସରଣ କରିଛନ୍ତି । କିଂତୁ ପୂର୍ବ ଉଦ୍ଧୃତିରୁ ଯେପରି

**କଳସା ଚଉତିଶା**

ଜଣାଯାଏ ସାରଳା ଦାସ ମଂଗଳଗୀତ ଅର୍ଥରେ ହିଁ 'କଳସା' ଶବ୍ଦ ବ୍ୟବହାର କରିଛନ୍ତି, କୌଣସି ନିର୍ଦ୍ଦିଷ୍ଟ ରଚନାକୁ ଲକ୍ଷ୍ୟ କରି ନୁହେଁ । ତା'ନ ହେଲେ ସେ ବଶିଷ୍ଠ, ମାର୍କଂଡେୟ, ଦୁର୍ବାସା ପ୍ରଭୃତି ସୁପ୍ରାଚୀନ ଯୁଗର ଋଷିମାନେ ଅର୍ବାଚୀନ ରଚନା "କଳସା" ପଢ଼ିବା କଥା କାହିଁକି ଲେଖନ୍ତେ ? ତା' ପରେ 'କଳସା'ର ଅର୍ଥ ମଧ୍ୟ ମଧୁର ଗୀତ (କଲ୍ = ମଧୁର ଧ୍ୱନି + ଶୋ = ତୀକ୍ଷ୍ଣ କରିବା + ଅ) ବା ଗାୟନୋପଯୋଗୀ ପଦ । *ଖାଲି ସାରଳା ଦାସ ନୁହେଁ, ବଳରାମ ଦାସ ମଧ୍ୟ ତାଂକ ଦାଂଡି ରାମାୟଣରେ 'କଳସା' ଶବ୍ଦ ବ୍ୟବହାର କରିଛନ୍ତି, ଯଥା :—

"କଳସା ରାଗେ ଗୀତ ଗାବନ୍ତି ସଂଜାବଳି ।
କଳାଣି ସବୁ ସୁଭାଇ ସାହେର ଉଛୁଳ ।"

ଭାଷାଗତ ବିବର୍ତ୍ତନର କ୍ରମ ବିଚାରରୁ 'କଳସା ଚଉତିଶା' କୁ ସାରଳା ଦାସଂକଠାରୁ ପ୍ରାଚୀନତର କହି ହେବ ନାଇ । କାରଣ ଷୋଡ଼ଶ ଶତାବ୍ଦୀ ଶେଷ ପର୍ଯ୍ୟଂତ ଓଡ଼ିଆରେ ଦ୍ୱିତୀୟା ବିଭକ୍ତିରେ 'କଇ' ଓ 'କହି' ଏବଂ ଦ୍ୱିତୀୟା ବିଭକ୍ତି

**ଭାଷା-ଲକ୍ଷଣ**

ବହୁବଚନରେ 'ନ୍ତି' ପ୍ରତ୍ୟୟ ଚଳୁଥିଲା । ଦ୍ୱିତୀୟା ଓ ଚତୁର୍ଥୀ ଏକବଚନରେ 'କଇ' ପ୍ରୟୋଗର ଉଦାହରଣ :—ଲଂକାକଇ, ମଂଚକଇ, ଅଂଭକଇ (ବଳରାମ ଦାସ) । ଚତୁର୍ଥୀ ବହୁବଚନରେ 'ନ୍ତି' ପ୍ରୟୋଗର ଉଦାହରଣ —'ବୃକ୍ଷାଂତ କଟାଇଲି' (ସାରଳା ଦାସ) 'ଅଂଭଂତ ଅପୂର୍ବ ସେ ଯେ ହୋଇଲା ଗୋସାଇଁ' (ବ. ଦାସ) 'ପରଜାଂତ ପାଳିବୁ ତୁ ଅତି ଯତ୍ନ କରି' (ବଳରାମ ଦାସ) । ସେଇପରି ପ୍ରାକୃତ ଭଳିର ଷଷ୍ଠୀ ଓ ଚତୁର୍ଥୀ ବିଭକ୍ତି ମଧ୍ୟରେ ଅଭେଦ ଓଡ଼ିଆରେ ବ୍ୟବହୃତ ହେଉଥିଲା —'ଗାବଂତି', 'ପାବଂତି' 'କରାବଂତି', 'ଲଗାବଂତେ' ଇତ୍ୟାଦି । କ୍ରିୟା ରୂପରେ 'ଅ' ସ୍ଥଳରେ 'ବ'ର ବ୍ୟବହାର ସେ ଯାଏ ଅବର୍ଗୀୟ 'ବ'ର ଉଚ୍ଚାରଣ ଓଡ଼ିଆରେ ଥିଲା ବୋଲି ସୂଚିତ କରେ । ଚଳିଇ, କହିଲଇ, ହୋଇଲଇ, ଆଦି କ୍ରିୟାରୂପରେ ପ୍ରାଂତ ଇ-କାର ମାତ୍ରା ସ୍ଥଳେ 'ଇ' ର ପ୍ରୟୋଗ ତଥା 'ହି', 'ଇ', 'ସେ', ଆଦି 'ନିଶ୍ଚିତାର୍ଥକ ବା ନିରର୍ଥକ ପ୍ରତ୍ୟୟ' ସେ ଯୁଗୀୟ ରଚନାରେ ବେଶ୍ ଥିଲା ।

ଅନ୍ୟ କେତେକ ବିଶେଷତ୍ୱ ହେଉଛି ସ୍ୱାର୍ଥ ଅର୍ଥରେ କ୍ରିୟାରେ 'କ' 'ସି' ର ପ୍ରୟୋଗ ଯଥା କରିବାକ, ଶୁଣସି । ('ଭୋ ଜଗମୋହନ କରିବାକ ମୋତେ ରକ୍ଷା' – (ବଳରାମ ଦାସ), "ଆବର କଥାଏ ତୁହି ଶୁଣସି ରାଜନ" (ବଳରାମ ଦାସ) ।

* 'ଝଂକାର,-' ୧୯୬୮, ଫେବୃଆରୀ ସଂଖ୍ୟା ସଚ୍ଚିଦାନଂଦ ମିଶ୍ରଂକ ପ୍ରବଂଧ ଦେଖନ୍ତୁ

କ୍ରିୟାରେ ନିମିତ୍ତାର୍ଥେ 'ତେ' ଓ 'ତ'ର ପ୍ରୟୋଗ । 'ରାମ ଲକ୍ଷଣ ଗୁଡ଼ିକତେ ତା ମନ ନ ଗଲା ।' (ବି ଦାସ), 'ରାମାୟଣ ଚରିତ କହିତ ମୋର ଇଚ୍ଛା' (ବ. ଦାସ) । ପ୍ରଥମ ବିଭକ୍ତି ବହୁବଚନରେ 'ଏ' ର ପ୍ରୟୋଗ ଯଥା : ଦେବତାଏ, ପ୍ରଜାଏ । ମାତ୍ର 'କଳସା ଚଉତିଶା'ରେ ଏ ସବୁର ଅଧିକାଂଶ ନଥିବା ଦୃଷ୍ଟିରୁ ତାହାର କାଳ ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧ ପୂର୍ବର ନୁହେଁ ବୋଲି କହିବା ଯୁକ୍ତିଯୁକ୍ତ ହେବ । ତା' ପରେ ଅନ୍ୟ ଏକ ବଳିଷ୍ଠ ଯୁକ୍ତି ହେଉଛି, 'ସାହିତ୍ୟିକ ଆଂଗିକ ଦୃଷ୍ଟିରୁ 'କଳସା' ଏକ ଉନ୍ନତ ସୃଷ୍ଟି ଯାହା ବର୍ଣ୍ଣମାଳାନୁକ୍ରମରେ ନିର୍ଦ୍ଦିଷ୍ଟ ସଂଖ୍ୟକ ପଦକୁ ନେଇ ରଚିତ । ତେଣୁ କଳସାର ଛାଂଦାଶ୍ରିତ ରଚନା ସାରଳାଂକ 'ଦାଂଡି' ପୂର୍ବରୁ ଚଳୁଥିଲା ବୋଲି କହିଲେ ଓଡ଼ିଆରେ ଦାଂଡିବୃତ୍ତର ଆବିର୍ଭାବ କାହିଁକି ହେଲା ତାହା ବୁଝି ହେବ ନାଇ । କିନ୍ତୁ ଦାଂଡିକୁ ଓଡ଼ିଆ ଛାଂଦର ପୂର୍ବାବସ୍ଥା ବୋଲି ଧରିଲେ ଯାଇ ଓଡ଼ିଆ ରଚନା ମଧ୍ୟକୁ ଛାଂଦ କିଭଳି ଚେଙ୍କକୁ ଚେଙ୍କ ହୋଇ ପଶିଛି ତାହା ବୁଝି ହେବ ।' (ଏକ୍ସ) ଆଲୋଚକମାନେ କହଂତି ସାରଳା ଦାସ କେବଳ ଠାଏ କଳସା ଶବ୍ଦ ବ୍ୟବହାର କରିଛଂତି । କିଂତୁ ଶ୍ରୀ ସଚ୍ଚିଦାନଂଦ ମିଶ୍ରଂକ ନିକଟରେ ଥିବା ସାରଳା ମହାଭାରତ ପୋଥିରେ ଏ ଶବ୍ଦଟିର ଦୁଇଥର ପ୍ରୟୋଗ ହୋଇଛି ବୋଲି ସେ କହଂତି । ମଧ୍ୟ-ପର୍ବରେ ଶାଂବ-ଚଂଦ୍ରାବତୀ ବିବାହ ପ୍ରସଂଗରେ :—

"ବେଦ ମଂତ୍ରରେ ପଢ଼ିଲେ କଳସା
ବଶିଷ୍ଠ ମାର୍କଂଡେୟ ଅଛଂତି ଦୁର୍ବାସା ।
ଆବର ଯେତେ ଥିଲେ ଯତ ମହାମୁନି
ଚାରି ମଂତ୍ରି ବେଦ ବ୍ରହ୍ମାର ତପୋଧନି ।
ଏ କଳସା ଚାରି ବର୍ଗରେ ପଢ଼ିଲେ ତପୋଚାରି ।
ଉତ୍ସବ ବଢ଼ିଲା କୁମାର କୁମାରୀ ।"

ଏ ବିଷୟରେ ବିସ୍ତୃତ ଆଲୋଚନା 'ଦିଗଂତ' (ନୂଆ ପ୍ରସ୍ଥ) ୧୯୬୮, ଫେବୃଆରୀ ସଂଖ୍ୟାରେ କରାଯାଇଥିଲା । ଶ୍ରୀ ବଂଶୀଧର ମହାଂତି 'କଳସା'ର ମୂଳ ଖୋଜିବାକୁ ଯାଇ ପ୍ରାକୃତ ଛଂଦଗ୍ରଂଥର କଳସା ଛଂଦ ଓଡ଼ିଆରେ କଳସା ରାଗ ହେବା ଅନୁମାନ କରଂତି । କଳସା ଚଉତିଶାର ବୃତ୍ତକୁ କେଉଁଠି କେଉଁଠି କଳସା ରାଗ ବା ବାଣୀ ବା ଦଶା ବୋଲି ଉଲ୍ଲେଖ କରାଯାଇଛି । କେଉଁଠି କେଉଁଠି ପୁଣି ମଂଗଳ ରାଗ ବା ବାଣୀ ବା ଦଶା ବୋଲି ଲେଖା ଯାଇଛି । ଅକ୍ଷର ସଂଖ୍ୟା, ଯତି, ସ୍ଥାନ ଏବଂ ପାଦ ସଂଖ୍ୟା ଦୃଷ୍ଟିରୁ ମଂଗଳ ଓ କଳସା ରାଗ ମଧ୍ୟରେ କୌଣସି ପାର୍ଥକ୍ୟ

ନାଇ । ବଳରାମ ଦାସ ଏଇ କଳସା ଟିଗ କଥା ତାଂକ ଗ୍ରମାୟଣରେ ଲେଖି ଯାଇଛଂନ୍ତି, ପୂର୍ବୋଲ୍ଲିଖିତ ପଦରେ ।*

"ରୁଦ୍ର ସୁଧାନିଧି" ସାରଳା ଦାସଂକ ପୂର୍ବବର୍ତ୍ତୀ ରଚନା ବୋଲି କେହି କେହି କହଂନ୍ତି । ମାତ୍ର ତାହା ଠିକ୍ ନୁହେ । ରୁଦ୍ର ସୁଧାନିଧି'ରେ ଗଦ୍ୟ-ପଦ୍ୟର ଯେଉଁ ସମିଶ୍ରଣ ଦେଖାଯାଏ ତାହା ଓଡ଼ିଆ ଗଦ୍ୟ ଜନ୍ମହେବାର ପ୍ରାକ୍‌କାଳ । ଏଥିରେ ଦ୍ୱିତୀୟା ବିଭକ୍ତିରେ 'କଇ' 'କହି' ଓ ବହୁବଚନରେ 'ନ୍ତ' ପ୍ରତ୍ୟୟ ନ ଥିବାରୁ ଏହା ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧ ପରର ରଚନା ବୋଲି କହିବା ସଂଗତ ହେବ । ଶ୍ରୀ ଅର୍ତ୍ତବଲ୍ଲଭ ମହାଂନ୍ତି ଏହାକୁ ସପ୍ତଦଶ ଶତାବ୍ଦୀ ବା ତତ୍ପୂର୍ବର ରଚନା ବୋଲି ପ୍ରାଚୀନ ଗଦ୍ୟପଦ୍ୟାଦର୍ଶରେ ଉଲ୍ଲେଖ କରିଛଂନ୍ତି ।

ରୁଦ୍ର-ସୁଧାନିଧି

ତଥାପି ଆର୍ତ୍ତବାବୁ ଏ ଗ୍ରଂଥର ପ୍ରଣେତା ଅବଧୂତ ସ୍ୱାମୀ ପ୍ରାକ୍-ସାରଳା ଯୁଗର କବି ଅର୍ଥାତ୍ 'ତ୍ରୟୋଦଶ-ଚତୁର୍ଦ୍ଦଶ ଶତାବ୍ଦୀର କବି ହୋଇ ପାରିଥାଂନ୍ତି' ବୋଲି ସଂଦେହରେ ପଡ଼ିଛଂନ୍ତି ଏବଂ ସେ ସଂଦେହ ମଧ୍ୟ ପ୍ରକାଶ କରିଛଂନ୍ତି ।

ଏଠାରେ ମନେରଖିବାକୁ ହେବ ଯେ ସମସ୍ତ ଭାରତୀୟ ଭାଷା-ସାହିତ୍ୟ-ମାନଂକର ଜନ୍ମ ତ୍ରୟୋଦଶ ଶତାବ୍ଦୀ ପରେ ହିଁ ହୋଇଥିଲା ବୋଲି ଭାଷାବିଜ୍ଞାନୀ-ମାନେ ସ୍ଥିର କରିଛଂନ୍ତି । ଏ ସର୍ବସମ୍ମତ ସତ୍ୟକୁ ଓଡ଼ିଶାରେ ଅସ୍ୱୀକାର କରିବାର କୌଣସି କାରଣ ଆମେ ଦେଖୁନାହିଁ । ପ୍ରତ୍ୟେକ ଭାଷା-ସାହିତ୍ୟରେ ପ୍ରଥମେ ପଦ୍ୟର ଜନ୍ମ ଏବଂ ତା'ର ବହୁ ପରେ ଗଦ୍ୟର ଜନ୍ମ । ପଦ୍ୟ ପୂର୍ବରୁ ଗଦ୍ୟର ଆବିର୍ଭାବ କଳ୍ପନା କରିବା ସଂପୂର୍ଣ୍ଣ ଅଯୌକ୍ତିକ କଥା । ମନେ ରଖିବାର ସୁବିଧା ପାଇଁହିଁ ସମସ୍ତ ସାହିତ୍ୟ ଏବଂ ଏପରିକି କୃଷିବିଦ୍ୟା, ଜ୍ୟୋତିଷବିଦ୍ୟା, ଚିକିତ୍ସାବିଦ୍ୟା ଏବଂ ଅଂକ ସୂତ୍ରମାନ ମଧ୍ୟ ପଦ୍ୟରେ ଲିଖିତ ହେଉଥିଲା । ପରେ ଧୀରେ ଧୀରେ ଗଦ୍ୟର ପ୍ରଚଳନ ଆରଂଭ ହେଲା ।

ଭାଷା-ବିଜ୍ଞାନର ସୂତ୍ର

ମାତ୍ର ଆଶ୍ଚର୍ଯ୍ୟର କଥା ଓଡ଼ିଶାରେ ଅନେକ ଗବେଷକ ଭାଷାତତ୍ତ୍ୱର ଏ ମୌଳିକ ସୂତ୍ର ଭୁଲି ନାନା ପ୍ରକାର ଅବାସ୍ତବ କଥା ତଥା ଭ୍ରାନ୍ତ ମତ ଓ ତଥ୍ୟର ଅବତାରଣା

* "ଝଙ୍କାର" ପତ୍ରିକା, ୧୯୬୮ ଫେବୃଆରୀ ସଂଖ୍ୟାରେ ଶ୍ରୀ ସଚ୍ଚିଦାନଂଦ ମିଶ୍ରଂକ "ସାରଳା ଦାସଂକ କଳସା" ପ୍ରବଂଧ ଦ୍ରଷ୍ଟବ୍ୟ ।

କରିଥାଂନ୍ତି । କିଏ ମାଦଳାପାଂଜି ଭଳି ଓଡ଼ିଆ ଗଦ୍ୟ ରଚନା ଚୋଡ଼ଗଂଗଦେବଂକ-ଠାରୁ (ପ୍ରାୟ ୧୦୭୭-୧୧୪୭ ଶତାବ୍ଦୀରୁ) ଲିଖିତ ହୋଇ ଆସୁଚି ବୋଲି ନିଜ ପ୍ରଣୀତ ଇଂରାଜି ସାହିତ୍ୟ-ଇତିହାସରେ କହିଲେଣି ତ ଅନ୍ୟ କିଏ ନବମ-ଦଶମ ଶତକର ଓଡ଼ିଆ ପଦ୍ୟର ନମୁନା ସ୍ୱରୂପ ଶିଶୁବେଦ ପରିବେଷଣ କଲେଣି । ଏମାନଂକର ଗବେଷଣାର ଦୌଡ଼ ଦେଖିଲେ ହାସ୍ୟସଂବରଣ କରିହୁଏ ନାଇ । ଡଃ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ ଭୂମିକାରେ କହିଛଂନ୍ତି ଯେ ମାଦଳାପାଂଜି ଯଯାତିକେଶରୀଂକ ସମୟରୁ (ଅଂଦାଜ ୭୧୫ ୮୪୦) ଲିଖିତ ହୋଇ ଆସୁଚି । ମାଦଳା ପାଂଜିର ଓଡ଼ିଆ ଗଦ୍ୟ ବାକ୍ୟବିନ୍ୟାସ (syntax) ଓ ସ୍ୱାରୂପ ସମସ୍ତ ଦେଖିଲେ ଏହା ଯେ ଖୁବ୍ ବେଶୀ ହେଲେ ମୋଗଲ୍ ଅମଲରୁ ପ୍ରାଚୀନତର ନୁହେ ଏ ବିଷୟରେ ନିଃସଂଦେହ ହେବାକୁ ପଡ଼େ । ଡଃ ହ. କୃ. ମହତାବ୍ ମଧ୍ୟ ତାଂକ ଇତିହାସରେ ଅନୁରୂପ ମତ ପୋଷଣ କରଂନ୍ତି । ଦିଲ୍ଲୀର ବାଦଶାହାମାନଂକ ନିକଟରେ ଏବଂ ପରେ ଇଷ୍ଟ ଇଂଡିଆ କୋଂପାନୀ ନିକଟରେ ପୁରୀ ମଂନ୍ଦିର ଉପରେ ନିଜର ବଂଶଗତ ଦାବୀ ଓ ଅଧିକାର ସାବ୍ୟସ୍ତ କରିବା ଉଦ୍ଦେଶ୍ୟରେ ଏହା ଭୋଇବଂଶ ରାଜାମାନଂକ ଇଂଗିତରେ ଲିଖିତ ହୋଇ ଆସୁଚି ବୋଲି ଏବେ ଜଣା ପଡ଼ିଲେଣି । ଏହାର ଭାଷା ଏଭଳି ଅର୍ବାଚୀନ ଯେ ଏହାର ବୟସ କୌଣସି ଭାଷାତତ୍ତ୍ୱବିତ୍‌ର ଆଖିକୁ ଫାଂକି ଦେଇ ପାରିବ ନାଇ ।

ଅଦ୍‌ଭୁତ ତଥ୍ୟ

ଅବଶ୍ୟ ଏକଥା ସତ ଯେ ଆମେ ଗଂଗବଂଶୀୟ ରାଜାମାନଂକ ଅଭିଲେଖରେ କେତେବେଳେ କମିତି ଓଡ଼ିଆ ଭାଷାର ଅସ୍ତିତ୍ୱ ଦେଖିଥିଲୁଁ । ମାତ୍ର କୋଣାର୍କ ମଂନ୍ଦିର ଶିଳାଲେଖଟି ସହ ଅଧିକାଂଶ ଅଭିଲେଖର ଲିପି ପ୍ରତ୍ନ-ବଂଗଳା । ଆନ୍ଧ୍ର ପ୍ରଦେଶର ସୀମାଚଳମଠାରେ ଥିବା ନୃସିଂହନାଥ ମଂନ୍ଦିରରେ ଖୋଦିତ କପିଳେଂନ୍ଦ୍ରଦେବଂକ ଶିଳାଲେଖଟିହିଁ ପୂର୍ଣାଂଗ ଓଡ଼ିଆ ଲିପି ଏବଂ ଓଡ଼ିଆ ଭାଷାରେ ରଚିତ । ଏଭଳି ସୁସ୍ପଷ୍ଟ ଓଡ଼ିଆ ଲିପି ଏଥିପୂର୍ବରୁ ଦେଖି ନଥିଲୁଁ । ('ଝଂକାର' (ନୂଆପ୍ରସ୍ଥ), ୧୯୭୭, ଫେବୃଆରୀ ସଂଖ୍ୟାରେ ଡଃ କୁଂଜବିହାରୀ ତ୍ରିପାଠୀଂକ ଦ୍ୱାରା ଲିଖିତ ପ୍ରବଂଧରେ ଏଇ ଲିପିର ପାଠୋଦ୍ଧାର ଓ ଫଟୋଚିତ୍ର ଦ୍ରଷ୍ଟବ୍ୟ ।)

## ଓଡ଼ିଆ ଭାଷା ଓ ଲିପିର ଐତିହ୍ୟ

ଏଇ ଅବସରରେ ଓଡ଼ିଆ ଭାଷା ତଥା ଲିପିର ଐତିହ୍ୟ ସଂବଂଧରେ ଟିକିଏ ସୂଚନା ଦେବା ଅପ୍ରାସଂଗିକ ହେବ ନାଇ । ଖ୍ରୀଷ୍ଟୀୟ ପ୍ରଥମ ଶତକର ଭରତ ମୁନିଂକ

"ନାଟ୍ୟଶାସ୍ତ୍ର"ରେ ଉଡ୍ର ବିଭାଷାର ନାମ ମିଳେ । ଏହି ଗ୍ରଂଥରେ ବିଭିନ୍ନ ନାଟକୀୟ ରୀତି ବର୍ଣ୍ଣନା ପ୍ରସଙ୍ଗରେ ଭରତମୁନି "ଓଡ୍ର-ମାଗଧୀ" ପ୍ରବୃତ୍ତିର ଉଲ୍ଲେଖ କରିଛଂତି, ଯାହା ମଧ୍ୟରେ ଓଡ୍ର, ବଂଗ, ପୌଂଡ୍ର, ଏବଂ ନେପାଳ ଅଂତର୍ଗତ ଥିଲା । ମାତ୍ର ପରବର୍ତ୍ତୀ କାଳରେ ରଚିତ ଗ୍ରଂଥମାନଂକରେ ଓଡ଼ିଆ ଭାଷା ବା ଓଡ଼ିଆ ରୀତି ସଂବଂଧରେ ବିଶେଷ କିଛି ଉଲ୍ଲେଖ ଦେଖାଯାଏ ନାହିଁ । ସପ୍ତମ ଶତକର ପ୍ରଥମାର୍ଦ୍ଧରେ ହର୍ଷଚରିତ-ଗ୍ରଂଥର ମୁଖବଂଧରେ ବାଣଭଟ୍ଟ ସମସାମୟିକ ଭାରତବର୍ଷରେ ପ୍ରଚଳିତ ସାହିତ୍ୟ-ରୀତିର ବର୍ଣ୍ଣନା ପ୍ରସଙ୍ଗରେ ଉତ୍ତର ଭାରତ ଓ ଦକ୍ଷିଣ ଭାରତର ରୀତି ଏବଂ ଗୌଡ଼ୀ-ରୀତିର ଉଲ୍ଲେଖ କରିଛଂତି, ଓଡ଼ିଆ ଭାଷା ବା ସାହିତ୍ୟ-ରୀତି ସଂବଂଧରେ କିଛି କହି ନାହାଂତି । ପ୍ରାକ୍-ଆର୍ଯ୍ୟ ପ୍ରାଚ୍ୟ-ଭାରତୀୟ ନରନାରୀଙ୍କ ସର୍ବପ୍ରାଚୀନ ଭାଷା ଥିଲି ପ୍ରଧାନତଃ ଅଷ୍ଟ୍ରିକଗୋଷ୍ଠୀର ଭାଷା—ଯାହାର ଘନିଷ୍ଠତମ ଆତ୍ମୀୟତା ଥିଲା ମନ୍-ଖ୍ମେର୍ ଭାଷା-ପରିବାର ସଂଗେ । ଏହି ଭାଷା ଉପରେ ଏକ ସ୍ତର ରଚନା କରିଥିଲା ଦ୍ରାବିଡ଼ ଭାଷା-ପରିବାରର ସ୍ରୋତ । ତେଣୁ ଅବୈଦିକ ପ୍ରାଚ୍ୟ-ଭାରତୀୟ ଆର୍ଯ୍ୟଗୋଷ୍ଠୀର ଭାଷା ଉପରେ ଅଷ୍ଟ୍ରିକ-ଦ୍ରବିଡ଼ ଭାଷା-ସ୍ରୋତର ପ୍ରଭାବ ଅନସ୍ୱୀକାର୍ଯ୍ୟ । ଏହି କାରଣରୁ ଉତ୍ତର ଭାରତର ବୈଦିକ ଆର୍ଯ୍ୟଗୋଷ୍ଠୀ ଏହି ଆଲପଜୀୟ ପ୍ରାଚ୍ୟ ଆର୍ଯ୍ୟଗୋଷ୍ଠୀକୁ ସୁନଜରରେ ଦେଖୁନଥିଲେ, ଏହା ପୂର୍ବେ କହିଛୁଁ ।

ପ୍ରାଚ୍ୟ-ପ୍ରାକୃତ ବ୍ୟାକରଣକାର ଶ୍ରୀରାମ ଶାସ୍ତ୍ରୀ ତର୍କବାଗୀଶ ତାଂକର ଅତି ପ୍ରାଚୀନ "ପ୍ରାକୃତ କଳ୍ପତରୁ" ଗ୍ରଂଥରେ ଶାକାରିକା, ଚ୍ଛଂଡାଳିକା, ଶାବରୀ, ଆଭୀରିକା,ଦ୍ରାବିଡ଼ିକା, ବନୌକସୀ, ମାଂଡୁରିକା, ଓ ଟାକ୍କୀ ଔଡ୍ରୀ ବିଭାଷା ସଂଗେ ଉତ୍କଳୀ ଭାଷାକୁ ମାଗଧୀ ବା ପ୍ରାଚ୍ୟ-ପ୍ରାକୃତ ଅଂତର୍ଭୁକ୍ତ କରିଛଂତି । ଓଡ଼ିଶାର ପଣ୍ଡିତ ମାର୍କଂଡେୟ କବୀନ୍ଦ୍ର (୧୫୬୦-୬୮, ମୁକୁଂଦଦେବଂକ ସମସାମୟିକ) "ପ୍ରାକୃତ-ସର୍ବସ୍ୱ" ଗ୍ରଂଥରେ କହିଂଛି "ଶାବର୍ଯ୍ୟା ମେ ବୌଡ୍ରୀ ଯୋଗାଭଦେଶ୍ୟ ଶୌରସେନ୍ୟାଦେଃ ।" ଅର୍ଥାତ୍ ଉଡ୍ର ଓ ଶୁରସେନ ଦେଶୀୟ ଶବ୍ଦ ସହିତ ଶାବରୀର ସଂଯୋଗରେ ଔଡ୍ରୀ ବିଭାଷାର ସୃଷ୍ଟି । ଅନ୍ୟତ୍ର ଶାବରୀ ବିଭାଷା ଓ ଔଡ୍ରୀ ବିଭାଷା ପ୍ରାୟ ଏକ ବୋଲି ସେ ଔଡ୍ରୀକୁ ବିଭାଷା ବୋଲି ଧରି ନାହାଂତି । (ପରମାନଂଦ ଆଚାର୍ଯ୍ୟ – ସହକାର, ୧୯୪୩)

ଓଡ଼ିଆ ଭାଷା କପିଳେନ୍ଦ୍ର ଦେବଂକ ସମୟକୁ ଭାଷା-ସାହିତ୍ୟର ମର୍ଯ୍ୟାଦା ଲାଭ କରି ସାରିଥିଲା । କପିଳେନ୍ଦ୍ର ଦେବ ସ୍ୱରଚିତ "ପରଶୁରାମବିଜୟ" ନାମକ ସଂସ୍କୃତ ନାଟକରେ ଏକ ଓଡ଼ିଆ ଭାଷାରେ ରଚିତ ସଂଗୀତ ସନ୍ନିବେଶିତ କରି ଓଡ଼ିଆ ଭାଷାକୁ ରାଜକୀୟ ସ୍ୱୀକୃତି ଓ ସମ୍ମାନ ଦେଇଥିଲେ ।

## ଓଡ଼ିଆ ବର୍ଣ୍ଣମାଳା

ମୌର୍ଯ୍ୟ-ଯୁଗର ଅଶୋକଙ୍କ (ଖ୍ରୀ: ପୂ; ୩୦୦) ଅନୁଶାସନଗୁଡ଼ିକ ବ୍ରାହ୍ମୀ-ଓଡ଼ିଆଲିପିର ବର୍ଣ୍ଣମାଳାରେ ଖୋଦିତ । ଏହି ବ୍ରାହ୍ମୀ-ବର୍ଣ୍ଣମାଳାର ଜନ୍ମ ଓ କ୍ରମବିକାଶ ଖ୍ରୀଷ୍ଟପୂର୍ବ ୧୦୦୦ ଶତାବ୍ଦୀରେ ବୋଲି ବଯ୍ସ୍ଟଲ୍ ଡ୍ରଭିଡ଼ଙ୍କ ମତ । ସମ୍ବଲପୁର ଅଞ୍ଚଳ ସମେତ ଏକ ବିଶାଳ ପ୍ରଦେଶରେ ଦ୍ରାବିଡ଼ ଜାତି ବସତି ସ୍ଥାପନ କରି ରହିଥିଲେ ଏବଂ ସେମାନଙ୍କର ପ୍ରବର୍ତ୍ତିତ "ଚିତ୍ରଲିପି" ସେଠାରେ ପ୍ରଚଳିତ ଥିଲା । ଏହି "ଚିତ୍ରଲିପି" ଅତି ପ୍ରାଚୀନ ଥିଲା । ଏହି "ଚିତ୍ରଲିପି'ର ସୈନ୍ଧବ ଉପତ୍ୟକାର ଦ୍ରାବିଡ଼-ଅଧ୍ୟୁଷିତ ଅଞ୍ଚଳର ଚିତ୍ରଲିପି ସହିତ ସୌସାଦୃଶ୍ୟ ରହିଛି । ସୈନ୍ଧବ ଚିତ୍ରଲିପି ଏବଂ ବ୍ରାହ୍ମୀ ଅକ୍ଷରମାଳା ମଧ୍ୟରେ କିଛି ସମ୍ବନ୍ଧ ଅଛି କି ନାହିଁ ତାହା ଏ ପର୍ଯ୍ୟନ୍ତ ଅସ୍ପଷ୍ଟ ରହିଥିଲେ ମଧ୍ୟ ଅଧ୍ୟାପକ ଡଃ ଲ୍ୟାଙ୍ଗଡନଙ୍କ (Dr. Langdon) ମତରେ ଅଶୋକଙ୍କ ଧର୍ମ-ଲିପିରେ ଯେଉଁ ବ୍ରାହ୍ମୀ ଅକ୍ଷର ବ୍ୟବହୃତ, ସେଥିରୁ ୧୯ଟି ଅକ୍ଷର ସଙ୍ଗେ ସୈନ୍ଧବ ଲିପିର ସାମଞ୍ଜସ୍ୟ ରହିଛି । * ଡଃ ବ୍ୟୁହ୍ଲର (Dr Buhler ମଧ୍ୟ ଏଥିରେ ଏକମତ । ଅବଶ୍ୟ ଲିଖନ-ପ୍ରଣାଳୀ ଦିଗରୁ ଏ ଉଭୟେ ବିପରୀତ । ସୈନ୍ଧବ-ଲିପି ଡାହାଣରୁ ବାମକୁ ଯାଉଥିଲେ ମଧ୍ୟ ପ୍ରାଚୀନ ବ୍ରାହ୍ମୀ-ଲିପିର ଲିଖନ-ପଦ୍ଧତି ଠିକ୍ ତହିଁର ଓଲଟା । ପରିବେଷ୍ଟନୀର ପ୍ରଭାବରେ ଏହି ପରିବର୍ତ୍ତନ ହୋଇଛି ବୋଲି ପଣ୍ଡିତମାନେ କହନ୍ତି ।

ସୈନ୍ଧବ ଲିପି ଓ ବ୍ରାହ୍ମୀ-ଲିପି ମଧ୍ୟରେ ପ୍ରାୟ ଅଢ଼େଇ ହଜାର ବର୍ଷର ଶୂନ୍ୟ-ସ୍ଥାନ କିପରି ପୂରଣ କରାଯିବ ? ଏ ଦୀର୍ଘ ସମୟ କଣ ଭାରତବର୍ଷରେ ବର୍ଣ୍ଣମାଳା-ଶୂନ୍ୟ ଯୁଗ ରହିଥିଲା ? ଡଃ ଲ୍ୟାଙ୍ଗଡନଙ୍କ ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସିନେ ବଯ୍ସ୍ଟଲ୍ ଓଡ଼ିଶାର ସମ୍ବଲପୁର ଅଞ୍ଚଳର ବିକ୍ରମଖୋଲ ନାମକ ସ୍ଥାନରେ ପ୍ରସ୍ତରୋପରେ ଅଙ୍କିତ "ଚିତ୍ରଲିପି" ପ୍ରତି ପଣ୍ଡିତସମାଜର ଦୃଷ୍ଟି ଆକର୍ଷଣ କରିଥିଲେ । ଏହି ଚିତ୍ରଲିପିର କେତେକ ଅଂଶ ସୈନ୍ଧବ-ଲିପି ସଙ୍ଗେ ପ୍ରାୟ ସମାନ ଏବଂ ଆଉ କେତୋଟି ଅକ୍ଷର ବ୍ରାହ୍ମୀ-ବର୍ଣ୍ଣମାଳା ସଦୃଶ । ତେଣୁ ଏହା ଉଭୟ ଲିପିର ମଧ୍ୟକାଳୀନ ବୋଲି କହିବା ସମ୍ପୂର୍ଣ୍ଣ ସଙ୍ଗତ ବୋଲି ଶ୍ରୀ ସତ୍ୟନାରାୟଣ ରାଜଗୁରୁ ପ୍ରମୁଖ ମନେ କରନ୍ତି । ('ସଙ୍କେତ' ପ୍ରବନ୍ଧରୁ)

---

* Mahenjodaro, Vol ii, p. 423

ରେଭେରେଂଡ୍ ହେରସ୍‌ଙ୍କ (Rev. H Heras) ମତରେ ପ୍ରାକ୍-ବୈଦିକ ଯୁଗରୁ ଭାରତର ପଶ୍ଚିମୋତ୍ତର ସୀମାଂତ ସମେତ ବେଲୁଚିସ୍ଥାନ ପ୍ରଭୃତି ଅଂଚଳରେ ଯେଉଁ ଜାତି ବାସ କରୁଥିଲେ ସେମାନେ "ବ୍ରହୁଇ" ନାମକ ଏକ ଦ୍ରାବିଡ଼ୀୟ ଭାଷା କହୁଥିଲେ । ସେ ଭାଷା ସଂଗେ ଆଧୁନିକ ଯୁଗର ଦାକ୍ଷିଣାତ୍ୟର ତାମିଲ ଭାଷାର ସାମଂଜସ୍ୟ ବର୍ତ୍ତମାନ (ଏକ୍ସ) । ଅଶୋକଂଙ୍କ ପରେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ଆଡ଼କୁ ଭାରତର ବିଭିନ୍ନ ଅଂଚଳରେ ଲିପି ଓ ଭାଷା ମଧ୍ୟରେ ବିଭେଦ ଦେଖାଗଲା । ଗୁପ୍ତଯୁଗ ବେଳକୁ ଏହା ଅଧିକ ସ୍ପଷ୍ଟତର ହେଲା । ଓଡ଼ିଶାରେ ଖାରବେଳଂଙ୍କ ସମୟକୁ ଯେଉଁ ଲିପି ବ୍ୟବହୃତ ହେଲା ତାହା ଅଶୋକଂଙ୍କ ସମୟର ଲିପିଠାରୁ କେତେକ ଅଂଶରେ ପୃଥକ । 'ଅକ୍ଷର ଗୁଡ଼ିକର ସରଳରେଖାକୃତି କ୍ରମେ ବକ୍ରତା ଲାଭ କରି ଲିପିକାରମାନଂଙ୍କ ଦ୍ୱାରା ଅଧିକରୁ ଅଧିକ କୁଟିଳାକୃତି ଧାରଣ କଲା । ଭାଷାରେ ମଧ୍ୟ ପରିବର୍ତ୍ତନ ଦେଖାଗଲା । ଓଡ଼ିଶାରେ ବ୍ୟବହୃତ ପ୍ରାକୃତ ଭାଷା ପାଳି ଭାଷାଠାରୁ କେତେକ ପରିମାଣରେ ସ୍ୱତଂତ୍ର ହୋଇପଡ଼ିଲା । କେତେକ ପଂଡିତଂଙ୍କ ମତରେ ମାଗଧ ପ୍ରାକୃତର ଜନନୀ ରୂପେ ଖାରବେଳଂଙ୍କ ଉଦୟଗିରି-ଲିପିକୁ ଗ୍ରହଣ କରାଯାଇପାରେ । ଖାରବେଳଂଙ୍କ ପରେ ଓଡ଼ିଶାରୁ ଯେଉଁ କେତେକ ପ୍ରାକୃତ ଲିପି ମିଳିଚି ତନ୍ମଧ୍ୟରେ ଭଦ୍ରକରୁ ପ୍ରାପ୍ତ ଭଦ୍ରକାଳୀ ମଂଦିର ସନ୍ନିକଟ ଲିପିରେ (ଖ୍ରୀ. ୩ୟ-୪ର୍ଥ ଶତାବ୍ଦୀ) ସେତେବେଳର ପ୍ରଚଳିତ ପ୍ରାକୃତ ଭାଷା ସଂଗେ ଆଧୁନିକ ଓଡ଼ିଆ ଭାଷାର ଥିବା ସଂବଂଧ ଜଣାପଡ଼େ ।' (ଏକ୍ସ) ଡ଼ଃ ଦୀନେଶଚଂଦ୍ର ସରକାର ସେ ଲିପିର ପାଠୋଦ୍ଧାର କରିଛଂତି । ସେଥିରେ ଥିବା 'ଗଣସ' (ଗଣେଶ) 'ଦତ' (ଦତ୍ତ) 'ଦବା' (ଦେବା) ପ୍ରଭୃତି ଶବ୍ଦ ଉଲ୍ଲେଖଯୋଗ୍ୟ । *

ଗଂଗବଂଶୀୟ ରାଜା ବଜ୍ରହସ୍ତଦେବଂଙ୍କର (୯ମ ଶତାବ୍ଦୀ) ଗୋଟିଏ ତାମ୍ର ଶାସନରେ ଓଡ଼-ବିସଇ, ବିଦଗଧ (ବିଦଗ୍ଧମ୍) ଇଂଦ-ନଂଦନୋଦୟ (ଇଂଦ୍ର-ନଂଦନୋଦ୍ୱୟମ୍) ପ୍ରଭୃତି ପ୍ରାକୃତ ଶବ୍ଦ ଦେଖିବାକୁ ପାଉଁ । କଳିଂଗରେ ଶ୍ୱେତକ-ମଂଡଳରୁ ଗଂଗବଂଶୀ ଇଂଦ୍ରବର୍ମାଂଙ୍କ ସାନଖିମୁଂଡିରୁ ପ୍ରାପ୍ତ ତାମ୍ରଶାସନରେ ବହୁ ପ୍ରାକୃତ ଶବ୍ଦ ରହିଚି । ଯଥା : କୁମର (କୁମାର), ଶିଂଗ (ଶୃଂଗ), ମଧେ (ମଧ୍ୟେ), ମଧୁସୋଦନ (ମଧୁସୂଦନ), ଦରଷନ (ଦର୍ଶନ), ଅନସ (ଅଂଶ) *(ଶ୍ରୀ ସଃ ନା ରାଜଗୁରୁ ଓଡ଼ିଆ ଲିପିର କ୍ରମବିକାଶ ଉପରେ ଆଲୋକପାତ କରିଛଂତି ।)

---

* Epigraphia Indica—Vol xxix, P. 169
୧ । ,, ,, ,, ,, P. 165
୨ । Inscriptions of Orissa Vol xxix, p. 280 & p. 372

ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀରେ ଓଡ଼ିଆ ଭାଷାର ରୂପରେଖ ସୁସ୍ପଷ୍ଟ ହେବାର ପରିଲକ୍ଷିତ ହୁଏ । ବାଲେଶ୍ୱର ଜିଲାର ସୋର ନିକଟବର୍ତ୍ତୀ ଗଂଡିବେଢ଼ ନାମକ ଗ୍ରାମରୁ ପ୍ରାପ୍ତ ଏକ ମୂର୍ତ୍ତି ତଳେ ଦୁଇଧାଡ଼ି ଛଂଦୋବଦ୍ଧ ଓଡ଼ିଆ କବିତା ରହିଚ ବୋଲି Orissa Historical Journal Vol iiରୁ ଜଣାପଡ଼େ । ଯଥା—

"ଦେବେ କହି ଭଗତି କରୁଣ—

ଅଛଂତି ଶ୍ରୀ କୁମାରସେଣ" (୧୦ମ—୧୧ଶ ଶତାବ୍ଦୀ) ସଂକ୍ଷେପରେ ଖ୍ରୀ: ୧୦ମ ଶତାବ୍ଦୀ ବେଳକୁ ଓଡ଼ିଶାରେ ଉକ୍ତ ପ୍ରାକୃତ ଭାଷା ସ୍ପଷ୍ଟ ଆକାର ଧାରଣ କରି ଆସୁଥିଲା ବୋଲି ଶ୍ରୀ ହିଜଲୁରୁ କହଂତି ।

## ପ୍ରତ୍ନ-ବଂଗଳା ଲିପି

ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ପର୍ଯ୍ୟଂତ ଓଡ଼ିଶାରେ ସର୍ବତ୍ର ବହୁସଂଖ୍ୟାରେ ପ୍ରତ୍ନ-ବଂଗଳା (Proto Bengali) ଲିପିର ଶିଳାଲେଖ ଓ ତାମ୍ରଶାସନ ମିଳେ । କୋଣାର୍କରେ ଉତ୍କୀର୍ଣ୍ଣ ଶିଳାଲେଖରେ ଶତକଡ଼ା ୭୫% ଅକ୍ଷର ପ୍ରତ୍ନ-ବଂଗଳା— ଯଦିଓ ଣ୍ଡ,କ, ତ ,ଣ, ଇ ପ୍ରଭୃତି କେତୋଟି ଅକ୍ଷର ସ୍ପଷ୍ଟ ଓଡ଼ିଆ ଲିପିର ଆକାର ଗ୍ରହଣ କରିସାରିଥିଲା । ଏହା ଚତୁର୍ଦ୍ଦଶ ଶତକର ଶିଳାଲେଖ (ପ୍ରାଚୀନ ଗଦ୍ୟ-ପଦ୍ୟାଦର୍ଶରେ ଫଟୋଚିତ୍ର ଦ୍ରଷ୍ଟବ୍ୟ) । 'ଝଗଂଡ'ମ୍ୟୁଜିୟମରେ ସଂରକ୍ଷିତ ବାଲେଶ୍ୱର ଜିଲା ବାସୁଦେବପୁର ଅଂଚଳରୁ ପ୍ରାପ୍ତ ଚୋଡ଼ଗଂଗଦେବଂକ ପୁତ୍ର କାମାର୍ଣ୍ଣବ ଦେବ (୨) (୧୧୪୭-୫୬)ଂକ ଗୋଟିଏ ଶିଳାଲେଖ ଏବଂ ଭୌମ-କର ବଂଶର ଗୋଟିଏ ବୌଦ୍ଧ ଶିଳାଲେଖ (ଅଂଦାଜ ୧୦ମ ଶତାବ୍ଦୀ) ପ୍ରତ୍ନ-ବଂଗଳା ଲିପିରେ ଉତ୍କୀର୍ଣ୍ଣ । ଏ ଦୁଇଟିର ଭାଷା ଯଥାକ୍ରମେ ସଂସ୍କୃତ ଓ ପ୍ରାକୃତମିଶ୍ର ସଂସ୍କୃତ । *ସ୍ପଷ୍ଟ ପୂର୍ଣ୍ଣାଂଗ ଓଡ଼ିଆ ଲିପି କପିଳେଂଦ୍ର ଦେବଂକ ସୀମାଚଳମ୍ ଶିଳାଲେଖ ପୂର୍ବରୁ ପ୍ରାୟ ଦେଖିବାକୁ ମିଳେ ନାଇ । ଏଥିରୁ ଏଇ ଧାରଣା ହୁଏ ଯେ ପ୍ରାଚ୍ୟ ଭାରତରେ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟଂତ ପ୍ରତ୍ନ-ବଂଗଳା ଲିପିହିଁ ପ୍ରଚଳିତ ଥିଲା । ଚତୁର୍ଦ୍ଦଶ ଶତାବ୍ଦୀ ପରେ ସ୍ପଷ୍ଟ ଓଡ଼ିଆ ଲିପି ବ୍ୟବହୃତ ହୁଏ ।

---

୧୯୬୭ ସାଲ ମଇ ସଂଖ୍ୟା ଝଗଂଡ, ଏବଂ ନଭେଂବର ସଂଖ୍ୟା ଝଗଂଡରେ ଏ ଯୁକ୍ତକର ପାଠ ଓ ଫଟୋଚିତ୍ର ଦ୍ରଷ୍ଟବ୍ୟ । ପାଠୋଦ୍ଧାର କରିଥିଲେ ରାଜ୍ୟ ମ୍ୟୁଜିୟମର କ୍ୟୁରେଟର ଶ୍ରୀ ପ୍ରଶାଂତକୁମାର ରାୟ, ଏମ. ଏ । ଭୁବନେଶ୍ୱର ରାଜ୍ୟ ସଂଗ୍ରହାଳୟକୁ ମଧ୍ୟ ଏ ଦୁଇ ଲେଖର ପ୍ଲାଷ୍ଟର ପ୍ରତିଲିପି ଦିଆ ଯାଇଚି ଏବଂ ତାହା ସେଠାରେ ସଂରକ୍ଷିତ ଅଛି ।

## "ପ୍ରତ୍ନ-ବଂଗଳା" ନାମର ଯଥାର୍ଥତା

ପ୍ରକୃତ କଥାରେ, ଏଇ ପ୍ରାଚ୍ୟ ଲିପି ବଂଗଦେଶରେ ଏକଗୁଟିଆ ଭାବରେ ପ୍ରଚଳିତ ହୋଇ ନଥିଲା । ଆସାମ, ବଂଗଳା, ଓଡ଼ିଶା ପ୍ରଭୃତି ସମସ୍ତ ପୂର୍ବ-ଭାରତରେ ଏଇ ଲିପିର ପ୍ରଚଳନ ଥିଲା । ତଥାପି ବ୍ୟୁହ୍ଲର ସାହେବ ଏହାର 'ପ୍ରତ୍ନ-ବଂଗଳା' ନାମକରଣ କଲେ କାହିଁକି ? ବଂଗୋପସାଗର ତ ଖାଲି ବଂଗଳା ନୁହେଁ, ଓଡ଼ିଶା, ଆଂଧ୍ର, ମାଂଦ୍ରାଜ, ପ୍ରଭୃତି ରାଜ୍ୟର ଉପକୂଳ ଦେଇ ବୋହୁଚି । ମହାବଳ ବାଘ ଖାଲି ସୁଂଦରବନ ନୁହେଁ, ଢେଂକାନାଳ, ଆଠଗଡ଼ ଜଂଗଲ ଏବଂ ଅନ୍ୟଠି ମଧ୍ୟ ରହୁଛଂତି । ତଥାପି ସେମାନଂକର ନାମ ଯଥାକ୍ରମେ Bay of Bengal ଏବଂ Royal Benagl Tiger ହେଲା ପରି ଏହା ମଧ୍ୟ ଏକପ୍ରକାର ବିଡ଼ଂବନା (anomaly) ଯାହାକୁ ଇଚ୍ଛା କଲେ ମଧ୍ୟ ବର୍ତ୍ତମାନ ଆମେ ବଦଳାଇ ପାରିବା ନାଇ । ଅନେକେ ଏ ଲିପିର ନାମ ପ୍ରତ୍ନ-ଓଡ଼ିଆ ରଖିବାର ପକ୍ଷପାତୀ । ବସ୍ତୁତ ଡଃ କୁଂଜବିହାରୀ ତ୍ରିପାଠୀ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ ତାଂକ ଲିଖିତ "ଓଡ଼ିଆ ଅଭିଲେଖ" ପୁସ୍ତକରେ "ପ୍ରତ୍ନ-ଓଡ଼ିଆ ଲିପି" କଥାଟା ବ୍ୟବହାର କରିଛଂତି । ମାତ୍ର ଏହାଦ୍ୱାରା ସମସ୍ୟାର ସମାଧାନ ହେଲା ନାଇ । ଆମେ ପ୍ରତ୍ନ-ଓଡ଼ିଆ କହିଲେ ବଂଗାଳୀ ଓ ଅସମୀୟା ଭାଷୀମାନେ ମଧ୍ୟ ଠିକ୍ ସେଇ ଅଭିଯୋଗ କରିବେ ଯାହା ଆମେ କରୁଛୁଁ । ତାହାଛଡ଼ା ଏ ନାମଟାକୁ ବହୁବର୍ଷବ୍ୟାପୀ ଚଳଣିରୁ ଏପରି ବାଦ୍ ଦେଇ ହେବ ନାଇ, ଠିକ୍ ଯେପରି Bay of Bengalକୁ ଆମେ ଓଡ଼ିଶାରେ ମାନଚିତ୍ର ବା ପତ୍ରିକା-ପୁସ୍ତକ ଆଦିରେ Bay of Orissa କରିଦେଲେ ସମସ୍ୟାର ସମାଧାନ ହୋଇଯିବ ନାଇ । ଏହାକୁ ଆମ ଛଡ଼ା ଆଉ କେହି ଗ୍ରହଣ ବର୍ତ୍ତମାନ କରିବେ ନାଇ ।

ଆଉ କେତେକ ଗବେଷକ ଏହି ପ୍ରାଚ୍ୟ ଲିପିର ନାମ ବଦଳାଇ ପ୍ରୋଟୋ-ନାଗରୀ ବା ପ୍ରତ୍ନ-ନାଗରୀ କରିବାର ବିକଳ୍ପ ପଂଥାକୁ ସମର୍ଥନ କରଂତି । ମାତ୍ର ପ୍ରୋଟୋ-ବେଂଗ୍ଗ ଅନ୍ୟତମ ପ୍ରାଚ୍ୟ-ଭାଷା ହୋଇଥିବା ସ୍ଥଳେ ନାଗରୀ ଉତ୍ତର ଭାରତୀୟ ଭାଷା ଏବଂ ପ୍ରାଚ୍ୟ ଭାଷା-ଗୋଷ୍ଠୀ ସହିତ ଏହାର ସଂପର୍କ ଦୂରତମ ବୋଲି କୁହାଯାଇପାରେ । ତା'ଛଡ଼ା ଏ ଦୁଇ ଲିପିର ଆକାର ପ୍ରକାର ଭିନ୍ନ । ଦ୍ୱିତୀୟରେ ନାଗରୀ ଲିପିରେ ଇ-କାର ଓ ଏ-କାର ଡାହାଣ ପଟେ ଦିଆଯିବା ସ୍ଥଳେ ପ୍ରତ୍ନ-ବଂଗଳା ଲିପିରେ ଏ ଦୁଇଟିଯାକ ମାତ୍ରା ବାମ ପଟେ ଦିଆଯାଏ । ତେଣୁ ଏହାକୁ ବଦଳାଇ ପ୍ରୋଟୋ-ନାଗରୀ କଲେ ଅସଂଗତି ଆହୁରି ବୃଦ୍ଧି ପାଇବ ଏବଂ ସମସ୍ୟା ଅଧିକ ଜଟିଳ ହେବ ସିନା କମିବ ନାଇ ।

———

# କବିଙ୍କ କାଳ-ନିର୍ଣ୍ଣୟ

ସାରଳାଦାସ ପ୍ରଥମ ଓଡ଼ିଆ ରାଜା ଏବଂ ସୂର୍ଯ୍ୟବଂଶର ସ୍ଥାପୟିତା କପିଳେଂଦ୍ର ଦେବଂକର ସମସାମୟିକ ଥିବା କଥା ତାଂକ ମହାଭାରତରୁ ଜଣାପଡ଼େ । ସେ ଲେଖିଛଂତି—

"କଳିକାଳ ଧ୍ୱଂସନକୁ ଭୋଗ କୋଟି ପୂଜା
ପ୍ରଣମିତେ ଖଟଇ କପିଳେଶ୍ୱର ରାଜା ।"

**କାଳ-ନିର୍ଣ୍ଣୟ**

କପିଳେଂଦ୍ର ଦେବଂକର ଅନ୍ୟ ନାମ କପିଳେଶ୍ୱର ଦେବ ଥିଲ ବୋଲି ଦକ୍ଷିଣ ଭାରତରୁ ମିଳିଥିବା କେତେକ ତାମ୍ରଶାସନରୁ ଜଣାପଡ଼େ । ଖ୍ରୀ· ୧୪୩୫ ଜୁନ୍ ୨୯ ତାରିଖ ବୁଧବାର ଦିନ ତାଂକର ଅଭିଷେକ ହୋଇଥିବା କଥା ଅଭିଲେଖମାନଂକରୁ ମିଳେ । ଦକ୍ଷିଣ ଭାରତରେ ଶାସନ ପରିଦର୍ଶନ କାର୍ଯ୍ୟରେ ଭ୍ରମଣ କରୁଥିବା ବେଳେ କୃଷ୍ଣାନଦୀ କୂଳରେ ସେ ଖ୍ରୀ. ୧୪୬୭ ନଭେଂବର ୨୫ ତାରିଖ ମଂଗଳବାର ଦିନ ପ୍ରାଣତ୍ୟାଗ କରଂତି । (ଓ. ଇ) ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଲବର୍ଗେଶ୍ୱର କପିଳେଂଦ୍ର ଦେବଂକ ରାଜ୍ୟସୀମା ଉତ୍ତରରେ ଗୌଡ଼ ଦେଶର କେତେକ ଅଂଶରୁ ଆରଂଭ କରି ଦକ୍ଷିଣରେ ତାଂଜୋର ଜିଲାର ତିରିବରୁର ଓ ତ୍ରିଚନାପଲ୍ଲି ପର୍ଯ୍ୟଂତ ବିସ୍ତୃତ ଥିଲା ।

**ସମକାଳୀନ ପ୍ରେକ୍ଷାପଟ**

ରାଜସିହାଂସନରେ ବସିବାର ଅବ୍ୟବହିତ ପରେ ସେ ବଂଗ ଓ ମାଳବର ମୁସଲମାନ ଶାସକମାନଂକ ବିରୋଧରେ ସମରାଭିଯାନ କରି ସେମାନଂକୁ ପରାସ୍ତ କରିଥିଲେ । କୁମାର ହଂବିର ମହାପାତ୍ର କର୍ଣ୍ଣାଟ ରାଜ୍ୟ ଜୟ କରୁଥିବା ବେଳେ କପିଳେଂଦ୍ରଦେବ ନିଜେ ସୈନ୍ୟବାହିନୀ ଚାଳନା କରି ଶ୍ରୀଶୈଳମ୍ ବା ମଲ୍ଲିକାର୍ଜୁନ କୋଂଡକୁ ୧୪୫୦ରେ ଅଧିକାର କରିଥିଲେ । ସେ ବିଜୟନଗର ରାଜ୍ୟ ଆକ୍ରମଣ କରିଥିଲେ । ଏବଂ ତାପରେ ରାଜମହେଂଦ୍ରି ଅଧିକାର କରି ସେଠାରେ ଶାସନକର୍ତ୍ତା ନିଯୁକ୍ତ କରିଥିଲେ । ସେ ଓଡ଼ିଶାକୁ ବାହମନି ସୁଲତାନଂକ ଆକ୍ରମଣରୁ ରକ୍ଷା କରିଥିଲେ । ଏଇ ପ୍ରେକ୍ଷାପଟରୁ ଅନୁମିତ ହେବ ଯେ ସାରଳା ଦାସ ଏକ ବିସ୍ତୃତ ଓ ସମୃଦ୍ଧିର ପରିବେଶ ମଧ୍ୟରେ କପିଳେଂଦ୍ର ଦେବଂକ ସମକାଳୀନ ଓଡ଼ରାଷ୍ଟ୍ରର କବି ଥିଲେ । ସେ ନିଜ ଜନ୍ମସ୍ଥାନ ସଂବଂଧରେ ଲେଖିଛଂତି —

ଜଂବୁ ଦ୍ୱୀପ ଭରଥଖଂଡ ମଂଡଳ ଓଡ୍ରରାଷ୍ଟ୍ର,
ଭୁବନ ପାପନଗ୍ର ପୂର୍ବଦଗ ମହୋଦଧି ତଟ ।
ଶ୍ୱେତବାସ୍ତୁ ନୀଳକଂଦର ଗିରି ମଧ୍ୟ ସ୍ଥାନେ
ମହେଂଦ୍ର ଚଂଦ୍ରଭାଗା କୋଣାର୍କ ଐଶାନେ ।
ସେ ପୁର ବାସ ଝଂଙ୍କେରପୁର ବାସିନୀ
ଗିରିଜାର ଆଜ୍ଞାତରେ ତହିଁରେ ମୁହିଁ ଜନ୍ମ ।" (ବିରାଟପର୍ବ)

## କବି-ପରିଚୟ

ସାରଳା ଦାସ ପୁଣି ଲେଖିଛଂତି —

ଝଂକଡ଼ ଯାହାକୁ ପୂର୍ବେ ବାରସ୍ତମ୍ଭ ବୋଲି
ଗିରିଜାଂକ ଆଜ୍ଞାରେ ମୁଁ ତହିଁ ଜନମିଲି । (ବନପର୍ବ)

ସାରଳା ଦାସଂକ ଜନ୍ମ 'ଜଂଖେରପୁର' ବା କଟକ ଜିଲାର ଆଧୁନିକ ଝଂକଡ ଗ୍ରାମରେ । ସେ ଠିକ୍ କେଉଁ ସମ୍ବିହାରେ ଜନ୍ମ ହୋଇଥିଲେ ଏବଂ କେବେ ମହାଭାରତ ଲେଖିବା ଆରଂଭ କରିଥିଲେ ତାହା ସଠିକ କହିହେବ ନାଇ ବୋଲି ପଂଡିତ ଗୋପୀନାଥ ନଂଦ ଲେଖିଛଂତି । ତେବେ ସେ ଯେ ପ୍ରଥମ ସୂର୍ଯ୍ୟବଂଶୀ ରାଜା କପିଲେଂଦ୍ର ଦେବ ଓରଫ୍ କପିଳେଶ୍ୱର ଦେବଂକ ସମସାମୟିକ, ଏହା ସେ ନିଜେ ଆଦିପର୍ବରେ ଲେଖିଯାଇଛଂତି । କପିଳେଶ୍ୱର ଦେବଂକ ସମସାମୟିକ ବା ଅଳ୍ପ ପୂର୍ବବର୍ତ୍ତୀ ବହୁ ଐତିହାସିକ ଘଟନା, ସ୍ଥାନ ଓ ରାଜାଂକ ନାମ ତାଂକ ମହାଭାରତରେ ରହିଥିବାରୁ ଏ ସତ୍ୟ ଅଧିକ ଦୃଢ଼ୀଭୂତ ହୁଏ । ମହାଭାରତ ରଚନା କଲାବେଳକୁ ତାଂକ ବୟସ କମ୍ ଥିଲା । ଏକଥା ସେ ନିଜେ ଲେଖି ଯାଇଛଂତି —

"ଶିଶୁ ବୁଦ୍ଧି ମୋର ବୟସ ଅଳପଟି ।" (ମଧ୍ୟପର୍ବ)

ତାଂକ ଲିଖିତ ମହାଭାରତ ପଂଡିତ ସମାଜରେ ପ୍ରଥମେ ପ୍ରଥମେ ଯେ ସମାଦୃତ ହୋଇ ନଥିଲା ତହିଁର ସୂଚନା ତାଂକ ନିଜ ଲେଖାରୁ ମିଳେ । ସେ ବହୁ ସ୍ଥାନରେ ନିଜ ରଚନାରେ ନିଜକୁ "ମୂର୍ଖ ମୁହିଁ ଅପଂଡିତ ଶାସ୍ତ୍ରହିଁ ନ ଜାଣେ" ଭଳି ଦୈନ୍ୟ ଭାବରେ ଲେଖିଯାଇଛଂତି ।

"ଶ୍ରୀ ଶାରଳା ଚଂଡୀଂକର ସଦା ଅଟେ ଦାସ
ଆଜ୍ଞାରେ ମୁଁ ଶାସ୍ତ୍ର କିଛୁ କରିଛୁ ଅଭ୍ୟାସ ।

ଅପଂଡିତ ମୂର୍ଖ ମୋର ଶାସ୍ତ୍ର ଜ୍ଞାନ ନାହିଁ
ସେ ଯାହା କରଂତି ଆଜ୍ଞା ମୁଁ ତାହା ଲେଖଇ ।" (ବି. ରାମାୟଣ)

... ... ...

ଶୂଦ୍ରମୁନି ସାରଳା ଅଟେ ଚଂଡୀପୁତ୍ର (ସଭାପର୍ବ)

ସାରଳା ଦାସଂକ ଜନ୍ମ ଝଂକଡ଼ ଗ୍ରାମରେ ଏହା ପୂର୍ବରୁ କୁହାଯାଇଛି । ତାଂକର ବଂଶସଂଜ୍ଞା 'ପରିଡ଼ା' ଥିଲି । ସାରଳାଦାସଂକର ବଂଶ ପରିଚୟ ନିଜ ନାମ ଥିଲା ସିଦ୍ଧେଶ୍ୱର । ପରେ ସେ ସାରଳା ଚଂଡୀଂକ ଦାସରୂପେ ନିଜକୁ ସାରଳା ଦାସ ନାମରେ ପରିଚିତ କଲେ । ତାଂକ ବଡ଼ଭାଇଂକ ନାମ ପର୍ଶୁରାମ ପରିଡ଼ା ଥିବା କଥା ସେ ଲେଖିଛଂତି ।

"ଶୁଦ୍ରମୁନି ସିଦ୍ଧେଶ୍ୱର ଦାସ ଦେଲି ନାମ
ଏ କଥାରେ ମୋହର ଗଲା ମତିଭ୍ରମ । (ଆଦିପର୍ବ)

... ... ...

ରାମାୟଣ ବୃତ୍ତାଂତକୁ ନିରଂତରେ ଘୋଷ
ରାମଂକ ଶରଣ ନିତ୍ୟ ସିଦ୍ଧେଶ୍ୱର ଦାସ । (ବି ରାମାୟଣ)

... ... ...

ସେ ଅଗ୍ନି ଦେବତାଂକ ଚରଣେ ସଂଗତ
ଶ୍ରୀ ସିଦ୍ଧ ସାରଳାଦାସ କରେ ପ୍ରଣିପାତ । (ଚଂଡୀପୁରାଣ)

## ସାରଳା ସାହିତ୍ୟ-ବୀକ୍ଷା

ପ୍ରତ୍ୟେକ ସାହିତ୍ୟରେ ପ୍ରାଥମିକ ପଦ୍ୟ ସ୍ତରରେ ସରଳତା, ସ୍ୱାଭାବିକତା ଏବଂ ନିରଳଂକରଣ (unsophistication) ପ୍ରଭୃତି ଚରିତ୍ର ଦେଖା ଯାଇଥାଏ । ସାରଳା ସାହିତ୍ୟ ସେଥିରୁ ବଂଚିତ ନୁହେଁ । ସାରଳା ଦାସଂକ ମହାଭାରତ ଓଡ଼ିଆ ଭାଷାର ପ୍ରଥମ ପ୍ରାକୃତ କାବ୍ୟ । ଏହା ସଂସ୍କୃତ କାବ୍ୟ କବିତାର ସର୍କ୍ଷୀକରଣ ତଥା ଶୈଳୀକରଣରୁ (stylisation) ମୁକ୍ତ । ସାରଳା ଦାସ ଯେ ସଂସ୍କୃତ ଜାଣି ନ ଥିଲେ ତା ନୁହେଁ । ଯଦିଚ ସେ ଶାସ୍ତ୍ର ପାଠ ନ ଜାଣିଥିବା 'ମୂର୍ଖ ଅଧମ ଶୂଦ୍ର' ବୋଲି ନିଜକୁ ବାରଂବାର ନିଜ ରଚନାରେ କହିଛଂତି ତଥାପି ସେ ସଂସ୍କୃତ ସାହିତ୍ୟରେ ବ୍ୟୁତ୍ପନ୍ନ ଥିଲେ ବୋଲି ତାଂକ ଲେଖାରୁ ବେଶ୍ ଜଣାପଡ଼େ ।

ସାରଳା ଦାସଂକ ଶୈଳୀରେ ପାଉଁ ଏକ ସ୍ୱଚ୍ଛଂଦ ସ୍ରୋତମୟତା ଯାହା ଓଡ଼ିଆ ପ୍ରାକୃତର ସ୍ୱାଭାବିକ ସ୍ୱର-ବିନ୍ୟାସ କରି ଋଧ୍ୱନି ସହ ପାଠକ ଆଗରେ ଏକ

ମନେ କରିଥାଂନ୍ତି । ସେମାନେ କହନ୍ତି, ପ୍ରଳୟକାଳରେ ବିଷ୍ଣୁ ବଟପତ୍ରରେ ଭାସୁଥିଲେ । ଏଇ ବିଷ୍ଣୁହିଁ ଶୂନ୍ୟ,ନିରାକାର । ଜଗନ୍ନାଥ ସେଇ ଶୂନ୍ୟ ବା ନିରାକାର ପରଂବ୍ରହ୍ମ । ବୁଦ୍ଧ ନିରାକାର, ଶୂନ୍ୟ ଥିବାରୁ ଜଗନ୍ନାଥଂକୁ ମଧ୍ୟ ବୁଦ୍ଧ ରୂପରେ ଏମାନେ ଦେଖିଛନ୍ତି ।

'ବଉଦ୍ଧ ରୂପେ ନୀଳ କଂଦରେ ଛଂନ୍ତି ବସି ।" (ସାରଳା ମହାଭାରତ, ମ.ପ)

"ବଉଦ୍ଧ ରୂପେ ବିଜେଷ୍ଟେ ଛଂନ୍ତି ଜଗନ୍ନାଥ ।"

ପ୍ରତାପରୁଦ୍ର ଦେବଂକ ସମୟରେ ପଞ୍ଚସଖା କବିମାନେ ସାରଳା ଦାସଂକଠାରୁ ଏଇ ତତ୍ତ୍ୱର ସୂତ୍ର ଗ୍ରହଣ କରି ଜଗନ୍ନାଥଂକୁ ବୁଦ୍ଧଂକ ସହିତ ଅଭିନ୍ନ ବୋଲି ବର୍ଣ୍ଣନା କରିଛଂନ୍ତି ଏବଂ ଜଗନ୍ନାଥଂକୁ କୃଷ୍ଣ ବୋଲି ମଧ୍ୟ କହିଛଂନ୍ତି । ଜଗନ୍ନାଥ ସ୍ୱୟଂ ବ୍ରହ୍ମ । ଯେବେ ଅବତାର ତାଂକଠାରୁ ଉତ୍ପନ୍ନ ହୋଇ ତାଂକଠାରେ ଲୀନ ହୋଇ ଯାଇଛଂନ୍ତି । ତେଣୁ ଏଇ ଜଗନ୍ନାଥଂକୁ ଶୂନ୍ୟପୁରୁଷ, ନିରାକାର ଓ ନିରଂଜନ ବୋଲି କୁହାଯାଇଛି । ଦିବାକର ଦାସ 'ଜଗନ୍ନାଥ ଚରିତାମୃତରେ' କୃଷ୍ଣଂକୁ ସଗୁଣ, ନିର୍ଗୁଣ ଜ୍ୟୋତିରୂପ, ସନାତନ, ସାକାର, ନିରାକାର, ତେଜୋରୂପ ବୋଲି କହି ବ୍ରହ୍ମବୈବର୍ତ୍ତ ପୁରାଣରେ କୃଷ୍ଣଂକ ସଂବନ୍ଧରେ ଯେପରି ଲେଖାଯାଇଛି ଠିକ୍ ସେଇ ପଂଥା ଅନୁସରଣ କରିଛଂନ୍ତି । ଗୁରୁଭକ୍ତିଗୀତାରେ ବହୁ ପରବର୍ତ୍ତୀ କବି ଅଚ୍ୟୁତାନଂଦ ଏଇ ଭାବକୁ ସୁଂଦର ଭାବରେ ଫୁଟାଇ ଲେଖିଛଂନ୍ତି—

"ଶୁଣ ଅହେ ଗୋପସୁତ ଭଗତର କଥା
ସଗୁଣ ନିର୍ଗୁଣ ଦୁଇ ଯେବଣ ବ୍ୟବସ୍ଥା ।
ଦୁଇ ସେ ଡେଣାରେ ପକ୍ଷୀ ଉଡ଼ି କରି ଯାଇ ।
ଦୁଇ ସେ ଚକ୍ଷୁରେ ଯେହ୍ନେ ସଂସାର ଖେଳଇ ।
ଏକ ଯେ ନ ଥିଲେ କଣା ଦୁଇ ଗଲେ ଅଂଧ ।
ଏଣୁ କରି ନିର୍ଗୁଣେ ସଗୁଣ ପାଶେ ବଂଧ ।।" (ଗୁ. ଭ. ଗୀ. ୨ୟ)(୧)

ବେଦାଂତସାର ଗୁପ୍ତ ଗୀତାରେ ବଳରାମ ଦାସ ନୀଳଗିରିକୁ ନିତ୍ୟ ଗୋଲକ-ଧାମ ରୂପେ କଳ୍ପନା କରିଛଂନ୍ତି ଏବଂ ଏଠାରେ ନିରାକାର ଜଗନ୍ନାଥ ନିତ୍ୟ ରାଧା ଓ ନିତ୍ୟ କୃଷ୍ଣଂକ ଏକାଂଗ ସ୍ୱରୂପ ହୋଇ ବିହାର କରୁଛଂନ୍ତି । ରାମକୃଷ୍ଣାଦି ଅବତାର ଏଇ ନିତ୍ୟରୁ ଉତ୍ପନ୍ନ ।

---

(୧) *Ibid*

"ଏ ନୀଳଗିରି ନିତ୍ୟ ପଦ୍ମ । ତେଣୁ ଶ୍ରୀକୃଷ୍ଣ ନିତ୍ୟଧାମ ।
ଏ ନୀଳଗିରି ନିତ୍ୟ ଦୁଇ । ଅଭିନ୍ନ ଅଭେଦ ଅଟଇ ।
(ବଳରାମ ଦାସ—ବେ ସା ଗୁ. ଗୀ ୭ମ ଅ)

ଜଗନ୍ନାଥ ଧାମକୁ ମାଧୁର୍ଯ୍ୟର ଲୀଳାଭୂଇଁ ବୋଲି ବଳରାମ ବେ ସା. ଗୁ . ଗୀ ରେ ଏବଂ ଜଗନ୍ନାଥ ଦାସ କେଉଁଠି କେଉଁଠି ବର୍ଣ୍ଣନା କରିଛନ୍ତି ।

ଜଗନ୍ନାଥ ଦାସଙ୍କ 'ଭାଗବତ' ଗ୍ରନ୍ଥଟି ଏକ ଅପୂର୍ବ ରଚନା । ଏହା ସମଗ୍ର ଓଡ଼ିଆ ଜାତିକୁ ଯେପରି ଭଗବତ୍-ଚେତନାରେ ଉଦ୍‌ବୁଦ୍ଧ କରି ପାରିଛି ସେଭଳି ଅନ୍ୟ କୌଣସି ଧର୍ମଗ୍ରନ୍ଥ କରି ପାରି ନାହିଁ । ପ୍ରାୟ ପ୍ରତି ଗ୍ରାମରେ ଏହି ଭାଗବତର ପାଠ ଓ ଚର୍ଚ୍ଚା ପାଇଁ ଭାଗବତ ଘର ଗଢି ଉଠିଛି । ଏହି ଭାଗବତ ଟୁଂଗୀ ଗ୍ରାମ୍ୟ ସଂହତିର କେନ୍ଦ୍ର ରୂପେ କାର୍ଯ୍ୟ କରି ଆସୁଛି ।

ଭାଗବତରେ ଶୂନ୍ୟବାଦ ବା ନିରାକାର ତତ୍ତ୍ୱର ଅବତାରଣା ବହୁ ସ୍ଥାନରେ କରାଯାଇଛି ।

ମହାଶୂନ୍ୟରୁ ଶୂନ୍ୟଜାତ    ଶୂନ୍ୟରୁ ପ୍ରଣବ ସଂଭୂତ ।
ପ୍ରଣବ ପବନକୁ କହି    ପବନୁ ଜଳ ସଂଭବଇ ।
ଜଳ ପବନ ଜାତ ହେଲା    ସଂସାରେ ଖେଳ ଲଗାଇଲା ।
ଜଳ, ପବନ ଜ୍ଞାନ କହି    ଦେହରେ କହିଣ ବୁଝାଇ ।
ପରମ ପୁରୁଷଟି ଯେହି    ଶୁକ ବୋଲିଣ ତାକୁ କହି ।
ଜୀବଟି ପକ୍ଷିତ ହେଲା    ସକଳ ଜ୍ଞାନଟି ପୁଛିଲା ।
ଜୀବ ପରମକୁ ପୁଛଇ    ଜୀବେ ପରମ ଜ୍ଞାନ କହି ।
(ଭାଗବତ ୨ଶ ସ୍କନ୍ଧ)

"ତୁଳାଭିଣା"ରେ ଜଗନ୍ନାଥ ଦାସ କହନ୍ତି :

ମହାଶୂନ୍ୟ ଯେ ଜ୍ୟୋତିରୂପ    ଜ୍ୟୋତିରୁ ଜାତ ଠୁଳରୂପ ।
ଠୁଳରୁ ଅର୍ଧମାତ୍ରା କଲା    ମାତ୍ରାରୁ ଓଁକାର ଜନ୍ମିଲା ।
ଓଁକାର ବ୍ରହ୍ମ ଏ ଜଗତ    ଶୁଣ ପାର୍ବତୀ ଦେଇ ଚିତ୍ତ ।
ଅଣାକାର ଯେ ଜ୍ୟୋତିରୂପ    ସେଠାରେ ନାହିଁ ରୂପରେଖ ।
ଧୂମ୍ର ବର୍ଣ୍ଣର ପ୍ରାୟ ଦିଶେ    ଅଂଧକାରଟି ସେ ପ୍ରକାଶେ ।
ବ୍ରହ୍ମାଂଡ ଅଂଧକାର ହୋଇ    ଜ୍ୟୋତି ରୂପରେ ଥିଲା ରହି ।
ସେଠାରୁ ଓଁକାର ଜନ୍ମିଲା    ଓଁକାର ସାକାର ଯେ ହେଲା ।
ସକାରୁ ହୋଇଲା ମକାର    ମକାରୁ ଜନ୍ମିଲା ରକାର

ଅଂଧକାରରୁ ସୃଷ୍ଟ ହେଲ ଓଁକାରୁ ବ୍ରହ୍ମ ପ୍ରକାଶିଲ ।
ଏମନ୍ତେ ହୋଇଲ ଦିବସ ଦିବସୁ ଜଗତ ପ୍ରକାଶ ।

ଜଗନ୍ନାଥ ଦାସ 'କେଶବ କୋଇଲି' (ମାର୍କଂଡ ଦାସ)ର ଏକ ଟୀକା କରିଛନ୍ତି । 'କୋଇଲି କେଶବ ଯେ ମଥୁରାକୁ ଗଲ । କାହା ବୋଲେ ଗଲ ପୁଣ ବାହୁଡ଼ି ନଇଲା'ର ବ୍ୟାଖ୍ୟା :—

"କୋଇଲି ବୋଲିଣ ପାର୍ଥ ଜୀବକୁଟି କହି ।
ସେଇ ଜୀବ ମୁହିଁ ଜାଣ ଦିବସ ଅଛଇ ।
ଆପେ ଅସିଥିଲ ଜୀବ ଆପେ ଚାଲିଗଲ ।
ସେହି 'ପୁଣ ବୋଟି ଆଉ ବାହୁଡ଼ି ନଇଲ ।
ଏହି ସୁନ ଗୋଟି ଯହୁଁ ବାହୁଡ଼ି ନଇଲ ।
ମଥୁରା ସ୍ୱରୂପ ପିଂଡ ପଡ଼ିଣ ରହିଲା ।" *

ଜଗନ୍ନାଥ ଦାସଙ୍କ "ଉଷା ହରଣ" କାବ୍ୟଟି ଏ ପର୍ଯ୍ୟଂତ ଅପ୍ରକାଶିତ ଥିଲ । ତାହାକୁ ଅମେ ୧୯୬୭-୬୮ ମସିହାରେ "ଦିଗଂତ' ପତ୍ରିକାରେ ଡଃ ବଂଶୀଧର ମହାଂତିଙ୍କ ସଂପାଦନାରେ ଟୀକା ସହ ଧାରାବାହିକ ଭାବରେ ପ୍ରକାଶ କରିଅଛୁଁ ।

ତାଂକର ଅନ୍ୟାନ୍ୟ ଗ୍ରଂଥ ମଧ୍ୟରେ ଦାରୁବ୍ରହ୍ମଗୀତା, ଅର୍ଥ କୋଇଲି, ଗୁପ୍ତ ଭଗବତ, ତୁଳାଭିଣା, ଇତିହାସ ପୁରାଣ, ବ୍ରହ୍ମଗୀତା (ଗଦ୍ୟରେ ଲିଖିତ ବେଦାଂତ ବ୍ୟାଖ୍ୟା), ରାସକ୍ରୀଡ଼ା ପ୍ରଭୃତି ଉଲ୍ଲେଖନୀୟ । ଏଥି ମଧ୍ୟରୁ ବହୁଗ୍ରଂଥ ଏବେ ସୁଦ୍ଧା ଅପ୍ରକାଶିତ ।

## ପଂଚସଖା—ଏକ ଭ୍ରମ ପ୍ରଚାର ।

ଓଡ଼ିଶାରେ ବହୁଳପ୍ରଚାରିତ 'ପଂଚସଖା' ତଥ୍ୟଟି ଏକ ଭ୍ରମପ୍ରଚାର ବୋଲି ଜଣାପଡ଼ୁଛି । ଚୈତନ୍ୟ ମହାପ୍ରଭୁଙ୍କର ପାଂଚ ସଖା ରୂପେ ବଳରାମ ଦାସ, ଜଗନ୍ନାଥ ଦାସ ଅଚ୍ୟୁତାନଂଦ ଦାସ, ଯଶୋବଂତ ଦାସ ଏବଂ ଶିଶୁ ଅନଂତ, ଏହି' ପାଂଚମହାଜନଂକ କଳ୍ପନାଟି ମୂଳରୁ ଶେଷଯାଏଁ ଏଇ ପଂଚସଖାର ଜଣେ ବୋଲି ଦାବୀ କରୁଥିବା ଅଚ୍ୟୁତାନଂଦଂକର ମନଗଢ଼ା କଥା ଉପରେ ଭିତ୍ତି କରିହିଁ ଗଢି ଉଠିଛି । ଅଚ୍ୟୁତାନଂଦଂକୁ ଛାଡ଼ି ଦେଲେ ଏଇ ପଂଚମହାଜନଂକ ଭିତରୁ ଅନ୍ୟ କେହି ନିଜକୁ ପଂଚସଖାର ଜଣେ ବୋଲି କୌଣସି ଗ୍ରଂଥରେ ଉଲ୍ଲେଖ କରି ନାହାଂତି ।

*Ibid

ଅଚ୍ୟୁତାନଂଦଂକ ଛଡ଼ା ମାଦଳାପାଂଜିର ଗୋଟିଏ ପାଠରେ ଏବଂ ଆନୁମାନିକ ଊନବିଂଶ ଶତକରେ ଲିଖିତ ଈଶ୍ୱର ଦାସଂକ 'ଚୈତନ୍ୟ ଭାଗବତ'ରେ ଏବଂ ନଂଦ ଦାସଂକ 'ଅଣାକାର ସଂହିତା'ରେ ପଂଚସଖାର ଉଲ୍ଲେଖ ରହିଚ । ଅଚ୍ୟୁତାନଂଦ ଦାସ ଅଷ୍ଟାଦଶ ଶତକର ଶେଷ ଭାଗର ଏବଂ ଊନବିଂଶ ଶତକର ପ୍ରଥମ ପାଦର ଲୋକ ବୋଲି ଜଣାଯାଇଚ । ତାଂକ ମଉଳାଶୁର ଯଶୋବଂତ ଦାସ ନିଶ୍ଚୟ ତାଂକର ସମସାମୟିକ ଥିଲେ । ସେ ତାଂକର ବହୁ ଗ୍ରଂଥରେ ନିଜକୁ ଓ ଯଶୋବଂତ ପ୍ରମୁଂଖଙ୍କୁ ଶ୍ରୀଚୈତନ୍ୟ ଏବଂ ବଳରାମ ଦାସ ଓ ଜଗନ୍ନାଥ ଦାସଂକର ସମସାମୟିକ ବୋଲି କହି ପଂଚସଖା ତତ୍ତ୍ୱଟି ଉଦ୍ଭାବନ କରିଛଂତି । ତାଂକୁ ଅନୁସରଣ କରି ତାଂକ ପରେ ଲିଖିତ 'ଚୈତନ୍ୟ ଭାଗବତ' ଓ 'ଅଣାକାର ସଂହିତା'ରେ ମଧ୍ୟ ସେଇ ଭୁଲ୍ ତଥ୍ୟ ପରିବେଷଣ କରାଯାଇଚ ।

ଚୈତନ୍ୟଂକ ଜୀବନୀ ବର୍ଣନା କରିଥିବା କୌଣସି ଗୌଡ଼ୀୟ ବୈଷ୍ଣବ ଗ୍ରଂଥରେ କେବଳ ଜଗନ୍ନାଥ ଦାସ ଓ ବଳରାମ ଦାସଂକ ଛଡ଼ା ଏ ତିନି ଜଣଂକ ଭିତରୁ କାହାର ହେଲେ ନାମ ଗଂଧ ନାଇ । ଦିବାକର ଦାସଂକ 'ଜଗନ୍ନାଥ ଚରିତାମୃତ' ପୁସ୍ତକର ୧୯ଶ ଅଧ୍ୟାୟରେ ଜଗନ୍ନାଥ ଦାସଂକ ବିଷୟରେ କୁହାଯାଇଚ ଯେ ସେ 'ମହାନ' ଏବଂ ପ୍ରଭୁଂକର ପରିଚାରକ ଥିଲେ । 'ମହାନଟି ଜଗନ୍ନାଥ ଦାସପ୍ରଭୁ ପରିଚାରକ ।' ବଳରାମ ଦାସଂକ ସଂବଂଧରେ ବଂଗୀୟ କବି ଦେବକୀନଂଦନ ଦାସ ଲେଖିଛଂତି—"ବଂଦେ ଉତ୍କଳୀ ବଳରାମ ଦାସ ମହାଶୟ ।" ମାତ୍ର କୌଣସି ବଂଗୀୟ ବୈଷ୍ଣବ ଗ୍ରଂଥରେ ବହୁ ଖ୍ୟାତ ଅଖ୍ୟାତ ଉତ୍କଳବାସୀ ଭକ୍ତଂକର ନାମ ଥିବା ବେଳେ ଅଚ୍ୟୁତାନଂଦ, ଯଶୋବଂତ କିଂବା ଶିଶୁ ଅନଂତଂକର ଚିହ୍ନ ବର୍ଣ ଦେଖିବାକୁ ମିଳେ ନାଇ । ସେଇପରି ଚୈତନ୍ୟକାଳୀନ କୌଣସି ଓଡ଼ିଆ ଗ୍ରଂଥରେ ମଧ୍ୟ ଏଇ ତିନି ଜଣଂକର ନାମ ନାଇ । ଦାଶରଥି ଦାସଂକ 'ବ୍ରଜବିହାର', ମାଧବ ପଟ୍ଟନାୟକଂକ 'ଚୈତନ୍ୟ ବିଳାସ' ଏବଂ ଦିବାକର ଦାସଂକର 'ଜଗନ୍ନାଥାମୃତ'ରେ ଶହ ଶହ ଓଡ଼ିଆ ଭକ୍ତଂକର ନାମ ରହିଚ, ମାତ୍ର ଏ ତିନିଜଣଂକର ନାମୋଲ୍ଲେଖ ନାଇ ।

କେବଳ ଅଚ୍ୟୁତାନଂଦହିଁ ତାଂକର ବିଭିନ୍ନ ରଚନାରେ ପଂଚସଖାର ଅସ୍ତିତ୍ୱ ଜଣାଇଛଂତି । ଅନ୍ୟ ପକ୍ଷରେ ଏଇ ତଥାକଥିତ ପଂଚସଖାର ଅନ୍ୟ ଚାରିଜଣଂକର ବହୁ ଗ୍ରଂଥ ରହିଥିଲେ ମଧ୍ୟ ତା ମଧ୍ୟରୁ କୌଣସିଟିରେ ଏ ପ୍ରସଂଗ ସ୍ଥାନ ପାଇ ନାଇ । ('ଝଂକାର', ୧୯୬୭ ।୯—ପୃ ୮ ଓ ୮·)

ହଂଟରଂକ ଓଡ଼ିଶା ଇତିହାସରେ ଲେଖା ଅଛି ଯେ ଅଚ୍ୟୁତାନଂଦ ପ୍ରାୟ ୧୦୦ ବର୍ଷ ତଳେ ଜୀବିତ ଥିଲେ । ଏ ବହିଟିର ରଚନା କାଳ ଖ୍ରୀ· ୧୮୭୧ ।

ତେଣୁ ଅଚ୍ୟୁତାନଂଦଂକ ଜୀବତ୍କାଳ ଖ୍ରୀ. ୧୭୭୧ ହେବ । ହଂଟର ଲେଖିଛଂତି—
"He lived about 100 years ago.—History of Orissa, Appendix ix । ଏଠାରେ ଉଲ୍ଲେଖଯୋଗ୍ୟ ଯେ ହଂଟର ପ୍ରାଚୀନ ଓଡ଼ିଆ କବିମାନଂକୁ ବିନା ଦ୍ୱିଧାରେ ଅତୀତରୁ ଅତୀତରେ ନେଇ ଥୋଇଛଂତି । କିଂତୁ ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ ସେ ଜଣେ ହେଲେ କବିଂକୁ ତାଂକର ପ୍ରକୃତ କାଳଠାରୁ ଅର୍ବାଚୀନ କରି ନାହାଂନ୍ତି ।' *

## ପଂଚ୍ୟସଖା ତଥ୍ୟ

ପଂଚସଙ୍ଖ୍ୟା ତଥ୍ୟ ଯେ ସଂପୂର୍ଣ୍ଣ ଅମୂଳକ ଏହା ଅମେ ଆଗରୁ କହିଛୁଁ । ତଥାପି ଏହା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଦୃଢ଼ମୂଳ ହୋଇ ବସିଛି । ଏ ପଂଚସଖା ବିଷୟରେ କେବଳ ଅଚ୍ୟୁତାନଂଦ ଦାସହିଁ ଯାହା ତାଂକ ଗ୍ରଂଥମାନଂକରେ ଉଲ୍ଲେଖ କରିଛଂନ୍ତି । ଅନ୍ୟ କୌଣସି 'ସଖା' ଏ ବିଷୟରେ ଆଦୌ ପାଟି ଫିଟାଇ ନାହାଂନ୍ତି ।

ତୁମେ ମୋର ପଂଚ ଆତ୍ମା ଅଟ ପଂଚ ପ୍ରାଣ ।
ଅବତାର ଶ୍ରେଣୀ ଯେତେ ତୁମ୍ଭ ପାଇଁ ପୁଣ ।
ଯାଅ ଅଚ୍ୟୁତ ଅନଂତ ଯଶୋବଂତ ଦାସ
ବଳରାମ ଜଗନ୍ନାଥ କର ଯା ପ୍ରକାଶ । (ଶୂ ସଂ, ୧୦ମ ଅ.)
ଏମଂତ ପ୍ରକାର ପାଂଚଜଣକୁ
କହିଲ କଳ୍କି ସେ ଆଂଭମାନଂକୁ । (ଶୂ: ସଂ, ୮ମ ଅ)
× × ×
ପ୍ରତାପରୁଦ୍ର ନୃପତି ରାଜ ହୋଇବେ......
ତୁମେ ପାଂଚଜଣ ଆଗେ ହୁଅ ଅବତାର
ନାମତତ୍ତ୍ୱ ଦେଇ ଥୋକେ ପତିତଙ୍କୁ ତାର (ଶୂ.ସଂ., ୧୧ ଅ)

ମାତ୍ର ଅଚ୍ୟୁତନଂଦଂକ ଗ୍ରଂଥମାନଂକରୁ ମିଳୁଥିବା ତଥ୍ୟ ପ୍ରମାଣ ଉପରେ ଭିତ୍ତି କରି ତାଂକୁ ଏବଂ ଯଶୋବଂତଂକୁ ଅଷ୍ଟାଦଶ ଶତକର ଶେଷ ଭାଗରୁ ଜନ୍ମବଂଶ

---

* 'ଝଂକାର', ସେପ୍ଟେଂବର, ୧୯୬୭—ଶ୍ରୀ ସଚ୍ଚିଦାନଂଦ ମିଶ୍ରଂକ ପ୍ରବଂଧ "ପଂଚସଖା—ଏକ ପ୍ରବଂଚନା" ନାମକ ପ୍ରବଂଧ ଏବଂ ସେଇ ସଂଖ୍ୟାର ସଂପାଦକୀୟ ଲେଖା ଦ୍ରଷ୍ଟବ୍ୟ ।

ଶତକର ପ୍ରଥମ ଭାଗ ମଧ୍ୟରେ ଜୀବିତ ଥିଲେ ବୋଲି ବୁଝାଯାଇ ପାରିବ । ସେମାନେ ଶ୍ରୀ ଚୈତନ୍ୟଙ୍କ ତିରୋଧାନର ପ୍ରାୟ ୨୫୦ ବର୍ଷ ପରେ ଜନ୍ମ ହୋଇଥିବାର ସଂଭାବନା । ତେଣୁ ପଂଚସଖା ତଥ୍ୟଟି ଏକ ଅଳୀକ ପ୍ରଶ୍ନର ବୋଲି ମନେହୁଏ । ଏ ଦିଗରେ ହଂଟର ସାହେବ ଅଚ୍ୟୁତାନଂଦଂଙ୍କର ଜୀବତ୍କାଳ ଖ୍ରୀ: ୧୭୬୮ର ପାଖାପାଖି ବୋଲି ଯାହା ତାଂକ "History of Orissa"ରେ ଲେଖିଛଂତି ତାହା ସତ୍ୟ ବୋଲି ଜଣାପଡ଼େ ।

## ଅଚ୍ୟୁତାନଂଦଂଙ୍କ ପରିଚୟ

ନିଜକୁ 'ପଂଚସଖା'ର ଅନ୍ୟତମ ସଖା ବୋଲି ଦାବୀକରୁଥିବା ଅଚ୍ୟୁତାନଂଦ ତାଂକ ପ୍ରଣୀତ 'ଶୂନ୍ୟ ସଂହିତା' 'ଉଦୟ କାହାଣୀ' ଓ 'ଦଶ ପଟଳ ମାଳିକା' ଆଦି ଗ୍ରଂଥରେ ନିଜର ପରିଚୟ ଦେଇଛଂତି । ସେଥିରୁ ଜଣାଯାଏ ସେ ତିଳକଣା ଗ୍ରାମର ଅହୋକରଣ କୁଳର ଦୀନବଂଧୁ ଖୁଂଟିଆ ଓ ପଦ୍ମାବତୀଂକ ପୁତ୍ର । ସେ ଆଠ ବର୍ଷ ବୟସରେ ନୀଳାଚଳରେ ଚୈତନ୍ୟଂକୁ ଦର୍ଶନ କରିଥିଲେ । ଚୈତନ୍ୟଂକ ଆଜ୍ଞାରେ ସନାତନ ଗୋସାଇଁ ତାଂକୁ ମଂତ୍ରଦାନ କଲେ । ସେ ନୀଳାଚଳରେ ରହିଲେ । ଚୈତନ୍ୟଂକ ତିରୋଧାନ ପରେ ସେ ତିଳକଣା ଫେରିଆସି ଅନଂଗ ରାଜା ରଘୁରାମ ଚଂପତିଂଙ୍କ କନ୍ୟା 'ଚଂପା'କୁ ବିବାହ କଲେ । ଏଇ ରଘୁରାମ ହେଉଛଂତି ପଂଚ-ସଖାର ଅନ୍ୟତମ ଯଶୋବଂତଂକ ଶଳା । ଅର୍ଥାତ୍ ଯଶୋବଂତ ଅଚ୍ୟୁତାନଂଦଂକର ମଉଳାଶୁର । ପରେ ଅଚ୍ୟୁତାନଂଦ ନେମାଳଠାରେ ମଠ କରି ରହିଲେ । ଏଇ ନେମାଳଠାରେ ହିଁ ତାଂକର ସବୁ ଗ୍ରଂଥ ରଚିତ ହୋଇଥିବା ଜଣାଯାଏ । (ଏଜ୍ନ) ବର୍ତ୍ତମାନ ଅଚ୍ୟୁତାନଂଦଂଙ୍କ ଗୁରୁ ପରଂପରା ବିଚାର କରାଯାଉ ।

"ଅଂଭେ ତୋହ ଗୁରୁ     ମୋ ଗୁରୁ କେଶବ<br>
ତାଂକ ଗୁରୁ ରାମକୃଷ୍ଣ<br>
ତାଂକ ଗୁରୁ ଶ୍ୟାମ-     ଘୋଷ ସାରଂଗ ଯେ<br>
ଘୋଷ ତାଂକ ଗୁରୁ ବ୍ରହ୍ମ ।<br>
ସାରଂଗ ଘୋଷ     ଗୋସାଇଁ ପରିବାର<br>
ଚୈତନ୍ୟ ଚରଣେ ମିଳି,<br>
ମାଧବ ଆଚାର୍ଯ୍ୟ     ସଂପ୍ରଦାୟେ ମିଶି<br>
ମଠକୁ ଯେ ଗଲେ ଚଳି ।

(ଶୂନ୍ୟସଂହିତା, ଗ୍ରଂଥାରଂଭ)

'ଶୂନ୍ୟ ସଂହିତା'ର ଗୁରୁ-ପରଂପରାଟି 'ଗୁରୁଭକ୍ତଗୀତା'ରେ ମଧ୍ୟ ସ୍ଥାନ ପାଇଛି । ମାତ୍ର ସେଥିରେ କେଶବଂକ ସ୍ଥାନରେ ନନ୍ଦକିଶୋରଂକ ନାମ ମିଳେ ।

ଗୁରୁ-ପରଂପରା

ପୁଣି ଗୁରୁଭକ୍ତ ଗୀତାରେ ଅନ୍ୟତ୍ର କହ୍ନୁଂକ ଗୁରୁ କେଶବ ସ୍ଥାନରେ ଶ୍ରୀଚରଣ କୁହାଯାଇଛି । ସେ ଯାହାହେଉ ଚୈତନ୍ୟଂକ ଶିଷ୍ୟ ସାରଂଗ ଘୋଷ ଓ ଅଚ୍ୟୁତାନଂଦଙ୍କ ମଧ୍ୟରେ ପାଂଚ ଜଣ ଗୁରୁଂକ ବ୍ୟବଧାନ ରହୁଛି । ଗୁରୁଂକ ଜୀବଦ୍ଦଶାରେ ଶିଷ୍ୟର ମଂତ୍ରଦାନ କରିବା କଥା ନୁହେ । ଏଣୁ ଜଣେ ଲେଖକଂକ ମତରେ ଗୁରୁ ଓ ଶିଷ୍ୟଂକ ବୟସର ବ୍ୟବଧାନ ୩୦ ବର୍ଷ ଧରିଲେ ଚୈତନ୍ୟ ଓ ଅଚ୍ୟୁତାନଂଦଂକ ମଧ୍ୟରେ ବ୍ୟବଧାନ ପ୍ରାୟ ୧୫୦ ବର୍ଷ ହେବ । (ଏକ୍ନ)

ଏହାଛଡ଼ା କେତେକ ଐତିହାସିକ ବୃତ୍ତାଂତ ଏଇ ଅହେତୁ ଅଚ୍ୟୁତାନଂଦଂକ ଲେଖାରେ ଦେଖାଯାଏ । ସେ 'ଗରୁଡ଼ ଗୀତା'ରେ ଶ୍ରୀକ୍ଷେତ୍ରର ସୀମା ସତ୍ୟବାଦୀ ପର୍ଯ୍ୟଂତ ବୋଲି କହୁଛଂତି ।

"କ୍ଷେତ୍ରର ମହିମା ପାଂଚ କୋଶ ସୀମା
ସତ୍ୟବାଦୀ ପରଯଂନ୍ତେ ।" (ଗରୁଡ଼ ଗୀତା, ୨ୟ ଅ)

ଏଇ ସତ୍ୟବାଦୀ ସାକ୍ଷୀଗୋପାଳକୁ, ପୁରୀ, ଚୌଦ୍ୱାର, କଟକ, ଖୋରଧା, ରଥପୁର ଆଦି ହୋଇ ଊନ୍ନବିଂଶ ଶତାବ୍ଦୀରେ ଆସିଲେ । ତେଣୁ ଅଚ୍ୟୁତାନଂଦ ଖ୍ରୀ ୧୫୧୦-୩୩, ଅର୍ଥାତ୍ ଚୈତନ୍ୟଂକ ପୁରୀ ରହଣି ମଧ୍ୟରେ ପୁରୀ ସୀମାରେ ସତ୍ୟବାଦୀକୁ ପାଇଲେ କେଉଁଠୁ ?

ପୁଣି 'ବର୍ଣ୍ଣଟୀକା'ରେ ସେ ପୁରୀରେ ଅରୁଣ ସ୍ତଂଭ ଥିବା କଥା ଲେଖିଛଂତି:

"ନିତ୍ୟ ନୀଳାଚଳ ପୂର୍ବ ଦ୍ୱାରରେ
ସ୍ତଂଭ ଗୋଟିଏ ଅରୁଣ ନାମରେ ।
ସେଠାରେ ବଂଶପାବଛୁ ଅଂତେଣ
କି ପୁର ଗ୍ରାମ ସୀମା ସନ୍ନିଧାନ ।

ଅରୁଣ-ସ୍ତଂଭ

ଅଷ୍ଟାଦଶ ଶତାବ୍ଦୀର ପ୍ରାଂତ ଭାଗରେ ମରହଟ୍ଟାମାନଂକ ଦ୍ୱାରା ଅରୁଣ ସ୍ତଂଭକୁ କୋଣାର୍କରୁ ଆଣି ପୁରୀରେ ସ୍ଥାପନା କରାଯାଇଥିଲା । ତେଣୁ ଊନ୍ନବିଂଶ ଶତାବ୍ଦୀର ଲୋକ ନ ହେଲେ ବଡ଼ ଦେଉଳ ଆଗରେ ଅରୁଣ ସ୍ତଂଭର ବର୍ଣ୍ଣନା କରଂତେ କପରି ?

'ଗୁରୁଭକ୍ତଗୀତା'ରେ ଦିବ୍ୟସିଂହଦେବ (ଖ୍ରୀ: ୧୬୮୪-୧୭୧୯) ଓ ଗୋପୀନାଥ ଦେବ (ଖ୍ରୀ: ୧୭୧୯—୧୭୨୭) ପ୍ରଭୃତିଂକ ନାମ ଅଛି । ଦଶପଟଳ

ମାଳିକାରେ ବୀରକେଶରୀ ଦେବଂକ ( ଖ୍ରୀ: ୧୭୭୪-୧୭୯୦ ) କାରାବାସ କଥା ଲେଖାଅଛୁ ।

"ପ୍ରତାପ ନୃପତି ଯାଏ ପୂଜାର ଧାରଣା ।
ପ୍ରତାପଠାରୁ ମୁକୁନ୍ଦରେ କଛୁ ପୁଣ ।
ମୁକୁନ୍ଦଠାରୁ ଦିବ୍ୟ କଳର ବଗ୍ଭର ।
ସଂଘକୁ ଲେଙ୍ଖନ ପାଇ ନ କର ବଗ୍ଭର ।
କିଂବା ଗୋପୀନାଥ କାଳେ ଅରଷ୍ଟି ର ଗୋଳ ।
ନାମକୁ ନ ଚହ୍ନେ ପେଟ କମ୍ପଂତେ ସକଳ"

ପୁଣି—"ରଜା ବଂଧନେ ପଡ଼ିଥିବ ସହି ।
ଶ୍ରୀବସ୍ତ ବୀରକେଶରୀଂକ କହି ।
ନଥିବ କଛୁ ରାଜନୀତି ମାନ ।
ଦୁଃଖ ପାଉଥିବ ଧରା ହୋଇଣ ।" ( ଦର୍ଶପଟଳ ମାଳିକା )

ପୁଣି "ଶୂନ୍ୟ ସଂହିତା"ର ୩ୟ ଅଧ୍ୟାୟରେ କୃଷ୍ଣ କହୁଛଂତି —"ମୋହ ବଂଶ ମୋତେ ନରତେ ପୂଜିବେ ନିଯୋଗ ଦେବେ ଯୋଗାଇ ।" ଅର୍ଥାତ୍ ଯଦୁବଂଶର ନୃପତିମାନେ ପୂର୍ବରେ ମୋର ସେବାପୂଜାର ବିଧାନ କରିବେ । "ମୋହ ବଂଶ" ଅର୍ଥରେ ଯଦୁବଂଶ । ଖୋରଧା ରାଜବଂଶର ଯଦୁବଂଶ ଦାବୀ ଜଣାଶୁଣା କଥା । 'ମାତ୍ର ଏଇ ଖୋରଧା ରାଜବଂଶର (ଭୋଇ ବଂଶର) ପ୍ରତିଷ୍ଠା (ଖ୍ରୀ. ୧୫୮୦) ହେବାର ୭୦ ବର୍ଷ ପୂର୍ବେ ଅଚ୍ୟୁତାନଂଦଂକର ଚୈତନ୍ୟଂକର ସଖା ଥିବା ସଂଭବ ନୁହେ ।' (ଏଜନ୍)

ତା'ଛଡ଼ା ତାଂକ ରଚନାରେ କେତେକ ଯାବନିକ ଶବ୍ଦ ଯଥା ଅଲେଫ୍ ତୁରୁକ୍, ଇତ୍ୟାଦି ତଂକ ରଚନାକୁ ପରବର୍ତ୍ତୀ କାଳର ବୋଲି ସାବ୍ୟସ୍ତ କରେ । ଏହାଛଡ଼ା ଭାଷା-ବିନ୍ୟାସ ଦିଗରୁ ତଥାକଥିତ ଅଚ୍ୟୁତାନଂଦଂକ ଗ୍ରଂଥଗୁଡ଼ିକ ଅର୍ବାଚୀନ ମନେ ହୁଅଂତି । ତାଂକ ରଚନାରେ ମାଫିକ୍, ହକୀକତ୍, ହିଂଦୁ, କଲମ,

* ମାଦଳାପାଂଜି କହେ—"ମରହଟ୍ଟା ଗୁରୁ ବ୍ରହ୍ମଚାରୀ ଗୋସାଇଁ କୋଣାର୍କ କ୍ଷେତ୍ରରୁ ମୁଗୁନିପଥର ସ୍ତଂଭ ଆଣି ପୁରୀ ସିଂହଦ୍ୱାର ଚକଡ଼ାରେ ରଖାଇଲେ ।" ଏହାହିଁ ଅରୁଣ ସ୍ତଂଭ ରୂପେ ସେଠାରେ ରହିଛି । ଏହା ଅଷ୍ଟାଦଶ ଶତାବ୍ଦୀର ଶେଷଭାଗର କଥା ।

ଓଜନ, ତଳପ ଆଦ୍ଦ ବହୁ ଯାବନକ ଶଦ ମିଳଂଛ, ଯାହା ଷୋଡଶ ଶତାବ୍ଦୀର ଲେଖାରେ ରହଂତା ନାଇ ।

ଷୋଡଶ ଶତାବ୍ଦୀ ପର୍ଯଂତ ଦ୍ୱିତୀୟା ଏକବଚନରେ 'କଇ' ଏବଂ ବହୁବଚରେ 'ନ୍ତ' ପ୍ରତ୍ୟୟ ଚଳୁଥିଲ । ମାତ୍ର ଏ ସବୁ ପ୍ରୟୋଗ ଅଚ୍ୟୁତାନଂଦଂକ ଲେଖାରେ ନାଇ । (ଏଜ୍ନ)

ଜଣେ ଗବେଷକଂକ ମତରେ ଦିବାକର ଦାସ ଅଷ୍ଟାଦଶ ଶତକର ଆରଂଭରେ 'ଜଗନ୍ନାଥାମୃତ' ଲେଖି ଚୈତନ୍ୟକାଳୀନ ଓଡ଼ିଆ ସାଧକ ଜଗନ୍ନାଥ ଦାସଂକର 'ଅତିବଡ଼ୀ' ସମ୍ପ୍ରଦାୟର ପ୍ରତିଷ୍ଠା ପାଇଁ ଚେଷ୍ଟା କଲେ । ଜଗନ୍ନାଥାମୃତର (ବା ଜଗନ୍ନାଥଚରିତାମୃତ) ପ୍ରଭାବକୁ ବା ଅନ୍ୟକଥାରେ ବ୍ରାହ୍ମଣଂକର ପ୍ରାଧାନ୍ୟକୁ ପ୍ରତିହତ କରିବା ପାଇଁ 'ପଂଚସଖା' ଭାବନାଟି ଅଚ୍ୟୁତାନଂଦଂକ ମୁଂଡକୁ ଆସିଥିବ । 'ପଂଚସଖା'ର ଜଗନ୍ନାଥ ଦାସଂକୁ ଅଚ୍ୟୁତାନଂଦ ଅବ୍ରାହ୍ମଣ କରି ରଖିଛଂନ୍ତି । କାରଣ ପଂଚସଖା ସମସ୍ତେ ଶୂଦ୍ର । ମାତ୍ର "ଜଗନ୍ନାଥାମୃତ'ର ଜଗନ୍ନାଥ ଦାସ ବ୍ରାହ୍ମଣ । ପଂଚସଖାର ଜଗନ୍ନାଥ ଦାସଂକୁ ଶୂଦ୍ର କରି ଅଚ୍ୟୁତାନଂଦ ରଖିଛଂତି :—

"ତହୁଁ ପଂଚସଖା ଶୂଦ୍ର ହେଇଲୁ ।" ('ଉଦୟ କାହାଣୀ')

ପୁଣି, "ପଂଚସଖାମାନେ ବ୍ରାହ୍ମଣ ନୋହୁଁ ।" "

କିଂତୁ ନଂଦ ଦାସେ ତଂକ "ଅଣାକାର ସଂହିତା''ରେ ଜଗନ୍ନାଥଂକୁ ବ୍ରାହ୍ମଣ ବୋଲି କହିଛଂତି । (ସଚ୍ଚିଦାନଂଦ ମିଶ୍ର, 'ଦିଗଂତ'—ସେପ୍ଟେଂବର, ୧୯୬୭)

## ଅଣାକାର ସଂହିତା ଓ ଚୈତନ୍ୟ ଭାଗବତ

ନଂଦ ଦାସଂକ 'ଅଣାକାର ସଂହିତା' ଏବଂ ଈଶ୍ୱର ଦାସଂକ 'ଚୈତନ୍ୟ ଭାଗବତ'ରେ ପଂଚସଖାର ଉଲ୍ଲେଖ ଅଛି । ମାତ୍ର ଏ ଦୁଇଟି ଯାକ ଗ୍ରଂଥ ଅଷ୍ଟାଦଶ ଶତାବ୍ଦୀ ପରେ ରଚିତ । ତେଣୁ ଏମାନଂକର ସାକ୍ଷ୍ୟ ଗ୍ରହଣଯୋଗ୍ୟ ନୁହେ । ଅଚ୍ୟୁତ ନଂଦ ପଂଚସଖା ତତ୍ତ୍ୱ ପ୍ରଚାର କରିବା ପରେ ନଂଦ ଦାସ ଓ ଈଶ୍ୱର ଦାସ ତାଂକ ମତକୁ ଅନୁସରଣ କରି ଯାଇଛଂତି ।

ଅଣାକାର ସଂହିତାର ରଚୟିତା ନଂଦ ଦାସଂକ ଜନ୍ମ ଖ୍ରୀ: ୧୮୫୧ ମସିହାରେ । କାରଣ ନଂଦ ଦାସ ରାମଚଂଦ୍ରଦେବଂକ ୪୩ ଅଂକରେ ଜନ୍ମ ହୋଇଥିବା କଥା କହଂତି । ସେ ପୁଣି ନିଜ ଗ୍ରଂଥରେ ଦ୍ୱାରିକା ଦାସଂକ କଥା ଉଲ୍ଲେଖ କରିଛଂତି ଏବଂ ଦ୍ୱାରିକା ଦାସ ତାଙ୍କ ଜନ୍ମ ଅଂଟେ ରାମଚଂଦ୍ରଦେବଂକ ୪୩ ଅଂକରେ ପୁଣି

ଜନ୍ମଗ୍ରହଣ କରିବେ ବୋଲି କହିଛନ୍ତି । ଦ୍ୱାରିକା ଦାସଂକ ପରେ ରାମଚନ୍ଦ୍ରଦେବ (୩) ହିଁ ୪୩ ଅଂକ ଯାଏ ରାଜତ୍ୱ କରିଥିଲେ । 'ଚୈତନ୍ୟ ଭାଗବତ'ର ଭାଷା ଦୃଷ୍ଟିରୁ ଊଣିଶ ଶତକର ଭାଷାଠାରୁ ପ୍ରାଚୀନତର ନୁହେ ଏବଂ ଗ୍ରଂଥକାର ଈଶ୍ୱର ଦାସଂକ ଜୀବନକାଳ ଏଇ ଶତକରେ ବୋଲି କୁହାଯାଇପାରେ । (*Ibid*)

'ମାଦଳା ପାଂଜି'ର ଯେଉଁ ଅଂଶ 'ଗଦ୍ୟପଦ୍ୟାଦର୍ଶ'ରେ ଆର୍ତ୍ତବାବୁ ପ୍ରକାଶ କରିଛନ୍ତି ସେଥିରେ ଚୈତନ୍ୟ ଓଡ଼ିଶା ଆସିଲା ବେଳକୁ ଅଚ୍ୟୁତାନନ୍ଦ, ଅନଂତ, ଯଶୋବନ୍ତ, ଅଢବଡ଼ୀ ଜଗନ୍ନାଥ ଦାସ ଓ ରଘୁ ଅର୍ଜିତ ଥିବା କଥା ଲେଖା ଅଛି । ମାତ୍ର ବଳରାମ ଦାସଂକ ନାମ ନାଇ । ଏଥିରେ 'ପଂଚସଖା' ଏଭଳି କୌଣସି ଗୋଷ୍ଠୀର ଉଲ୍ଲେଖ ମିଳେ ନାଇ । ମାତ୍ର ମାଦଳା ପାଂଜିର ବିଶ୍ୱାସଯୋଗ୍ୟତା ବା କେତେଦୂର ? ପ୍ରାଚୀ-ପ୍ରକାଶିତ "ରାଜଭୋଗ ଇତିହାସ' ଅଂତର୍ଭୁକ୍ତ ମାଦଳାପାଂଜିରେ ମଧ୍ୟ 'ପଂଚସଖା' ଶବ୍ଦର ଉଲ୍ଲେଖ ନାଇ । ଏଥିରେ ଲେଖାଅଛି ଯେ ଚୈତନ୍ୟ ମହାପ୍ରଭୁ ନଦୀୟା-ନବଦ୍ୱୀପରୁ ଜଗନ୍ନାଥ ଦର୍ଶନରେ ଆସିଥିବାବେଳେ ଷଡ଼ ଗୋସାଇଁ ତାଂକୁ ଭେଟିଥିଲେ । ସେମାନେ ହେଉଛନ୍ତି, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଶିଶୁ ଅନଂତ ଏ ପାଂଚ ଗୋସାଇଁ ଏବଂ ରଘୁନାଥ ଅର୍ଜିତେ ଭଉଁରା ଗୋସାଇଁ । ତେଣୁ ଆର୍ତ୍ତବାବୁ ପଂଚସଖା ବିଷୟିକି କେଉଁଠ ପାଇଲେ ? ତାଂକ ନିଜ ପ୍ରକାଶିତ ମାଦଳା ପାଂଜିର ଦୁଇଟି ଭିନ୍ନ ଭିନ୍ନ ପାଠରେ ତ ଗୋଟିକରେ ଗୃହ ଗୋସାଇଁ ଏବଂ ଅନ୍ୟଟିରେ ଷଡ଼ ଗୋସାଇଁ ଥିବା କଥା ଲେଖା ଅଛି । 'ପଂଚସଖା' କଥା କେଉଁଥିରେ ବି ନାଇ ।

ମାଦଳାପାଂଜିର ପ୍ରାମାଣିକତା କେତେଦୂର ତାହା ଆଲୋଚନା କଲେ ଦୀର୍ଘ ପୋଥି ହେବ । ଏଥିର ବହୁତ ବିଷୟ ଅଷ୍ଟାଦଶ ଊନବିଂଶ ଶତକରେ ଇଂରାଜୀ ଶାସକଂକ ନିକଟରେ ନିଜର ଦାବୀ ପ୍ରମାଣ କରିବା ପାଇଁ ଭୋଇ ବଂଶ ରାଜାଂକ ବରାଦରେ ଲେଖା ଯାଇଚି । ଡଃ ମହତାବ୍‌ଂକ ମତରେ ଏହା ମୋଗଲ୍ ଅମଳରୁ ଲେଖା ହୋଇ ଆସୁଚି । (ଓ ଇ) ଏହାର ଭାଷା ନିତାଂତ ଅର୍ବାଚୀନ ।

## ଆଉ ଜଣେ ଅଚ୍ୟୁତାନନ୍ଦ ।

ପଂଚସଖାର ଜଣେ ବୋଲି ଦାବୀ କରୁଥିବା ତିଳକଣାର ଓ ପରେ ନେମାଳ-ମଠର ଅହୋକରଣ ଅଚ୍ୟୁତାନନ୍ଦଂକ ଛଡ଼ା ଆଉ ଜଣେ ଅଚ୍ୟୁତ ବା ଅଚ୍ୟୁତାନନ୍ଦ ଥିଲେ—ସିଏ 'ହରିବଂଶ', 'ଅନଂତ ଗୋଇ' 'ଗୋପାଳଂକ ଓଗାଳ' ଇତ୍ୟାଦି ଗ୍ରଂଥମାନ ଲେଖି ଯାଇଛନ୍ତି । ସେ ଥିଲେ ଜାତିରେ ଗୋପାଳ । ସେ ତାଂକର

କୌଣସି ଗ୍ରଂଥରେ ନିଜକୁ ପଂଚସଖାର ଜଣେ ବୋଲି ଦାବୀ କରି ନାହାଂନ୍ତି । ସେ ରଣପୁର ମଧ୍ୟସ୍ଥ ଗଂଡ଼ ଗ୍ରାମରେ ରହୁଥିଲେ ଏବଂ ରଣପୁର ରାଜା ପଦ୍ମନ ନରେଂଦ୍ରଂକ ଦ୍ୱାରା ପାଳିତ ହେଉଥିଲେ । (ଏଇ ପଦ୍ମନ ନରେଂଦ୍ର ଉତ୍କଳୀୟ ମୁକୁଂଦଦେବଙ୍କ ଝିଆରୀଂକୁ ବିବାହ କରିଥିଲେ ବୋଲି ରଣପୁର ରାଜବଂଶାବଳୀରୁ ଜଣାଯାଏ । ମୁକୁଂଦଦେବ ଖ୍ରୀ ୧୫୫୯ ଠାରୁ '୬୭ ପର୍ଯ୍ୟଂତ ରାଜତ୍ୱ କରୁଥିଲେ । ) ତେଣୁ ଏଇ ଅଚ୍ୟୁତାନଂଦଂକୁ ଷୋଡ଼ଶ ଶତାବ୍ଦୀର ଶେଷ ଭାଗର ଲୋକ ବୋଲି କୁହାଯାଇପାରେ । ସେ ଚୈତନ୍ୟଂକର ସମସାମୟିକ ନହେଲେ ମଧ୍ୟ ପ୍ରାୟ ପଚିଶ ବର୍ଷ ନିକଟବର୍ତ୍ତୀ । ସେ ତାଂକ ଗ୍ରଂଥମାନଂକରେ କେଉଁଠି ବ୍ରହ୍ମଜ୍ଞାନ ବା ଶୂନ୍ୟବାଦ ଚର୍ଚ୍ଚା କରି ନାହାଂନ୍ତି । ସେ ମଧ୍ୟ କୌଣସିଠାରେ ନୀଳାଚଳି, ତିଳକଣା କିଂବା ନେମାଳର ନାମ ଉଲ୍ଲେଖ କରି ନାହାଂନ୍ତି ।

"ରଣପୁର ସୀମା ମଝି ଯେ ଗଂଡ଼ ଗ୍ରାମରେ
ମୋହର ଘର ଅଟଇ ତହିଁର ମଧ୍ୟରେ ।
ତହିଁର ରାଜା ଅଟଇ ପଦ୍ମନ ନରେଂଦ୍ର ।"

—ହରିବଂଶ ।

ଏବଂ "ପଦ୍ମନ ନରେଂଦ୍ର ମୋତେ ଅନ୍ନ ଦେଇ ପୋଷଇ—

(ଗୋପାଳଂକ ଓଗାଳ)

ଏବଂ "ମୁଁ ଥିବି ମଣିନାଗକୁ ଯୋଜନେ ଅଂତର ।"

(ଅନଂତ ଗୋଇ)

ତେଣୁ ରଣପୁରର ଏ ଅଚ୍ୟୁତ ବା ଅଚ୍ୟୁତାନଂଦ ତିଳକଣା ଏବଂ ନେମାଳର ଅଚ୍ୟୁତାନଂଦଂକଠାରୁ ସଂପୂର୍ଣ୍ଣ ଭିନ୍ନ । (ଏଜନ୍ନ) ଓଡ଼ିଶାର ଅନେକ ଐତିହାସିକ ଏବଂ ସାହିତ୍ୟ-ଇତିହାସ ଲେଖକ ଏ ଦୁଇ ଅଚ୍ୟୁତାନଂଦଂକୁ ଏକ କରି ନେଇ ସମସ୍ତ ନିରୂପଣରେ ଗୋଳମାଳ କରିଛଂନ୍ତି ଏବଂ ଭୁଲ ସିଦ୍ଧାଂତରେ ପହଂଚିଛଂନ୍ତି ।

ଅତଏବ, ଅଚ୍ୟୁତାନଂଦ, ଯଶୋବଂତ ଓ ଶିଶୁ ଅନଂତଂକର ଜୀବତ୍କାଳ ଯେ ଊନବିଂଶ ଶତାବ୍ଦୀରେ, ଏହା ନିଃସଂଦେହରେ ପ୍ରମାଣ କରାଯାଇପାରେ ।

ରଣପୁରର ଅଚ୍ୟୁତାନଂଦଂକର ବିଷୟବସ୍ତୁ ଓ ଧର୍ମ-ଧାରଣା ତିଳକଣାର ଅଚ୍ୟୁତାନଂଦଂକଠାରୁ ସଂପୂର୍ଣ୍ଣ ଅଲଗା । ଏ ଦୁହିଁଙ୍କି କଦାପି ଏକ ବ୍ୟକ୍ତି କୁହାଯାଇ ନ ପାରେ ।

'ହରିବଂଶ' ଏବଂ 'ଗୋପାଳଂକ ଓଗାଳ' ପ୍ରଭୃତିର ପ୍ରଣେତା ଗୋପାଳ ଅଚ୍ୟୁତାନଂଦ ମଧ୍ୟ ଚୈତନ୍ୟଂକ ଜୀବଦ୍ଦଶା ପରେ ଜନ୍ମ ହୋଇଥିଲେ ବୋଲି

ଉକ୍ତ ଲେଖକ ଅନୁମାନ କରିଛନ୍ତି । କାରଣ ପଦ୍ମନ ନରେନ୍ଦ୍ରଙ୍କ ଆଗ୍ରହରେ କବିତା ରଚନା କଲାବେଳକୁ ସେ ଯୁବକ ମାତ୍ର ।

"ମୁଁ ବାଳୁତ ମତି କିଛୁ ଜ୍ଞାନ ନାହିଁ ମୋର ।"

( ଗୋପାଳଙ୍କ ଓଗାଳ )

"ନୁହଇ ସେ ବୃଦ୍ଧ ମୁହିଁ ବାଳୁତ ସେ ଦେଖ ।"

( ଗୋପାଳଙ୍କ ଓଗାଳ )

ତାଙ୍କୁ ଷୋଡଶ ଶତକର ଶେଷ ଭାଗର ବ୍ୟକ୍ତି ବୋଲି କୁହାଯାଇପାରେ । ତେଣୁ ତାଙ୍କୁ ଚୈତନ୍ୟଙ୍କ ପଂଚସଖାର ଅନ୍ୟତମ ବୋଲି ଗ୍ରହଣ କରିବା ସଂଭବ ନୁହେ । ସେ ମଧ୍ୟ କେଉଁଠାରେ ନିଜକୁ ଚୈତନ୍ୟଙ୍କର ପଂଚସଖାର ଜଣେ ବୋଲି ନିଜ ଗ୍ରଂଥମାନଂକରେ ଉଲ୍ଲେଖ କରି ନାହାଂତି । ଏହାଛଡ଼ା ତାଂକର କୌଣସି ରଚନାରେ ନୀଳାଚଳ ପ୍ରସଂଗ କିଂବା ନିତ୍ୟକାରବାଦ, ବ୍ରହ୍ମତତ୍ତ୍ୱାଦିର ଆଲୋଚନା ଦେଖିବାକୁ ମିଳେ ନାଇ । (ଏଜନ୍ମ) ଏକଥା ଆଗରୁ କହିଛୁ ।

## ମାଦଳାପାଂଜି

ମାଦଳାପାଂଜିର ସତ୍ୟତା ଉପରେ ଆଦୌ ବିଶ୍ୱାସ ସ୍ଥାପନ କରାଯାଇ ନ ପାରେ । କାରଣ ଏହାର ଭାଷା ଭୋଇବଂଶ ଅମଳର ଗଦ୍ୟଠାରୁ ଆଦୌ ପ୍ରାଚୀନତର ମନେ ହୁଏ ନାଇ । ତାହାଛଡ଼ା ଯେଉଁ ପାଠରେ ଅଚ୍ୟୁତାନଂଦ, ଯଶୋବଂତ ପ୍ରଭୃତିଂକ ନାମ ଅଛି ତାହା ଊନବିଂଶ ଶତକର ଗଦ୍ୟଠାରୁ ଭିନ୍ନ ନୁହେ । ଯେପରି ଜଣାଯାଏ ଭୋଇ ବଂଶର ରାଜାମାନଂକ ଅମଳରେ ମାଦଳାପାଂଜି ଲିଖିତ ହୋଇଥିଲା । ତତ୍କାଳୀନ ମୋଗଲ ଓ ପରେ ଇଂରାଜ ଶାସକମାନଂକ ଆଗରେ ପୁରୀ ମଂଦିର ଉପରେ ନିଜର ଦାବୀ ସପକ୍ଷରେ ପ୍ରମାଣ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ମାଦଳାପାଂଜି ଭୋଇ ରାଜାମାନଂକ ଆଜ୍ଞାରେ ଲିଖିତ ହୋଇଥିବା ପରି ଜଣାଯାଏ । ଏହାର ଗଦ୍ୟଭାଷା ଦେଖିଲେ ଯେ କେହି ଏହା କହିବ ।

ଯଯାତି କେଶରୀଂକ (୭୯୫—୮୪୦) ଅମଳରୁ ଅର୍ଥାତ୍ ଖ୍ରୀ: ୯ମ ଶତକର ପ୍ରାରଂଭରୁ ମାଦଳାପାଂଜି ଧାରାବାହିକ ଭାବେ ଲିଖିତ ହୋଇ ଆସୁଛି ବୋଲି ଆର୍ତ୍ତବଲ୍ଲଭ ମହାଂତି "ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ" ପୁସ୍ତକର ଇଂରାଜୀ ଭୂମିକାରେ କହିଛଂତି । ସୂର୍ଯ୍ୟନାରାୟଣ ଦାଶ ଓ ଡଃ ମାୟାଧର ମାନସିଂ ପ୍ରମୁଖ ନିଜ ନିଜ ଓଡ଼ିଆ ସାହିତ୍ୟର ଇତିହାସରେ ଏହା ଚୋଡ଼ଗଂଗଦେବଂକ ଅମଳରୁ ଅର୍ଥାତ୍ ଖ୍ରୀଷ୍ଟୀୟ ୧୦୭୭-୧୧୪୭ରୁ ଲେଖା ହୋଇ ଆସୁଛି ବୋଲି କହନ୍ତି । ମାତ୍ର ଯେଉଁ ଭାଷାରେ

ଚୋଡଗଂଗ ଓ କପିଳେଂଦ୍ରଂକୁ ବର୍ଣ୍ଣନା କର୍‌ଯାଇଛି ସେଥିରେ ଉକ୍ତ ସମ୍ରାଟମାନେ ପାଂଜିକରଣଂକର ମୁଂଡକାଟ କରିବା କଥା, ଭଗ୍ନ ଦେଇ ପାଂଜିରେ ଲେଖେଇବା ତ ଦୂରର କଥା !

"...ତୁ ଦକ୍ଷିଣ ଯାଇ ଗୋକର୍ଣ୍ଣରସର ସ୍ୱର୍ଗକୁ ଯେ ଗଂଡିପୁଅ ଯେ ଚୋରଗଂଗା ଅଛି ତାକୁ ଆଂଭ ଆଜ୍ଞାରେ ଆଣି ଓଡ଼ିଶାରେ ରାଜତ୍ୱ କରାଇବୁ । ଏମଂତକୁ ସେ ବ୍ରାହ୍ମଣ ଦକ୍ଷିଣ ଯାଇ ଗଂଡିପୁଅ ଚୋରଗଂଗା ଟୋକାଂକ ସଂଗରେ ଖେଳରେ ରଜା ହୋଇଅଛି । ପାଖକୁ ସେ ଟୋକାଂକ ବାହାରେ ଅନ୍ୟ ଲୋକ ଯିବାର ନାହିଁ । ସେ ବ୍ରାହ୍ମଣ ଟୋକାଂକ ଆଗରେ କହିଲ ଓଡ଼ିଶାରୁ ବ୍ରାହ୍ମଣ ଜଣେ ଆସିଅଛି । ସେ ଟୋକା ଚୋରଗଂଗାକୁ କହିବାରୁ ଖପରରେ ଖପର ଖଂଡିଏ ଲେଖି ସେ ଟୋକା ମୂଳେ ଦେଲ । × × × ସେ ବ୍ରାହ୍ମଣ କହିଲ ଭୁବନେଶ୍ୱର ଦେବ ଆଜ୍ଞା ଦେଇଛଂତି । ତୁଂଭେ ଓଡ଼ିଶାରେ ରଜା ହେବ । ଏମଂତ ଶୁଣି ସନମତ କଲ । ମାକୁ କହିଲ । ମା କହିଲ ମୋ ସଂଗାତ ନେତେଇ ଧୋବଣୀ ସଂଗେ ଭେଟ ହୋଇଯିବୁ ।" (ମାଦଳାପାଂଜି—ପ୍ରାଚୀ ସଂସ୍କରଣ)

ସୂର୍ଯ୍ୟବଂଶୀ ମହାରାଜା କପିଳେଂଦ୍ର ଦେବଂକ ବର୍ଣ୍ଣନା ଏହିପରି :—

"ଏମଂତକୁ ସୂର୍ଯ୍ୟବଂଶୀ ରାଉତ କପିଲ ବ୍ରାହ୍ମଣ ଘରେ ବାଛୁରି ରଖିଥାଂତି । × × ଥୋକାଏ ଦିନ ଉତ୍ତାରୁ ବ୍ରାହ୍ମଣ ଘରୁ କାଢିଲ ବାହାର ହୋଇ ତେଲଙ୍ଗିଆଂକ ସଂଗେ ସାଂଗ ହୋଇ ଚୋରି କଲେ । ପୁଣି ଥୋକାଏ ଦିନ ଉତ୍ତାରୁ ଭିକାରି ହୋଇ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରେ ମାଗି ଖାଆଂତି ।"

ଏଭଳି ବିଷୟବସ୍ତୁ ଆଦୌ ବିଶ୍ୱାସଯୋଗ୍ୟ ନୁହେଁ । ତା'ଛଡ଼ା ଏ ଗଦ୍ୟ ଗଂଗବଂଶ ବା ସୂର୍ଯ୍ୟବଂଶ ପ୍ରଥମ ପର୍ବରେ ସଂଭବ କି ? ତା'ପରେ ଏଭଳି ଲେଖା ଚୋରଗଂଗ ବା କପିଳେଂଦ୍ର ଦେବଂକ ପାଂଜିକରଣମାନେ ଶ୍ରୀଛାମୁଂକ ଆଜ୍ଞାରେ ଲେଖିଥିବା ସଂଭବ କି ?

## ମାଦଳ ପାଂଜିର ଅର୍ବାଚୀନତା : ଓଡ଼ିଆ ଭାଷାତତ୍ତ୍ୱ

ଡଃ ହରେକୃଷ୍ଣ ମହତାବ୍ କହଂତି ଓଡ୍ର ବିଭାଷା ବା ଅପଭ୍ରଂଶରୁ ଧୀରେ ଧୀରେ ଓଡ଼ିଆ ଭାଷା ସ୍ପଷ୍ଟ ଭାବରେ ଆତ୍ମପ୍ରକାଶ କଲା ତ୍ରୟୋଦଶ ଶତାବ୍ଦୀର ଗଂଗବଂଶୀୟ ରାଜାମାନଂକ ଅଭିଲେଖରେ । ପଂଡିତ ବିନାୟକ ମିଶ୍ରଂକ ମତ ଏଇଯେ ଉକ୍ତ ଅଭିଲେଖମାନଂକରେ ଗଦ୍ୟ-ଓଡ଼ିଆ ବ୍ୟବହୃତ ହୋଇଥିବାରୁ ଜାଣିବାକୁ ହେବ ଯେ ତତ୍‌ପୂର୍ବରୁ ଓଡ଼ିଆ ଭାଷାରେ ପଦ୍ୟ ରଚିତ ହୋଇଥିଲା,

କାରଣ ସବୁ ଦେଶରେ ଆଗେ ପଦ୍ୟର ସୃଷ୍ଟି । ସମ୍ବଲପୁର ଜିଲ୍ଲା ବୋଡ଼ସମ୍ବର

**ଓଡ଼ିଆ ଭାଷାତତ୍ତ୍ୱ**

ଜମିଦାରୀର ବୀର ନରସିଂହନାଥଙ୍କ ମନ୍ଦିର ଗାତ୍ରରେ ଥିବା ପାଟଣାନଗରର ରାଜକୁମାର ଦେବଲଦେବଙ୍କ ଲିପିଟି ଖ୍ରୀ. ୬୮୯ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ଭାଷାରେ ଖୋଦିତ ହୋଇଥିଲା ବୋଲି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ କହନ୍ତି । ମାତ୍ର ଏହା କେଉଁ ଲିପିରେ ଲିଖିତ ସେ ବିଷୟରେ ପଣ୍ଡିତ ଦାଶ ନୀରବ । କୁଟିଳ ନାଗରୀ କିମ୍ବା ପ୍ରତ୍ନ-ବଙ୍ଗଳା ଲିପି ହୋଇଥିବ । ଦେବଲଦେବଙ୍କ ଲିପିଟି କଥିତ ଓଡ଼ିଆ ଭାଷାରେ ରଚିତ ସନ୍ଦେହ ନାହିଁ । ଯଥା : ଓଁ ନମଶ୍ରୀ ଜୟଦ....ସ୍ୱସ୍ତି ଶ୍ରୀ ଉଜଗି ନାମ ସମ୍ବତ୍ସରେ ଚୈତ୍ର ପୂର୍ଣ୍ଣିମା ଶୁକ୍ଳ ପକ୍ଷେ ହସ୍ତା ନକ୍ଷତ୍ରେ ପାଟଣାନଗରସ୍ଥିତ ବଇଜଳ ଦେବ ରାଜାଙ୍କ ଜ୍ୟେଷ୍ଠପୁତ୍ର ଦେବଲଦେବ ରାଜାଙ୍କ ନରସିଂଘା ତୀର୍ଥେ ଗୋଣ୍ଡମାର୍ଦ୍ଦନ ପର୍ବତେ ବିରଳା ନରସିଂଘନାଥ ସ୍ୱାମୀଙ୍କ ଶ୍ରୀ ଦେଉଳ ତୋଳାଇଲା ନଜେ × × ରନ୍ଧଶାଳା ଗାଈ ସତେକ ଲୁହାସିଂଘା ଗ୍ରାମ ଦାଆଗୋଲ ··× ×”। ହେଲେ ମଧ୍ୟ ଏହାର କାଳ ନିର୍ଣ୍ଣୟ ତଥା ମୂଳପାଠରେ ବହୁ ସନ୍ଦେହର ଅବକାଶ ଅଛି । ଏ ଓଡ଼ିଆ ଗଦ୍ୟ କଦାପି ତ୍ରୟୋଦଶ ଶତାବ୍ଦୀ ପୂର୍ବରୁ ସମ୍ଭବ ହୋଇନପାରେ । ଏଇସବୁ ଦୃଷ୍ଟିରୁ ମାଦଳାପାଞ୍ଜିର ଗଦ୍ୟ ଓଡ଼ିଆରେ ଓଡ଼ିଆ ଲିପିରେ ଅଷ୍ଟମ ଶତକରୁ କିମ୍ବା ଏକାଦଶ ଶତକରୁ ଲେଖା ହୋଇ ଆସୁଥିବା ମତ ଆଦୌ ଗ୍ରହଣଯୋଗ୍ୟ ନୁହେଁ ।

ଏଭଳି ସ୍ପଷ୍ଟ ଓଡ଼ିଆ ଭାଷା ଓ ନିର୍ଦ୍ଦିଷ୍ଟ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ମଧ୍ୟଭାଗ ବେଳକୁ ସମ୍ଭବ କି ? ସେତେବେଳକୁ କୌଣସି ପ୍ରାଚ୍ୟ ଭାଷା ସ୍ପଷ୍ଟ ରୂପ-ରେଖ ନେଇ ନ ଥିଲା । ଏପରିକି ବହୁ ପରବର୍ତ୍ତୀ କାଳର ବୌଦ୍ଧ ଚର୍ଯ୍ୟାପଦର ଭାଷା ମଧ୍ୟ ଅବିଭକ୍ତ ମାଗଧୀ ଅପଭ୍ରଂଶର ଶେଷ ସ୍ତରର ପରିଣତି ବୋଲି ପଣ୍ଡିତମାନେ ସ୍ଥିର କଲେଣି, କାରଣ ସେତେବେଳକୁ ଓଡ଼ିଆ, ବଙ୍ଗଳା, ମୈଥିଳୀ, ଆସାମୀ ପ୍ରଭୃତି ପ୍ରାନ୍ତୀୟ ଭାଷା ସ୍ପଷ୍ଟ ରୂପରେଖ ନେଇ ନ ଥିଲା । ଅତଏବ ପଣ୍ଡିତ ଦାଶ ଏ ଭାଷାକୁ ୬୮୯ ଖ୍ରୀଷ୍ଟାବ୍ଦରେ ସ୍ଥାପିତ କରିବା କେତେଦୂର ସଙ୍ଗତ ତାହା ବିଚାର୍ଯ୍ୟ । ଏ ମନ୍ଦିର କଣ ତେବେ ଭୁବନେଶ୍ୱର ମନ୍ଦିରଠାରୁ ଏକ ଶତାବ୍ଦୀ ପ୍ରାଚୀନତର ?

## ଅଚ୍ୟୁତାନନ୍ଦ ଦାସ

ଅଚ୍ୟୁତାନନ୍ଦ ଦାସ ଅଷ୍ଟାଦଶ ଶତାବ୍ଦୀର ଶେଷ ପ୍ରାନ୍ତର ଲୋକ ବୋଲି ପୂର୍ବରୁ ପ୍ରମାଣ କରିଛୁଁ । ଯଶୋବନ୍ତ ଦାସ ତାଙ୍କ ମଉଳାଶୁର ହୋଇଥିବାରୁ ସେ ମଧ୍ୟ ତାଙ୍କର ସମସାମୟିକ ବୋଲି ଜଣାଯିବ । ଅଚ୍ୟୁତାନନ୍ଦ ତାଙ୍କ ଶୂନ୍ୟ

ସଂହିତାରେ ଲେଖିଛନ୍ତି ଯେ ସେ ତ୍ରେତାରେ ନଳ, ସତ୍ୟରେ
କାଳ-ନିର୍ଣ୍ଣୟ କୃପାଜଳ, ଦ୍ୱାପରରେ ଶ୍ରୀକୃଷ୍ଣଙ୍କ ସଖା ସୁଦାମା ଏବଂ କଳିରେ
ଶ୍ରୀ ଚୈତନ୍ୟଙ୍କ ପାଂଚଜଣ ସଖାଙ୍କ ଭିତରୁ ଜଣେ ଥିଲେ । ଖାଲି ସେତିକି ନୁହେଁ ସେ ଚୈତନ୍ୟଙ୍କର ପାଂଚ ଶହ ବର୍ଷ ପୂର୍ବର କପିଳ, ବେହିଦାସ, ମଲ୍ଲିକାନାଥ ପ୍ରଭୃତିଙ୍କୁ ଶୂନ୍ୟବାଦ ବୁଝାଇ ସେମାନଙ୍କଠାରୁ 'ଜୟ ଜୟ'କାର ଲାଭ କରିଥିଲେ ବୋଲି ମଧ୍ୟ ଲେଖିଛନ୍ତି ।

ଋଷି, ତପୀ ସନ୍ନ୍ୟାସୀ ନାମରେ ବାରସଂଘ
ବେହିଦାସ, ବାଉଳ, କପିଳ ଯେତେ ସଂଗ
ସଭା ମଣ୍ଡାଇଣ ଯେ ବସିଲେ ସବୁ ତପୀ
ପଚାରିଲେ ପ୍ରଭୁଙ୍କ କି ଆଜ୍ଞା ହୋଇଅଛୁ ।
କହୁ ମୁଁ ଶୂନ୍ୟ ମଂତ୍ର, ଯଂତ୍ର, କରନ୍ୟାସ
ଋଷିମାନେ ଜୟ ଜୟ କଲେ ଯେ ପ୍ରକାଶ । (ଶୂ. ସଂ. ୧୦ମ ଅ)

ତେଣୁ ଏଭଳି ଜଣେ ବ୍ୟକ୍ତିଙ୍କର କାଳ-ନିରୂପଣ କରିବା ପ୍ରକୃତରେ ବଡ଼ ଅସାଧ୍ୟ ପାଠ । ତଥାପି ତାଙ୍କ ଗୁରୁ-ପରଂପରାରୁ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ପ୍ରମାଣରୁ ସେ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗର ବା ଊନବିଂଶ ଶତାବ୍ଦୀର ଲୋକ ବୋଲି ପ୍ରମାଣିତ ହୋଇଛି । ତାଙ୍କ ଗ୍ରଂଥରେ ଅରୁଣସ୍ତମ୍ଭ, ସତ୍ୟବାଦୀ ମନ୍ଦିର, ଦିବ୍ୟସିଂହ ଦେବ, ବୀରକେଶରୀ ଦେବ ପ୍ରଭୃତିଙ୍କ ଉଲ୍ଲେଖ ଥିବାରୁ ଏବଂ ଭାଷାରେ ଷୋଡ଼ଶ ଶତକୀୟ ଲକ୍ଷଣ ନ ଥିବାରୁ ଆମେ ଏଇ ସିଦ୍ଧାଂତରେ ପହଂଚନ୍ତୁ । ତଥାପି ସାରଳା-ଯୁଗ ସଂଗେ ତାଂକର ଯୋଗାଚାର ଓ ଧର୍ମ-ଧାରଣା ପ୍ରଭୃତିରେ ସାମ୍ୟ ଥିବାରୁ ଆଲୋଚନାର ସୁବିଧା ପାଇଁ ସେମାନଙ୍କୁ ଏ ଅଧ୍ୟାୟର ଅଂତର୍ଗତ କରୁଛୁ । କାରଣ ଧର୍ମୀୟ ମତବାଦ ଓ ଦାର୍ଶନିକ ବିଚାର ଦୃଷ୍ଟିରୁ ସାରଳା ଦାସ, ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ଭଳି ସେମାନେ ମଧ୍ୟ ଜ୍ଞାନମିଶ୍ରା ଭକ୍ତିମାର୍ଗ
ନିରାକାରତତ୍ତ୍ୱ ଶୂନ୍ୟବାଦ ପ୍ରଚାର କରିଯାଇଛନ୍ତି । ଏ ଶୂନ୍ୟବାଦ ବୌଦ୍ଧ ଶୂନ୍ୟପକ୍ଷ, ତାନ୍ତ୍ରିକ ଯୋଗାଚାର ଓ ବୈଷ୍ଣବ ଧର୍ମର ସମନ୍ୱୟରେ ଓଡ଼ିଶାରେ ଏକ ନୂତନ ଆକାର ଧାରଣ କରିଥିଲା ଏବଂ ସେଥିରେ ବୌଦ୍ଧରୂପୀ ଜଗନ୍ନାଥ, ଶ୍ରୀରାମ, ରାଧାକୃଷ୍ଣ, ଆଦ୍ୟମାତା ଦୁର୍ଗା ସମସ୍ତେ ମିଶି ଯାଇଥିଲେ ଏବଂ ଏକ ନିରାକାର ବା ଅଣାକାରତତ୍ତ୍ୱର ଜନ୍ମ ହୋଇଥିଲା । ଏଇ ଅଣାକାର ବା ଅଲେଖ ନିରଂଜନହିଁ ଅଚ୍ୟୁତାନନ୍ଦ ଓ ଯଶୋବଂତଙ୍କ ସାହିତ୍ୟର ମୂଳପିଣ୍ଡ ।

"ଢଳକଣାରେ ମୁଁ ଜନମ ଲଭିଲି କେହି ନ ଚହ୍ନିଲେ ମୋରେ ।
ଅଗଣିତ ବୋଲି ମାତା ଡାକୁଛନ୍ତି ଅନ୍ନ ନ ମିଳଇ ଘରେ

(ଶୂ.ସଂ, ୧୭ ଅ)

ତାଂକର ନାମ ସିଂଧୁ ଗ୍ରାନଂଦ ଥିଲା । 'ସିଂଧୁ ଗ୍ରାନଂଦ ମୋ ନାମ ଗୁପତ ରହିଲା । ଧାନ ଧାମର ଅଚ୍ୟୁତ ନାମ ହେଲା ।''(ଶୂ.ସଂ୧ମ.ଅ) ଶୂନ୍ୟ ସଂହିତାରେ—

"ନାମକୁ ଚହ୍ନିଲେ ଜୀବ ପରମେ ମିଶଇ
ଯୋନଭେଳା ପରି ଭବସିଂଧୁରେ ଭାସଇ ।×××

ଏକାକ୍ଷର ବ୍ରହ୍ମ ବା ଓଁକାର ବ୍ରହ୍ମ ଅଲେଖ । ସେ ଅନାମ । ବ୍ରହ୍ମ ମହାଶୂନ୍ୟ, ଅଣାକାର ଓ ଜ୍ୟୋତିର୍ବ୍ରହ୍ମ ।

ଏକାକ୍ଷର ବ୍ରହ୍ମ ଏହି ଜ୍ୟୋତିବ୍ରହ୍ମ ରୂପ
ଏଥିରେ ଆଲୋକିତ ଯେ ଅଲେଖ ସ୍ୱରୂପ ।
ଅନାମ ଯେ ବ୍ରହ୍ମ ମହାଶୂନ୍ୟ ଅଣାକାର
ଶବଦ ଶୁଭଇ ତହିଁ ଦ୍ୱାଦଶ ପ୍ରକାର । (ଶୂ.ସଂ)

"ଜ୍ୟୋତିବ୍ରହ୍ମ ଏକାକ୍ଷରବ୍ରହ୍ମ ଓଁକାର । ଏହା ମଧ୍ୟ 'ହରେ ରାମକୃଷ୍ଣ" ମହାମଂତ୍ରର ତତ୍ତ୍ୱ । ଜ୍ୟୋତିବ୍ରହ୍ମଂକ ଜ୍ୟୋତିର୍ମଂଡଳ ମଧ୍ୟରେ ରାଧାକୃଷ୍ଣ ଲୀଳା କରୁଛଂତି । ରାଧାକୃଷ୍ଣ ଭୁଜ ଲଂପଟରେ ମଗ୍ନ । ଏଠାରେ ଅଦୃଶ୍ୟ ରୂପ ଜ୍ୟୋତିରୂପରେ ଦୃଶ୍ୟ ହେଉଛି । ଶ୍ରୀକୃଷ୍ଣ ମୁରଳୀ ବଜାଉଛଂତି । ଗୋପୀମାନେ ଗୀତଗାଇ ସେବା କରୁଛଂତି । ରମା, ପ୍ରେମା, ଶ୍ୟାମଳା, ବିଶାଖା ଆଦି ସଖୀମାନେ ସେବାରେ ଅଛଂତି । ମୁରଳୀର ସପ୍ତରଂଧ୍ରରେ ସପ୍ତସ୍ୱର ବାହାରୁଛି । ହରେ ରାମକୃଷ୍ଣ ମହାମଂତ୍ର ଏହିଠାରୁ ଜାତ ହୋଇଛି । (ଶୂ.ସ ୩୨ ଅ) ଏଇ ବ୍ରହ୍ମ ଏକାକ୍ଷର ସ୍ୱୟଂ ନିରଂଜନ । ସୋଽହଂ-ରୂପୀ ଜଗନ୍ନାଥ ଦାରୁବ୍ରହ୍ମ ରୂପରେ ବିଜେ ହୋଇଛଂତି । ହରେ ପଦରେ ହ ଜଗନ୍ନାଥ ବା କୃଷ୍ଣ । ର ରାଧା । ଦୁହେଁ ନିତ୍ୟରେ ଏକାଂଗ ହୋଇ ବିହାର କରୁଛଂତି । ପୁଣି 'ହ'କାର ରାଧା ଏବଂ 'ର'କାର କୃଷ୍ଣ ବୋଲି ମଧ୍ୟ ଅଚ୍ୟୁତାନଂଦ ବୁଝାଇଛଂତି ।

ନିତ୍ୟ ରାଧାକୃଷ୍ଣ ଲୀଳାରେ ଗୋପୀମାନେ ଯୁଗଳ ମୂର୍ତ୍ତିର ସେବା କରୁଛଂତି । ଗୋପୀମାନଂକର ପ୍ରେମ ଅତୁଳନୀୟ ଓ ସର୍ବୋତ୍କୃଷ୍ଟ ଥିବାରୁ 'ଗୋପୀଜନବଲ୍ଲଭାୟ' ମଂତ୍ରରେ ଗୋପୀ ଶବ୍ଦ ସ୍ଥାନ ପାଇଛି । ଏଇ ଗୋପୀ ନାମର ମହିମା ଅନଂତ । 'ହରେ ରାମକୃଷ୍ଣ' ମଂତ୍ରର ବୀଜ ରମା ହେଉଛଂତି ଗୋପୀ । ରମା ବା ଲକ୍ଷ୍ମୀଂକର ଅନ୍ୟ ନାମ ଗୋପୀ । ଗୋପୀ ଜଗତର ଯାବତୀୟ ଉତ୍କୃଷ୍ଟସାର ଦ୍ରବ୍ୟ ।

ଗୋପୀ ରୁକ୍ମଣୀ, ପ୍ରେମା, ସାବିତ୍ରୀ ପ୍ରଭୃତି । ସବୁନାମକୁ ଠିକ କରି ଶ୍ରୀହରି ଗୋପୀ ନାମକୁ ବାଛିଲେ । ଏହି ସବୁ ନାମକୁ ଏକତ୍ର କରି ଗୋପୀ ନାମ ଯଦିଓ ତୁଳବାରୁ ଗୋପୀ ନାମର କର୍ଣ୍ଣିକାକୁ ମଧ୍ୟ ସେମାନେ ସମାନ ହେଲେ ନାହିଁ । ତେଣୁ ଗୋପୀ ନାମ ସାର ହେଲା ।

ଏହି ଜ୍ୟୋତି ମଣ୍ଡଳ ଭିତରେ ସୂର୍ଯ୍ୟବେଦ ବି ପ୍ରବେଶ କରି ପାରନ୍ତି ନାହିଁ । ଏଠାକୁ ଯିବାକୁ ଗାୟତ୍ରୀ ପାବଚ୍ଛ । ଗାୟତ୍ରୀ ଗାବ ରୂପରେ ସେହି ଦ୍ୱାରକୁ ଆବୋରି ରହିଛି । କାଳାନଳ ଜ୍ୟୋତି ଶରୀର ଏହି ବେଦମାତା ଗାୟତ୍ରୀ ପଥକୁ ନିରୋଧ କରୁଛନ୍ତି । ଏହି ଗାୟତ୍ରୀଙ୍କ କୃପା ହେଲେ ପ୍ରଣବ ଓଁକାର ପ୍ରବେଶ ମିଳେ । ଅଜ୍ଞାନତା ରୂପକ ଅନ୍ଧକାର ଲୋପ ହୁଏ । ଅତଏବ ଅଜପା ଗାୟତ୍ରୀ ମନ୍ତ୍ରକୁ ଜପିବା ଆବଶ୍ୟକ । ଓଁକାର-ରୂପୀ ଶବ୍ଦ ବ୍ରହ୍ମ ଏକମାତ୍ର ଭଜନଯୋଗ୍ୟ । ଗାୟତ୍ରୀ ମନ୍ତ୍ର ପୁଣି ବେଦମାତା ଗାୟିର ଦେହରେ ଭେଦ କରି ରହିଛି ।"*

ଅଚ୍ୟୁତାନନ୍ଦଙ୍କ ମତରେ, ନିତ୍ୟ ରାସ ମଣ୍ଡଳର ଅଧିଷ୍ଠାତା ହେଉଛନ୍ତି ନିରାକାର ।

"ଅଲେଖ ବୋଲନ୍ତି ତାଙ୍କୁ ନବଶକ୍ତି ଯେଣୁ,
ନିରାକାର ଆକାର ମଣ୍ଡଳ ନାହିଁ ତେଣୁ ।
ଶୂନ୍ୟବର ବୋଲି ଯିନା ବୋଲନ୍ତି କୃଷ୍ଣଙ୍କୁ,
ବାରି କହିଦେଲୁ ଧ୍ୟାୟ ତୁ ନିରାକାରକୁ ।"

ନିତ୍ୟ ଗୋଲକରେ ନିତ୍ୟରାଧା ଓ ନିତ୍ୟକୃଷ୍ଣ ଅଛନ୍ତି । ନିତ୍ୟରାଧାଙ୍କ ସହ ବୃନ୍ଦମାତା ସମେତ ୧୬୨୦ ଗୋପୀ ଅଛନ୍ତି । ବୃନ୍ଦମାତା ପରାମର୍ଶ ଦେଉଛନ୍ତି ନିରାକାର ଉପାସନା କରିବାକୁ ।

ଏହାଛଡ଼ା ବତ୍ରିଶ ଅକ୍ଷର ତତ୍ତ୍ୱ ରହିଛି । କୃଷ୍ଣ (କାମବୀଜ—କ୍ଲିଂ) ରାଧା (ରଜବୀଜ—ଶ୍ରୀଂ), ଚନ୍ଦ୍ରାବଳୀ (ଲଜ୍ଜାବୀଜ—ହ୍ରିଂ) କ୍ରମେ । ତିନି ମୂଳାକ୍ଷର ମିଶି) ଛଅ ଅକ୍ଷର ହେଲେ । ଏ ଛଅ ଗୋପୀ ନିତ୍ୟ ରାସ ମଣ୍ଡପର ଛଅ କୋଣରେ ରହିଲେ । ଛଅ କୋଣ କ୍ରମଶଃ ଆଠ କୋଣ ହେଲା, ଏବଂ ଆଠ କୋଣକୁ ଷୋଳ ଅକ୍ଷର ହେଲା । ହରେ ରାମ ହରେ ରାମ ରାମ ରାମ ହରେ ହରେ । ଆଠ କୋଣରେ ଆଠ ଗୋପୀ ଥିଲେ—ସରଳା, ଲଳିତା, ହରପ୍ରିୟା, ବିମଳା, ଧନ୍ୟା, ଶ୍ରୀମତୀ, ପଦ୍ମା । ଓ ସୁକେଶୀ । ଉକ୍ତ ଆଠ ଶବ୍ଦ କ୍ରମେ କ୍ରମେ ୩୨ ଅକ୍ଷର ବିଶିଷ୍ଟ ଷୋଳ ଶବ୍ଦ ହେଲା ।

* 'ଓଡ଼ିଆ ସାହିତ୍ୟର ଇତିହାସ'—ପୃ ୬୮୦—୮୧

ସେଥିରେ ଗୃଣ ଥର କୃଷ୍ଣ ଶ ଦ, ଦୃଇ ଥର ରାମ ଶବ୍ଦ ଏବଂ ଅଠ ଥର ହରି ଶବ୍ଦ ରହିଲା ।XXXଷୋଳ ଅକ୍ଷର ହେଉଛନ୍ତି ଷୋଳ ଗୋପୀ । ନିତ୍ୟରାସ ମଣ୍ଡଳରେ ରାଧାକୃଷ୍ଣ ଏଇ ଷୋଳ ଅକ୍ଷର ବିଶିଷ୍ଟ ଗୋପୀଙ୍କ ସହକ୍ରୀଡ଼ା କରନ୍ତି । "ଦୟା କଲେ ବୃନ୍ଦମାତା ନିରାକାର ନନ୍ଦ, ଦ୍ଵାତ୍ରିଂଶ ଅକ୍ଷର ଉପଦେଶ ଦେଲେ ତନ୍ତ୍ର ।" (ଶୂନ୍ୟ ସଂହିତା) (୧)

## ନିରାକାରବାଦର ସମନ୍ୱୟ

### ରାମ ଶବ୍ଦର ହେତୁତ୍ୱ

ନିତ୍ୟକାର ସୃଷ୍ଟିତତ୍ତ୍ୱ ଅନୁସାରେ, ଶୂନ୍ୟରୁ ବିନ୍ଦୁ ଜନ୍ମିଲା । ବିନ୍ଦୁ-ବ୍ରହ୍ମ ରୂପେ ନିତ୍ୟକାର ବିଦ୍ୟମାନ । ମାୟା ହେଉଛନ୍ତି 'ଆଦ୍ୟଶକ୍ତି ।' 'ପ୍ରେମ ଭକ୍ତି ଗୀତା'ରେ ଅଛି : "ସେ ଯୋଗମାୟା ଆଦ୍ୟଶକ୍ତି, ମୋ ଅର୍ଦ୍ଧମାତ୍ରା ଶୂନ୍ୟେ ସ୍ଥିତି ।" ସେଇ ହେଉଛନ୍ତି ପ୍ରକୃତି । ସେଇ ହେଉଛନ୍ତି ଆଦ୍ୟମାତା ଓ ଶୂନ୍ୟ ପୁରୁଷ ହେଉଛନ୍ତି ଆଦିପିତା ।" ଆଦ୍ୟମାତାଙ୍କ ଗର୍ଭରେ ବିନ୍ଦୁ ପକ୍ଷ ରା ଓ ମ ଉତ୍ପନ୍ନ ହେଲେ । ରା ହେଉଛନ୍ତି ରାଧା । ମ କୃଷ୍ଣ ।

ଯୋଗମାୟା ନିଜ ଗାତ୍ରରେ ଏକ ଛେଦ କରି ଏଇ ଯୁଗଳ ଶକ୍ତିଙ୍କୁ ବାହାର କଲେ । ଏଇପରି ରାଧାକୃଷ୍ଣଙ୍କ ଜନ୍ମଲାଭ ହେଲା । ଏଣୁ ଶୂନ୍ୟ ସଂହିତା କହେ— "ଏକ ବୀଜ ବେନିଫାଳ ଯୁଗଳ ଅଂଗରେ ।" ବଳରାମ ଦାସ ଗଣେଶ ବିଭୂତି ଟୀକାରେ ଏହାକୁ କହିଛନ୍ତି—"ଭାଇ ଭଗ୍ନୀ ରାଧାକୃଷ୍ଣ ଶୁଣ ମନ ଦେଇ ।" ଏହା କହିବାର ଅର୍ଥ ଉଭୟେ ଆଦ୍ୟମାତାଙ୍କ ଗର୍ଭରୁ ସମ୍ଭୂତ । ଏଇ ଆଦ୍ୟଶକ୍ତିଙ୍କୁ ଅଚ୍ୟୁତାନନ୍ଦ ମହାମାୟା ମହାଦୁର୍ଗା ବୋଲି ବର୍ଣ୍ଣନା କରି ତାଙ୍କ ସହ ଅଷ୍ଟ ସଖୀଙ୍କର କଳ୍ପନା କରିଛନ୍ତି । ଏ ଅଷ୍ଟସଖୀଙ୍କ ମଧ୍ୟରେ ବୃନ୍ଦମାତା ଅନ୍ୟତମା । ଅର୍ଦ୍ଧମାତ୍ରାକୁ ବଳରାମ ଦାସ ଧର୍ମମାତ୍ରା ବୋଲି ବର୍ଣ୍ଣନା କରିଛନ୍ତି ।'*

### ପିଣ୍ଡ ବ୍ରହ୍ମାଣ୍ଡବାଦ

ଏଇ ପିଣ୍ଡରେ ବ୍ରହ୍ମାଣ୍ଡର ଅବସ୍ଥିତି । ଦୁଇ ବାହୁ, ହୃଦୟ, ନାଭି, ଉଦର, ପୃଷ୍ଠ, କଟି ଏଇ ସାତ ସ୍ଥାନ ସପ୍ତତଳ (ତଳ, ଅତଳ, ସୁତଳାଦି) ବିଶିଷ୍ଟ ମର୍ତ୍ତ୍ୟପୁର । ସ୍ୱର୍ଗ, ମର୍ତ୍ତ୍ୟ ପାତାଳ ପ୍ରତ୍ୟେକ ସାତପୁର । ଏଇପରି ୨୧ଟି ପୁର ଦେହ ଭିତରେ ଅଛି । ତାକୁ ବ୍ରହ୍ମସ୍ଥାନ ।

*(୧) ଓ ସା. ଇ ଓ 'ଓଡ଼ିଶା ଇତିହାସ' —ମହତାବ୍ ।

ଏକୋଇଶପୁର ପିଂଡ ବ୍ରହ୍ମାଂଡ ଯେ ସରି,
ଜ୍ୟୋତିମଂଡଳର ମଧ୍ୟେ ବଳେ ନରହରି । (୩ୟ ଅ.)

ବଳରାମ ଦାସଂକ 'ବିରାଟ ଗୀତା'ରେ ଏଇ ପିଂଡ ବ୍ରହ୍ମାଂଡବାଦ ବର୍ଣିତ ହୋଇଥିଲା । "ବ୍ରହ୍ମାଂଡ ଯେତେକ ବିଧିମତ, ପିଂଡରେ ଅଛଂତି ସମସ୍ତ ।" ଅଚ୍ୟୁତାନଂଦ ଏଇ ତତ୍ତ୍ୱ ଉପରେ ଆଧାର କରି ନିଜ ମତବାଦ ପ୍ରତିଷ୍ଠା କରିଛଂତି ।

## ଯୋଗାଚାର

ଏଇ ମତବାଦ ଅନୁସାରେ 'ମୋକ୍ଷପ୍ରାପ୍ତି ପାଇଁ ଅଷ୍ଟାଂଗ ଯୋଗସାଧନା ଆବଶ୍ୟକ । ଷଟ୍‌ଚକ୍ରରେ ଥିବା ପଂଚ୍ୱିଶ ପବନକୁ ନିରୋଧ କରି ଏ ଯୋଗ ସାଧନ କରିବାକୁ ହୁଏ । ଇଂଗଲା, ପିଂଗଳା ଓ ସୁଷୁମ୍ନାକୁ ଆୟତ୍ତ କରି ସୁଷୁମ୍ନାରେ ମନପବନ ଏକ କରିବାକୁ ହୁଏ ।' 'ବେନି ଚକ୍ଷୁଂକ ମଧ୍ୟେ ସ୍ଥାନ - ତ୍ରିକୁଟ ବୋଲି ତାର ନାମ ।' (ବିରାଟ ଗୀତା—ବଳରାମ ଦାସ) ସୁଷୁମ୍ନା ହେଉଚି ତ୍ରିକୁଟର ଦ୍ୱାର । "ତ୍ରିକୁଟ ସ୍ଥାନରେ ଘୁଣି ହଂସ ଖେଳୁଥାଇ ।' ଇଡ଼ା ଓ ପିଂଗଳାର ସଂଯୋଗ ଯେଉଁଠି ସେଇଠି ସୁଷୁମ୍ନା । "ଏ ବେନି ସଂଗମେ ପୂତା ସୁସୁମନା ବାଟ, ଶୂନ୍ୟ ମେରୁ ବୋଲି ତାକୁ ବୋଲଂତି ତ୍ରିକୁଟ । ତହିଁ ଉପରେ ପୂର୍ବାରେ ବ୍ରହ୍ମ ରଂଧ୍ରଦ୍ୱାର × × ବ୍ରହ୍ମରଂଧ୍ର ଫିଟାଇ ଅଲେଖକୁ ଦେଖ ।"

(ସପ୍ତାଂଗ ଯୋଗସାର—ବଳରାମ ଦାସ)

ଅର୍ଧମାତ୍ରା, ଆଦିମାତା ବା ଆଦିଦୁର୍ଗା ଭ୍ରୂଲତା ମଧ୍ୟରେ ଅଛଂତି । "ଅର୍ଧମାତ୍ରା ପରେ ବିଂଦୁ ବ୍ରହ୍ମ ରୂପେ ବସେ, ବ୍ରହ୍ମ ପରେ ଆଦିବ୍ରହ୍ମ ବସଂତି ଆକାଶେ ।" (ଛତିଶ ଗୁପ୍ତଗୀତା)

ଅଚ୍ୟୁତାନଂଦ 'ବ୍ରହ୍ମ ଶାଂକୁଳ'ରେ କହିଛଂତି—

ପ୍ରସନ୍ନ ହେଲେ ଆଦିମାତା  କଟିବ ଭବ ଭୟ ଚିଂତା ।
ବିଂଦୁଟି ପଡ଼ିବ ଆକଟି  ପବନେ ପଡ଼ିଯିବ ଗଂଠି ।"*

ପୁଣି,

ସୁଷୁମ୍ନାର ଚକ୍ର ପରେ ଅନେକ ଅଂତରେ
ଅଛଂତି ବ୍ରହ୍ମାସେ ମର୍ତ୍ତି ଅନାମ ଅକ୍ଷରେ ।

* 'ଓଡ଼ିଆ ଇତିହାସ'—ପୃ ୪୬୮ ।

ଚୌରାଶିସହସ୍ର କୋଶ ଭୂମି ଆୟତନ
ସେ ଭୂମିରେ ଲୀଳା କରୁଛନ୍ତି ବେନିଜନ ।
ଗୋପୀକା ମଣ୍ଡଳ ପରେ ତ୍ରିଭଙ୍ଗି ଛନ୍ଦରେ
ରହନ୍ତି ସେ ନ ବହନ୍ତି ଭୁଜ ବନ୍ଧନରେ ।
କୋଟି ଯୁଗ ଗଲେ ତାଙ୍କ ନ ଟଳଇ ଲୀଳା,
ନୟନେ ନୟନ ମିଶି ଭୁଜେ ଭୁଜ ଗଲା ।
(୪ର୍ଥ ଅ. ଶୂ. ସ)

ମର୍ତ୍ତ୍ୟ ବୃନ୍ଦାବନରେ ରାଧା ଓ ଗୋପୀମାନଙ୍କୁ ଧରି କୃଷ୍ଣ ଲୀଳା କରୁଛନ୍ତି । ସେ ଭୂମିର ଆୟତନ ଚୌରାଶି ସହସ୍ର କୋଶ । ଏକାକ୍ଷର ଓଁ ଅଷ୍ଟଦଳ ଉପରେ କନ୍ଦବ ମୂଳରେ କୃଷ୍ଣ ବଜେ କରିଛନ୍ତି । ବରହଣୀ ରାଧାଙ୍କ ଅଷ୍ଟ ନାୟିକା ଲକ୍ଷଣ ମଧ୍ୟ ସେ ଏଠାରେ ବ୍ୟକ୍ତ କରିଛନ୍ତି ।*

ଯେତେ ଲୀଳା କରେ ଏକାକ୍ଷର ଅଷ୍ଟଦଳେ
ବ୍ରଜଯେତେ କରିଣ ଥାନ୍ତି କଦମ୍ବର ତଳେ ।
ଯମୁନା ପୁଳିନ ବନ କାଳିନ୍ଦୀର ହ୍ରଦ
ଅଷ୍ଟ ଦଳ ମଧ୍ୟେ ଦେଖ କଦମ୍ବର ମଧ୍ୟ ।
ଓଁକାର ପାଖୁଡ଼ା ଏହି ବରହଣୀ ସ୍ଥାନ
ଏହି ଦଳେ ବ୍ୟୋମପୁରଟି ନିଧନ । (୪ର୍ଥ ଅ. ଶୂ. ସ)

ବଳରାମ ଦାସ ଓ ଜଗନ୍ନାଥ ଦାସ ପ୍ରମୁଖ ଯେଉଁ ଜ୍ଞାନମିଶ୍ରା ଭକ୍ତିଧାରା ଓ ଯୋଗମାର୍ଗ ପ୍ରବର୍ତ୍ତନ କରିଥିଲେ, ଅଚ୍ୟୁତାନନ୍ଦ ସେଇ ମାର୍ଗର ପଥିକ । ଏମାନେ ଶ୍ରୀ ଚୈତନ୍ୟଙ୍କ ପ୍ରବର୍ତ୍ତିତ ମାଧୁର୍ଯ୍ୟ ଲୀଳାକୁ ରୂପାନ୍ତର ମାଧ୍ୟମରେ ଗ୍ରହଣ କରିଥିଲେ । ଆଗରୁ କହିଛୁଁ, ଶାକ୍ତ ଧର୍ମ ଓ ବୈଷ୍ଣବ ଧର୍ମ ଏବଂ ଯୋଗାଗ୍ନିର ସାଧନା ବୌଦ୍ଧ ଶୂନ୍ୟବାଦ ସମ୍ମିଶ୍ରଣରେ ଷୋଡଶ ଶତକର ଓଡ଼ିଶାରେ ଏକ ସାଧାରଣ ଧର୍ମରେ ପରିଣତ ହୋଇଥିଲା । ଅଚ୍ୟୁତାନନ୍ଦ ସେଇ ପଥର ଶେଷ ପର୍ଯ୍ୟାୟର ପଥିକ ।

---

* 'ଓଡ଼ିଶା ଇତିହାସ' ।
* ଓଡ଼ିଆ ସାହିତ୍ୟର ଇତିହାସ ।

# ଯଶୋବଂତ ଦାସ

ଯଶୋବଂତ ଦାସ ଥିଲେ ଅଡ଼ଂଗ ରାଜା ରଘୁରାମ ଚଂପଂଡ଼ଂଙ୍କ ଶଳା । ଅଚ୍ୟୁତାନଂଦ ଦାସ ଏଇ ରଘୁରାମ ଚଂପଢ଼ଂଙ୍କ କନ୍ୟାକୁ ବିବାହ କରିଥିଲେ । ତେଣୁ ଯଶୋବଂତ ଅଚ୍ୟୁତାନଂଦଂଙ୍କର ମଉଳାଶୁର ଏବଂ ସଂଭବତଃ ବୟସରେ ତାଂଙ୍କଠୁ ବଡ଼ । ଯଶୋବଂତ ଦାସଂଙ୍କ ପ୍ରଣୀତ "ଗୋବିଂଦଚଂଦ୍ର ଟୀକା" ଏକ ଅତି ଜନପ୍ରିୟ ରଚନା । ଏହାକୁ ଯୋଗୀମାନେ କେଂଦେରା ବଜାଇ ଗାଇଲାବେଳେ ପ୍ରତ୍ୟେକ ଶ୍ରୋତାର ହୃଦୟ ବିଗଳିତ ହୋଇଥାଏ ।

> "ଏଇ ହାତି ଘୋଡ଼ା, ଏଇ ପାଟଯୋଡ଼ା, ତୋହର ବାବାର ଥିଲା ।
> ମରିଗଲାବେଳେ ଗୋବିଂଦଚଂଦ୍ରରେ ଛିଂଡ଼ା ପଲଂକରେ ଗଲା ।"

ଯଶୋବଂତ ଅଡ଼ଂଗ ଜମିଦାର ରଘୁରାମ ଚଂପଢ଼ଂଙ୍କ ଭଉଣୀ ଅଂକନା ଦେବୀଂଙ୍କୁ ବିବାହ କରିଥିଲେ । ପରେ ସେ ସଂସାର ତ୍ୟାଗ କରି ସନ୍ନ୍ୟାସ ଧର୍ମ ଗ୍ରହଣ କରିଥିଲେ । ଅଡ଼ଂଗର ଜମିଦାର ଯଶୋବଂତ ଦାସଂଙ୍କ ପାଇଁ ଅଡ଼ଂଗଠାରେ ଗୋଟିଏ ମଠ ନିର୍ମାଣ କରାଇ ଦେଇଥିଲେ ଏବଂ ମଠର ପରିଚାଳନା ପାଇଁ ସଂପତ୍ତି ଖଂଜିଥିଲେ ।

ସଂସ୍କୃତ 'ସ୍ୱରୋଦୟ ଲେଶ' ପୁସ୍ତକର 'ମୂଳ ବିଷୟକୁ ଅବଲଂବନ କରି ଯଶୋବଂତ "ଶିବ ସ୍ୱରୋଦୟ" ନାମକ ଗ୍ରଂଥ ରଚନା କରିଥିଲେ । ଯୋଗସାଧନା ପ୍ରଣାଳୀ ଏ ଗ୍ରଂଥରେ ବର୍ଣ୍ଣିତ ହୋଇଛି ।

"ପ୍ରେମଭକ୍ତି ବ୍ରହ୍ମଗୀତା" ନାମକ ଗ୍ରଂଥରେ ଯଶୋବଂତ ଜ୍ଞାନମିଶ୍ରା ଭକ୍ତି-ଯୋଗର ଶ୍ରେଷ୍ଠତ୍ୱ ପ୍ରତିପାଦିତ କରିଛଂତି । 'ସୃଷ୍ଟିତତ୍ତ୍ୱ, ଶୂନ୍ୟରେ ଭଗବାନଂଙ୍କ ଅବସ୍ଥିତି, ଯୋଗମାୟାଂଙ୍କ ଜନ୍ମ, ସୃଷ୍ଟିକ୍ରିୟା, ରାଧାକୃଷ୍ଣଂଙ୍କ ନିତ୍ୟରୂପ ଓ ନିତ୍ୟ-ରାସର ବର୍ଣ୍ଣନା' ଏ ଗ୍ରଂଥରେ ପାଂଚୋଟି ଛୋଟ ଛୋଟ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । ଏଇ ପିଂଡ ଭିତରେ ବ୍ରହ୍ମାଂଡର ଅବସ୍ଥିତି ମଧ୍ୟ ବର୍ଣ୍ଣନା କରାଯାଇଛି । ଏହାଛଡ଼ା ଜଗନ୍ନାଥ ବଳଭଦ୍ର, ସୁଭଦ୍ରାଂଙ୍କ ତତ୍ତ୍ୱର ବ୍ୟାଖ୍ୟା ମଧ୍ୟ ଏଥିରେ ଦିଆଯାଇଛି ।

(ଓ: ସା. ଇ)

ଯଶୋବଂତ ଦାସ ବଳରାମ ଦାସ, ଜଗନ୍ନାଥ ଦାସ ଏବଂ ଅଚ୍ୟୁତା-ନଂଦଂଙ୍କ ପରି ଜ୍ଞାନମିଶ୍ରା ଭକ୍ତିମାର୍ଗ ଅବଲଂବନ କରିଥିଲେ । ଯୋଗସାଧନା ତାଂଙ୍କ ଧର୍ମ-ମାର୍ଗର ପ୍ରଧାନ ଅଂଗ ଥିଲା ।

---

# ଶିଶୁ ଅନଂତ ଦାସ

ଶିଶୁ ଅନଂତଙ୍କ ନାମରେ କେତେକ ମାଳିକା ଦେଖାଯାଏ । 'ଉଦ୍ଧବ ଭକ୍ତ ପ୍ରଦାୟିନୀ ଚଉତିଶା' ନାମକ ଖଣ୍ଡିଏ ପୁସ୍ତକ ଲେଖକର ହସ୍ତଗତ ହୋଇଚି । ଏହାର ରଚୟିତା ଶିଶୁ ଅନଂତ ଦାସ । ଗ୍ରଂଥର କେତେକ ପଂକ୍ତି ଉଦ୍ଧାର କରାଗଲା । ଶିଶୁ ଅନଂତଙ୍କ କଥା ମାଦଳାପାଂଜିରେ ମଧ୍ୟ ଲେଖା ଅଛି ।

"ଜୟ ହେ ଅନାଦି ଅବ୍ୟକ୍ତ ବ୍ରହ୍ମ ଜୟ ନୀଳାଦ୍ରି ଈଶୋର ।
ଜୟ ଆଦିମୂଳ ଅବତାର ମୂର୍ତ୍ତି ହୋଇଛ ସଚରାଚର ।
ଜୟ ହେ ଅନଂତ ନିବିକାର ମୂର୍ତ୍ତି ଅରୂପାନଂଦ ଗୋସାଇଁ ।
ତ୍ରିବିଧ ପୁରୁଷେ ପ୍ରକାଶ ହୋଇଚ ଲୀଳା କଉତୁକ ପାଇଁ ।
ଜୟ ହେ କିଶୋର କିଶୋରୀ ହେ ହରି ଏକାଂଗ ରୂପ ଘଟଣା
କେ ଚହ୍ନି ପାରିବ ତୁମରି ସ୍ୱରୂପ ଚହ୍ନା ଜନେ କର ବଣା ।"

ଶିଶୁ ଅନଂତଙ୍କର ଅନ୍ୟ କେତୋଟି ପଦ—

ବିଂଦୁ ଅକ୍ଷରୁ ହୋଇଲ ଅଶେଷ । ଶିଶୁ ଅନଂତ ସେହିଠାକୁ ଆଶ ।"

ଓଡ଼ିଶାର ବହୁ କବି ଶିଶୁ ସଂପ୍ରଦାୟଭୁକ୍ତ । ସେମାନଂକ ମଧ୍ୟରେ ଶିଶୁ ଅର୍ଜୁନ ଦାସ (ରାମବିଭା, କଳ୍ପଲତା,) ଶିଶୁ ବନମାଳି ଦାସ (ରାସ) ଶିଶୁ ଶଂକର ଦାସ (ଉଷାଭିଳାଷ) ଶିଶୁ ପ୍ରତାପ ରାୟ (ଶଶିସେଣା) ପ୍ରଭୃତିଂଙ୍କ ନାମ ବିଶେଷ ଭାବରେ ଉଲ୍ଲେଖନୀୟ ।

ଶିଶୁ ଅନଂତ ଦାସ ,ଅର୍ଥ କୋଇଲି, ପ୍ରଶ୍ନୋତ୍ତର, ଅଣାକାର ଶବଦ, ଭକ୍ତ ମୁକ୍ତିଦାୟକ ଗୀତା ପ୍ରଭୃତି କେତୋଟି କ୍ଷୁଦ୍ର ଗ୍ରଂଥ ଲେଖିଥିବା କଥା ଜଣାଯାଏ । ତାଂକ ଭାଷାରୁ ସେ ବହୁ ପରବର୍ତ୍ତୀ ଯୁଗର କବି ବୋଲି ମନେ ହୁଅଂତି । ତାଂକ ନାମରେ ମାଳିକା ଏବେ ମଧ୍ୟ ବାହାରୁଚି ଏବଂ ସେ ଖଂଡଗିରି ଗୁଂଫାରେ ଗୁପ୍ତ ରହିଛଂତି ଏବଂ କଳ୍କି ଅବତାରଂକ ସଂଗେ ବାହାରିବେ ବୋଲି କୁହାଯାଇଥାଏ । ଅଚ୍ୟୁତା ନଂଦ ଦାସ ତାଂକ "ଉଦୟ କାହାଣୀ"ରେ ଶିଶୁ ଅନଂତ ପୁରୁଷୋତ୍ତମ ଦେବଂକ ୨୫ ଅଂକରେ (ଖ୍ରୀ. ୧୪୮୭ରେ) ଜନ୍ମଗ୍ରହଣ କରିଥିବା କଥା କହଂଚି ।

(ଓ. ସା. ଇ)

## ॥ ଚତୁର୍ଦ୍ଦଶ ଅଧିକରଣ ॥

## ରୀତି-ଯୁଗ

### କାବ୍ୟରେ ଅଳଂକାର ଓ ସଂଗୀତର ପ୍ରାଧାନ୍ୟ

ଓଡ଼ିଆ ସାହିତ୍ୟରେ ରୀତି-ଯୁଗର ଆରଂଭ ହୁଏ ବୃଂଦାବତୀ ଦାସୀଂକ "ପୂର୍ଣ ତମ ଚଂଦ୍ରୋଦୟ"ଠାରୁ । ଧନଂଜୟ ଭଂଜଂକର କାବ୍ୟକବିତାରେ ମଧ୍ୟ ଆଳଂକାରିକ ଶୈଳୀର ପ୍ରୟୋଗ ଦେଖାଯାଏ । ରୀତି-କାବ୍ୟର ପ୍ରଧାନ ଲକ୍ଷଣ ହେଉଚି ଆଳଂକାରିକ ଶୈଳୀ ତଥା ସଂଗୀତର ପ୍ରାଧାନ୍ୟ । ଏ ଯୁଗର ମୂର୍ଧନ କବି ହେଉଛଂତି ଉପେଂଦ୍ରଭଂଜ । ଭଂଜଂକର ପୂର୍ବବର୍ତ୍ତୀ କବି ଦୀନକୃଷ୍ଣ ଦାସ ଓ ଲୋକନାଥ ବିଦ୍ୟାଧର ଏବଂ ପରବର୍ତ୍ତୀ କବି ସଦାନଂଦ କବିସୂର୍ଯ୍ୟ ବ୍ରହ୍ମା ଓ ଅଭିମନ୍ୟୁ ସାମଂତସିଂହାର ଉଚ୍ଚକୋଟୀର ରୀତି-କାବ୍ୟମାନ ପ୍ରଣୟନ କରି ଯାଇଛଂତି । ଭକ୍ତଚରଣଂକ 'ମଥୁରା ମଂଗଳ'ରେ ମଧ୍ୟ ବେଳେବେଳେ ଅଳଂକାରର ପ୍ରାଚୁର୍ଯ୍ୟ ଦେଖାଯାଏ । ରୀତିହିଁ ଏ ଯୁଗୀୟ କବିତାର ଆତ୍ମା ।

#### ଆଂଗିକ-ସର୍ବସ୍ୱ କାବ୍ୟ-ଧାରା

କବିତାର ସାମାଜିକ ଆଧେୟ (Social Contents) ଯେତେବେଳେ ସଂକୁଚିତ ହୋଇଆସେ, ସେତେବେଳେ ତାହା ଆଂଗିକସର୍ବସ୍ୱ ବା ଟେକନିକ୍-ପ୍ରଧାନ ହୋଇଥାଏ । ଏହା ଇତିହାସରେ ବିଭିନ୍ନ ସମୟରେ ଆମେ ଦେଖି ଆସିଛୁ । କୌଣସି ଜାତି ଆଗରେ ବସ୍ତୁତିର ମାନଚିତ୍ର ଯେତେବେଳେ ଖଂଡ଼ିତ ଓ ସଂକୀର୍ଣ୍ଣ ହୋଇଆସେ, ସେତେବେଳେ ସେ ଯୁଗର କାବ୍ୟକବିତା ତାହାରୁ ଆଖି ଫେରାଇ ସ୍ୱକୀୟ ଶୈଳୀ ଓ ସଜ୍ଜାକୁହିଁ ପ୍ରଧାନ ଅବଲଂବନ କରିବାର ଦେଖାଯାଏ । ଏ ପ୍ରକ୍ରିୟା ଯେ ସମାଜ ବା ସଭ୍ୟତା ସଂଗେ ସମ ପଦକ୍ଷେପରେ ଚାଲେ ଏପରି କିଛି କଥା ନାହିଁ । ତଥାପି ମାନସକର୍ମ ବସ୍ତୁଜଗତରେ କିଛିକି ବହିର୍ଭୂତ ହୋଇପାରେ । ଉଦାହରଣ ସ୍ୱରୂପ ଗ୍ରୀକ୍ ସମାଜ ଓ ସଭ୍ୟତା ଅପେକ୍ଷା ରୋମାନ ସମାଜ ଓ ସଭ୍ୟତା ଅଧିକ ସଂହତ ଓ ସୁସଂଗଠିତ ଥିଲା । ମାତ୍ର ଗ୍ରୀକ୍ ସାହିତ୍ୟ ଯେପରି ସମୃଦ୍ଧ ଓ ବିଭବଶାଳୀ, ରୋମକ ସାହିତ୍ୟ ସେପରି ନୁହେଁ । ଏହାର କାରଣ ହେଉଚି ସାହିତ୍ୟ ବା ଶିଳ୍ପକଳା ପ୍ରଭୃତି ସୂକ୍ଷ୍ମ ମାନସ-କ୍ରିୟା ମୋଟାମୋଟି ଭାବେ ବସ୍ତୁ-ଚେତନା ସଂପର୍କ ଦ୍ୱାରା ନିୟଂତ୍ରିତ ହେଲେ

ମଧ୍ୟ ଏହା ବାହ୍ୟାରର ଘଟନାପୁଂଜ ତଥା ବସ୍ତୁପରିବେଶର ସିଧାସଳଖ ପ୍ରତିବିଂବ ନୁହେଁ । ମାତ୍ର ସମାଜରେ ଯେତେବେଳେ ଦ୍ରୁତ ପରିବର୍ତ୍ତନ ଘଟେ ଏହାର ଅଶୁ ପ୍ରତିକ୍ରିୟା ସାହିତ୍ୟରେ ମଧ୍ୟ ଦେଖାଯାଏ ।

ଅବିଭକ୍ତ ସମାଜରେ କବିତାର ମୂଳ-ଉତ୍ସ ସାମୂହିକ ଅବେଗ ଥିଲା, ସେଥିରେ କୌଣସି ସଂଦେହ ନାଇ । କୌଂଚ ମିଥୁନର ବ୍ୟଥା ଯେତେବେଳେ ପ୍ରଥମ (?) କବିଂକୁ ପ୍ରଥମ କବିତା ଲେଖିବା ପାଇଁ ପ୍ରେରଣା ଦେଇଥିବା କଥା କୁହାଯାଏ ସେତେବେଳେ ସମାଜ କଠୋର ଭାବରେ ଶ୍ରେଣୀବିଭକ୍ତ ଏବଂ ବ୍ୟକ୍ତି ସମାଜଠାରୁ ବହୁଧା ବିଚ୍ଛିନ୍ନ ଏବଂ ବ୍ୟକ୍ତିମାନସ ଓ ସମାଜ ମାନସ ମଧ୍ୟରେ ବିଚ୍ଛେଦ ଘଟିସାରିଥିଲା । ଭାଷା ବିଜ୍ଞାନମାନଂକ ମତରେ ଆଦିମ ପଦ୍ୟ ଉତ୍ପାଦନ-କେଂଦ୍ରିକ ଥିଲା ଏବଂ କୌମ-ସମାଜର tribal festivalକୁ କେଂଦ୍ର କରିହିଁ ଜନ୍ମ ନେଇଥିଲା । ଉଦାହରଣ ସ୍ୱରୂପ ଋକ୍‌ବେଦର ମଂତ୍ରଗୁଡ଼ିକ ମୂଳତଃ ଥିଲା ଯଜ୍ଞଭିତ୍ତିକ,—ଯେତେବେଳେ ଯଜ୍ଞ ଥିଲା ସାମୂହିକ ଉତ୍ପାଦନ ଓ ବିତରଣର ମାଧ୍ୟମ ଏବଂ ପରେ ଶ୍ରେଣୀ-ବିଭକ୍ତ ସମାଜରେ ତାହାଁର ରୂପାଂତର, ଏକ ଅନୁଷ୍ଠାନ ମାତ୍ର ।

ସେ ଯାହାହେଉ, ଅବିଭକ୍ତ ପଦ୍ୟ ଶ୍ରେଣୀବିଭକ୍ତ ସମାଜରେ କ୍ରମେ ବିଭକ୍ତ ହୋଇପଡ଼େ । ତଥାପି ଖ୍ରୀଷ୍ଟଯୁଗ ପର୍ଯ୍ୟଂତ ଏହା ସାମୂହିକ ଆବେଗରୁ ତଥା ସମାଜ-ମାନସରୁ ( Collective mind) ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇ ପଡ଼ିନଥିଲା । ଏ ଖ୍ରୀଷ୍ଟଯୁଗ ଓଡ଼ିଆ ଭାଷା-ସାହିତ୍ୟରେ ସପ୍ତଦଶ ଶତାବ୍ଦୀରୁ ଆରଂଭ ହୋଇଥିଲେ ମଧ୍ୟ ସଂସ୍କୃତ ସାହିତ୍ୟରେ ପ୍ରାୟ ସାମଂତତଂତ୍ରର ପରିଣତ ସ୍ତରରୁ ଅର୍ଥାତ୍ ମୌର୍ଯ୍ୟ ପର୍ବରୁ ଆରଂଭ ହୋଇଥିଲା ।

ସାରଳା-ଯୁଗରେ ଯେଉଁ ବିସ୍ତାରର ତାନପଟ ସାମଂତତଂତ୍ରର ବିଧିବିଧାନ ମଧ୍ୟରେ ମଧ୍ୟ ଏକ ସାମୂହିକ ଚେତନାର ମୂଳସୂତ୍ର ରଚନା କରିଥିଲା, ତାହା ପ୍ରତାପରୁଦ୍ରଂକ ପତନ ପରେ ଲୁଆଡ଼େ ଉଭେଇ ଗଲା । ବସ୍ତୁ-ଚେତନା ସାରଳା ଦାସ ଥିଲେ ଓଡ଼ିଶାର ବର୍ଦ୍ଧିଷ୍ଣୁ ସାମ୍ରାଜ୍ୟର କବି ରୂପାଂତର ଓ ଗାଥାକାର—ଯାହାଂକ ରଚନାରେ ତତ୍କାଳୀନ ଓଡ଼ିଶା ଓ ପ୍ରାୟ ସମଗ୍ର ଭାରତର ଭୌଗୋଳିକ ଚିତ୍ର ତଥା ଇତିହାସ ଛତ୍ରେ ଛତ୍ରେ, ପ୍ରତ୍ୟକ୍ଷରେ ଏବଂ ରୂପାଂତର ମାଧ୍ୟମରେ ଝଲସି ଉଠିଥିଲା । ତାଂକ ଚରିତ୍ରଗୁଡ଼ିକ ଥିଲେ ପ୍ରାଣବଂତ, ପ୍ରଖର, ଯଦିଚ ଟିକିଏ ଗ୍ରାମ୍ୟ ଓ ସାଧାରଣ । ତାଂକ ଭାଷା ଥିଲା ଏକ ଉଚ୍ଛଳ ଜଳଧିର ଭାଷା—ଯାହା ବାକ୍‌ସ୍ଫିତର ସହଜ

ପ୍ରାଣମସୃଣତାରେ ଗତିଶୀଳ ଓ ସାବଲୀଳ । ସେ ଥିଲେ ଓଡ଼ିଆ ବାଙ୍ମୟର ଉଦ୍‌ଘାଟକ ସହଜ କବି ସାରଳା ଦାସ,—ଝିଂକଡ଼ି ଗ୍ରାମର ସିଦ୍ଧେଶ୍ୱର ପରିଡ଼ାଙ୍କର ମହାକାବ୍ୟର କ୍ରମପରିଣାମ ।

କିନ୍ତୁ ରୀତି-ଯୁଗରେ ସାରଳା ଯୁଗର ସେ ପ୍ରଶସ୍ତ ସମାଜବୋଧ କ୍ରମେ ନି୍ଷ୍ପ୍ରାଣ ହୋଇ ଯାଏ । ଭାଷା ହରାଏ ତା'ର ସହଜ ସ୍ୱାଧୀନତା, ପ୍ରାଣ-ପ୍ରାଚୁର୍ଯ୍ୟ ଏବଂ ବାନ୍ଧି ହୁଏ ଶୃଙ୍ଖଳା-ଅଳଙ୍କାର ଏବଂ ଯମକ-ଅନୁପ୍ରାସର ସୁବର୍ଣ୍ଣ ଶିକୁଳି ଏବଂ କଥାବସ୍ତୁ ହୁଏ ପ୍ରଥାଗତ, ତାର ବିସ୍ତୃତ ପ୍ରେକ୍ଷାପଟରୁ ବିଚ୍ଛିନ୍ନ ହୋଇ ବନ୍ଦୀ ହୁଏ କେଉଁ ରାଜଅନ୍ତଃପୁରରେ କେବଳ ପ୍ରେମିକ-ପ୍ରେମିକାର ପୂର୍ବରାଗ-ପ୍ରଣୟ ବିରହ ମିଳନର ଛାଞ୍ଚଗଢ଼ା ଘଟଣା-ପରମ୍ପରା ମଧ୍ୟରେ, ନିଷ୍କ୍ରମଣର ଅନ୍ୟ ପଥ ନ ପାଇ ।

କବିତା ସମ୍ବନ୍ଧରେ Christopher Caudwell ତାଙ୍କର *Illusion and Reality* ପୁସ୍ତକରେ କହିଛନ୍ତି "Poetry is the nascent self-consciousness of man not as an individual but as sharer with others of a whole world of common emotions" ଏଇ ଆବେଗ ଯେତେ ସାର୍ବଜନୀନ ହୁଏ କବିତା ସେତେ ବ୍ୟକ୍ତିଗତ ନିଗଡ଼ରୁ ମୁକ୍ତି ପାଇ ସାର୍ବିକ ହୁଏ । କବିତା ସତ୍ୟକୁହିଁ ପ୍ରକାଶ କରେ । ସେ ସତ୍ୟ କେବଳ ବ୍ୟକ୍ତିଗତ ଅଭିଜ୍ଞତା ନୁହେ, ତାହା ଏକ ମିଶ୍ରିତ ଅଭିଜ୍ଞତା (associated experience)—ସମାଜମାନସ ଓ ବ୍ୟକ୍ତିମାନସର ପରସ୍ପର ମଧ୍ୟରେ ଅନୁପ୍ରବେଶ ଓ ସଂଘାତ ଫଳରେ ଏକ ସମ୍ୟକ ଚେତନାର ଜନ୍ମ ହୁଏ । ଏହାହିଁ ତା'ର ଅପରିହାର୍ଯ୍ୟ ପରିଣାମ ।

କିନ୍ତୁ ଶ୍ରେଣୀ-ବିଭକ୍ତ ସମାଜରେ ଶୋଷଣ ଯେତେ ଉତ୍କଟ ହୁଏ ଚିନ୍ତା ଓ କର୍ମ ମଧ୍ୟରେ ବ୍ୟବଧାନ ସେତେ ବଢ଼ିଚାଲେ । ଏଭଳି ସମାଜରେ କଠୋର ଶ୍ରମ-ବିଭାଜନ ଫଳରେ କେତେକ ଶ୍ରେଣୀ ଯଥା ସାମନ୍ତ, ସୁପରଭାଇଜର, ବୁଦ୍ଧିଜୀବୀ, ଯେପରି ଦିନକୁ ଦିନ ବାସ୍ତବତାଠାରୁ ଦୂରକୁ ଦୂରକୁ ଚାଲିଯାଆନ୍ତି ଏବଂ ବ୍ୟକ୍ତିମାନସ କେବଳ ଚିନ୍ତା ଓ ସୁଖ ଏବଂ 'ସଂସ୍କୃତି' ଇତ୍ୟାଦିରେ ଲିପ୍ତ ରହନ୍ତି, ଅନ୍ୟ କେତେକ ଶ୍ରେଣୀ ସେଇପରି ଦିନକୁ ଦିନ ଅଧିକ ଖଟିବାକୁ ଏବଂ ଚିନ୍ତାଠାରୁ ଅଧିକ ବିଚ୍ଛିନ୍ନ ହୋଇ ପଡ଼ିବାକୁ ବାଧ୍ୟ ହୁଅନ୍ତି । ଖାଲି ସେତିକି ନୁହେ ସମାଜରେ ପ୍ରବଳ ଅନ୍ତର୍ଦ୍ୱନ୍ଦ୍ୱ ଫଳରେ ତଥାକଥିତ ଉଚ୍ଚ ମଧ୍ୟବିତ୍ତ ବୁଦ୍ଧିଜୀବୀ ଶ୍ରେଣୀ ମଧ୍ୟ ବହୁ ବଢ଼ମ୍ବନାର ଶିକାର ହୁଅନ୍ତି, ଏବଂ ଅନେକେ

ସମାଜରୁ ନିଜକୁ ବିଚ୍ଛିନ୍ନ କରି ଆତ୍ମମଗ୍ନତା ମଧ୍ୟରେ ସମାଧାନ ଖୋଜନ୍ତି । (*Illusion & Reality*, ୧. ୧୮)

ଆତ୍ମିକ ଦିଗରୁ ଦେଖିଲେ ରୀତିଯୁଗ ବସ୍ତୁତ ସାମାଜିକ ପରିପ୍ରେକ୍ଷୀ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ବ୍ୟକ୍ତି-କେନ୍ଦ୍ରିକ ନୁହେଁ । ଏଯୁଗର ସାହିତ୍ୟ ଆଖ୍ୟାନବସ୍ତୁକୁ ଆଶ୍ରୟ କରି ଗଢ଼ି ଉଠିଥିବାରୁ ଚରିତ୍ରମାନଙ୍କ ମାଧ୍ୟମରେହିଁ କବି ନିଜର ଭାବ ଓ ଆବେଗର ପ୍ରକାଶ କରିଥାଏ । ତେଣୁ ଏମାନଙ୍କର କାବ୍ୟ ରୀତି ବ୍ୟକ୍ତିସର୍ବସ୍ୱ ନୁହେଁ, ବରଂ ବସ୍ତୁ-ମୁଖୀ, ଯଦିଚ ସେ ବସ୍ତୁନିଷ୍ଠା ସହଜ ସ୍ୱାଭାବିକତା ଏବଂ ବ୍ୟକ୍ତିତ୍ୱର ଦ୍ୱନ୍ଦ୍ୱ-ସମନ୍ୱୟଠାରୁ ବହୁ ଦୂରରେ, କେବଳ ଏକ ସରଳରୈଖିକ ବର୍ଣ୍ଣନାତ୍ମକ ପ୍ରକାଶ ମାତ୍ର ।

## ରୀତି-କାବ୍ୟର ପଟ୍ଟଭୂମି

ଖ୍ରୀଷ୍ଟୀୟ ୧୬୮୫ରୁ ୧୭୫୧ ପର୍ଯ୍ୟନ୍ତ ଉପେନ୍ଦ୍ର ଭଞ୍ଜଙ୍କର ଜୀବତ୍କାଳ ବୋଲି କେହି କେହି ନିର୍ଣ୍ଣୟ କରିଛନ୍ତି । ତେବେ ସେ ଖୋର୍ଦ୍ଧାରାଜା ଦିବ୍ୟସିଂହ ଦେବଙ୍କ (୧୬୯୩-୧୭୨୦) ସମସାମୟିକ ଥିଲେ ବୋଲି "ରସଲେଖା" କାବ୍ୟରୁ ଜଣାଯାଏ ('ଦିବ୍ୟସିଂହ ଗଜପତି ଅଙ୍କ ସପତ/ବିଂଶତିଃଶେଷ ଦିନେ ଶେଷ ଏହି ଗୀତ ।) । ସେତେବେଳକୁ ଓଡ଼ିଶା ସ୍ୱାଧୀନତା ହରାଇ ମୁସଲମାନ ଶାସକମାନଙ୍କର ପଦାନତ ହୋଇ ସାରିଥାଏ । ଖ୍ରୀ. ୧୫୬୮ ବେଳକୁ ଓଡ଼ିଶାରେ ମୋଗଲ ଆଧିପତ୍ୟ ପ୍ରତିଷ୍ଠିତ ହୁଏ । ଓଡ଼ିଶା ଗଜପତି କେବଳ ଖୋରଧା ଓ ନିକଟବର୍ତ୍ତୀ ଅଂଚଳରେ ନାମମାତ୍ର ଶାସକ ହୋଇଥାନ୍ତି । ଶକ୍ତିଶାଳୀ ନେତୃତ୍ୱ ଅଭାବରୁ ଦେଶ ନାନା ଖଂଡରେ ବିଭକ୍ତ ହୋଇ ପଡ଼ିଥିଲା । ଜାତୀୟ ଚରିତ୍ର ସଂପୂର୍ଣ୍ଣ ନଷ୍ଟଭ୍ରଷ୍ଟ ହୋଇଯାଇଥିଲା । ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶାରେ ମୋଗଲ ବାହିନୀର ସେନାପତି ଥିଲେ ରାଜା କେଶବ ଦାସ ମାରୁ । ସେ ପୁରୀ ମନ୍ଦିର ଲୁଂଠନ କରି ତତ୍କାଳୀନ ରାଜା ପୁରୁଷୋତ୍ତମ ଦେବଙ୍କୁ ଶୋଚନୀୟ ଭାବରେ ପରାସ୍ତ କରିଥିଲେ । ରାଜା ବାଧ୍ୟ ହୋଇଁ ତାଂକ ସଂଗେ ସନ୍ଧି କରିଥିଲେ । ସନ୍ଧିର ସର୍ତ୍ତ ଅନୁସାରେ ସେ ରାଜକେମାଂକୁ ଦିଲ୍ଲୀ ବାଦଶାହାଂକ ଅଂତଃପୁରକୁ ପ୍ରେରଣ କରିଥିଲେ ଏବଂ ନିଜ ଭଉଣୀକୁ କେଶବଦାସ ମାରୁଂକ ସଂଗେ ବିବାହ ଦେଇଥିଲେ । ଏହାଛଡ଼ା ସେ ମୋଗଲ ଖଜଣାଖାନାକୁ ତିନିଲକ୍ଷ ଟଂକା ସଲାମି ଦେଇଥିଲେ । ରାଜ୍ୟର ଘୃରିଆଡ଼େ

ଅଧଃପତନର ଦୃଶ୍ୟପଟ

ସାମନ୍ତ ଓ ଦଳପତିମାନେ ସ୍ୱତନ୍ତ୍ର ରାଜତ୍ୱ ପ୍ରତିଷ୍ଠା କରନ୍ତି । ସମଗ୍ର ଓଡ଼ିଶା ମୋଗଲମାନଙ୍କ ଅତ୍ୟାଚାର ଓ ନିଷ୍ପୀଡ଼ନରେ ଜର୍ଜରିତ ହୋଇ ପଡ଼ିଥାଏ ।

ଏହାହିଁ ହେଉଛି ଉପେନ୍ଦ୍ରଭଞ୍ଜଙ୍କ ଆବିର୍ଭାବ ପୂର୍ବରୁ ୭୦।୮୦ ବର୍ଷ ତଳର ଓଡ଼ିଶାର କରୁଣ ଚିତ୍ରପଟ । ଗୃହଆଡ଼େ ଅରାଜକତା ଏବଂ 'ନୈତିକ ଅଧଃପତନର ବିକଳ ଦୃଶ୍ୟ ।' ଭଞ୍ଜକବିଙ୍କ ଜୀବନର ଅନ୍ତିମ ସମୟରେ ଦେଶର ଅଧଃପତନ ଚରମ ସୀମାରେ ପହଞ୍ଚିଥିଲା । ସେତେବେଳର ନାମକୁ ମାତ୍ର ଓଡ଼ିଶାର ରାଜା ରାମଚନ୍ଦ୍ର ଦେବ, ୨ୟ (ଖ୍ରୀ: ୧୭୨୭—୪୩) ଜଣେ ହୀନବୀର୍ଯ୍ୟ ଓ ଦୁର୍ବଳମନା ବ୍ୟକ୍ତି ଥିଲେ । ସେ ମୁସଲମାନ ଧର୍ମ ଗ୍ରହଣ କରି ହାଫିଜ କାଦେରରେ ପରିଣତ ହୋଇ-ଥିଲେ । ତେଣୁ ତାଙ୍କର ପାଟରାଣୀ ତାଙ୍କୁ ପରିତ୍ୟାଗ କରି ପ୍ରଥମେ ଆଠଗଡ଼ ଏବଂ ପରେ ଘୁମୁସର ଗଡ଼ରେ ଯାଇ ଆଶ୍ରୟ ଗ୍ରହଣ କରିଥିଲେ । ଏ ସମ୍ପର୍କରେ 'ଭଞ୍ଜବଂଶାନୁଚରିତ'ରେ ଦେଖନ୍ତୁ—

"ରାମଚନ୍ଦ୍ରଦେବ ଓଡ଼ିଶା ଗଜପତି,
ମୁସଲମାନ ହୋଇ ବୁଡ଼ାଇଲେ ଜାତି ।
ଜାଣି ପାଟରାଣୀ ହୋଇଲେ ଅନ୍ତର,
ଆଠଗଡ଼େ ଆସି କଲେ ସେ ନଅର
ଆଠଗଡ଼ିଆଏ ରଖି ନ ପାରିଲେ,
ଘୁମୁସର ଭିତରେ ଆସି ପଶିଲେ ।
ବୀରକେଶରୀ ଦେବ ହେଲେ ଏଥି ଜାତ,
ବହୁତ ଉତ୍ସବ କଲେ ଭଞ୍ଜ ନରନାଥ ।

ସେ ସମୟରେ ସମାଜର ନେତା ରାଜା ଓ ସାମନ୍ତମାନେ କିଭଳି ବିଳାସ ଓ କଳାସମୃଦ୍ଧ ଜୀବନ ଯାପନ କରୁଥିଲେ, ତାହା ଉପେନ୍ଦ୍ରଭଞ୍ଜଙ୍କ ପିତାମହ ଏବଂ ରୀତି-ଯୁଗର ଅନ୍ୟତମ ଆଦ୍ୟସ୍ରଷ୍ଟା ଧନଞ୍ଜୟ ଭଞ୍ଜଙ୍କ ଜୀବନୀରୁ ଜଣାଯିବ । ସେ ନିଜ ସାନ ଭାଇ ଗୋବିନ୍ଦ ଭଞ୍ଜଙ୍କୁ ଆଟରାଜା ପଦରେ ନିଯୁକ୍ତ କରି ନିଜେ ଆମୋଦ-ପ୍ରମୋଦ ଓ କାବ୍ୟ-ଚର୍ଚ୍ଚାରେ ନିଯୁକ୍ତ ରହିଥିଲେ । "ଭଞ୍ଜବଂଶାନୁ-ଚରିତ"ରେ ତାଙ୍କ ସମ୍ବନ୍ଧରେ କୁହାଯାଇଛି —

"ବୀଣା, ସିତାର, ପଖା, ଖଞ୍ଜଣୀ ଆଦି ଯେତେ,
ପୁଣି ପୂଜା ବାଦ୍ୟ ବାଜଣା ଜଣା ତେତେ ।
ବାହାରେ ସାତକୋଡ଼ି ପୁଣି ଗଣି ରଖିଥାନ୍ତି,
ଭିତରେ ସାତକୋଡ଼ି ନାଚୁଣି ନାଚନ୍ତି ।

ଜଗତ ଗୋଟାଏ ସେ ନିର୍ମାଣ କଲେ
ସତୁରି ହଜାର ଟଂକା ତହିଁ ଲଗା ଇଲେ ।
ଖଟ ଦୋଳି ବାଂକଥା ତହିଁ ବଂଧାଇଲେ
ନବରତ୍ନେ ତାହା ଜଡ଼ିତ କରିଥିଲେ ।
ଉନ୍ନତ ସ୍ତନୀ ଯଉବନୀ ନାରୀଙ୍କର
ସ୍ତନରେ ମରଦନ କରନ୍ତି ଶରୀର ।"

ଏହି ଧନଂଜୟ ଭଂଜଥିଲେ ରୀତି-ଯୁଗର ଅନ୍ୟତମ ଆଦ୍ୟ-ସୂରୀ । ତାଂକ ପ୍ରଣୀତ ରଘୁନାଥ ବିଳାସ, ତ୍ରିପୁର ସୁଂଦରୀ, ଇଚ୍ଛାବତୀ, ମଦନ ମଂଜରୀ, ଅନଂଗ ରେଖା, ଚୌପଦୀ ଭୂଷଣ କାବ୍ୟ ସ୍ଥଳ ବିଶେଷରେ ଆଳଂକାରିକ ରୀତିରେ ଲିଖିତ । ('ଝଙ୍କାର,' ଫେବୃଆରୀ ୧୯୬୮ ସଂଖ୍ୟାରେ ଶ୍ରୀ ପଠାଣି ପଟ୍ଟନାୟକଂକ ଭଂଜଯୁଗ ଉପରେ ଲିଖିତ ପ୍ରବଂଧ ଦ୍ରଷ୍ଟବ୍ୟ । )

ଏଇପରି ବାତାବରଣ ମଧ୍ୟରେ ରୀତିଯୁଗର ଆରଂଭ, ବିକାଶ ଓ ବିଲୟ ।

**ଅବକ୍ଷୟର ଆବହ**

ଘୁମୁସର ରାଜବଂଶର ଆଭ୍ୟଂତରୀଣ ଇତିହାସ ଉପାଂଶୁ ହତ୍ୟା ଓ ପାରିବାରିକ ଷଡ଼ଯଂତ୍ରରେ ସର୍ବଦା କଂଟକିତ ଥିଲା । ଉପେଂଦ୍ରଭଂଜଂକ ପ୍ରପିତାମହ ଗୋପୀନାଥ ଭଂଜ ନିଜ ବଡ଼ଭାଇ ବନମାଳୀ ଭଂଜଂକୁ ହତ୍ୟା କରି ଘୁମୁସର ସିଂହାସନ ଅଧିକାର କରିଥିଲେ । ତାଂକ ପୁତ୍ର ଧନଂଜୟ ଭଂଜ ଥିଲେ ଜଣେ ସୁକବି ଏବଂ ନ୍ୟାୟନିଷ୍ଠ ରାଜା । ସେ ଦୀର୍ଘ ୭୫ ବର୍ଷ ରାଜତ୍ୱ କଲାପରେ ତାଂକର ପ୍ରିୟତମା ସାନରାଣୀ ନୂଆଗଡ଼ ରାଜାଂକ କନ୍ୟା ମଂଡାଦେଈଂକ ପ୍ରରୋଚନ ରେ ଜ୍ୟେଷ୍ଠପୁତ୍ର ଗଂଗାଧରଂକ ବଦଳରେ ଅନ୍ୟ ପୁତ୍ର ନୀଳକଂଠଂକ ହାତରେ ରାଜ୍ୟଭାର ଦେବାକୁ ମନସ୍ଥ କଲେ ।" ଶୁଣାଯାଏ ମଂଡା ଦେବୀ ଜଣେ ପରିଚାରିକା ହାତରେ ବିଷପ୍ରୟୋଗ କରି ବୃଦ୍ଧ ସ୍ୱାମୀଂକର ପ୍ରାଣନାଶ ଘଟାଇଥିଲେ । ଏହାପରେ ନୀଳକଂଠ ଭଂଜ ଘୁମୁସର ରାଜ ସିଂହାସନରେ ବସଂତି । ସେ ସଦଳବଳେ ଭ୍ରାତା ଗଂଗାଧରଂକ ପ୍ରାସାଦରେ ପ୍ରବେଶ କରି ତାଂକର ଏବଂ ତାଂକ ପୁତ୍ର ଶତ୍ରୁ ଭଂଜଂକର ମୁଂଡ କାଟି ପକାଂତି । ଶତ୍ରୁ ଭଂଜଂକ ଅଂତଂସତ୍ତ୍ୱା ପତ୍ନୀ କୌଣସିମତେ ଧରାକୋଟକୁ ପଳାଇ ଯାଇ ଜୀବନରକ୍ଷା କରଂତି । କିଂତୁ ନୀଳକଂଠଂକ ବିରୋଧରେ ଶୀଘ୍ର ରାଜ୍ୟରେ ପ୍ରଜା ବିଦ୍ରୋହ ଦେଖାଯାଏ । ଗୋବିଂଦ ଭଂଜଂକ କନିଷ୍ଠ ପୁତ୍ର ଘନଭଂଜ ଶତ୍ରୁଭଂଜଂକ ପୁତ୍ର ରଣଭଂଜଂକୁ ରାଜା ବୋଲି ଘୋଷଣା କରି ଏଇ ପ୍ରଜା-ମେଳିର ନେତୃତ୍ୱ ନିଅଂତି । ବିଦ୍ରୋହୀମାନେ ଗଡ଼ ଆକ୍ରମଣ କରିବାକୁ ଆସୁଥିବା ଦେଖି ନୀଳକଂଠ

ଭଞ୍ଜ ସପରିବାର ଧରାକୋଟ, ଓ ସେଠାରେ ରହି ନ ପାରି ଅଠଗଡକୁ ପଳାଇ-ଯାନ୍ତି । ମାତ୍ର ଅଠଗଡ଼ ରାଜା ତାଙ୍କୁ ରଖି ନ ପାରିବାରୁ ନୂଆଗଡ ଯାଇ ନୂଆଗଡ଼ ରାଜାଙ୍କ ଆଶ୍ରୟରେ ମାଳିଆଝୁରେ ରହନ୍ତି । ଇଆଡ଼େ ଘନଭଞ୍ଜେ କିଛୁଦିନ ରଣଭଞ୍ଜଙ୍କ ନାଁରେ ଶାସନ ଚଳାଇବା ପରେ ତାଙ୍କୁ ହତ୍ୟା କରି ନିଜେ ଘୁମୁସର ରାଜଗାଦୀ ଦଖଲ କରିବସନ୍ତି । ଉପେନ୍ଦ୍ରଭଞ୍ଜ ନୀଳକଣ୍ଠ ଭଞ୍ଜଙ୍କର ଜ୍ୟେଷ୍ଠପୁତ୍ର । ଉପେନ୍ଦ୍ର ଭଞ୍ଜ କଦାପି ରାଜା ହୋଇ ନାହାନ୍ତି । ତଥାପି ଘୁମୁସର ସିଂହାସନ ଉପରେ ତାଙ୍କର ନ୍ୟାଯ୍ୟ ଦାବୀ ସମ୍ବନ୍ଧରେ ସେ ବରାବର ସଚେତନ ଥିଲେ । ସେ ତାଙ୍କର କେତେକ ପୁସ୍ତକର ଭଣିତାରେ ନିଜକୁ 'ନୃପତି', 'ଭଞ୍ଜରାଜା' କହିଛନ୍ତି ବୋଧହୁଏ ଏଇ କାରଣରୁ । 'ସୁଭଦ୍ରା ପରିଣୟ' କାବ୍ୟର ଚତୁର୍ଥ ଛାନ୍ଦର ଶେଷ ପଦରେ ସେ ଭଣିତି କରିଛନ୍ତି:—

"ସପ୍ତବିଂଶ ପଦେ ଛାନ୍ଦ ଶେଷ କରି **ଉପଇନ୍ଦ୍ର ଭଞ୍ଜ ନୃପତି**
ସୂଚଏ ଭାବିତ ରାମ ରାମ ଅନନ୍ତ ଭୂଷଣ ସତ୍କୀର୍ତ୍ତି
ସହସ୍ରକର ଦର୍ପ ହରଦୀପିତ
ସମ୍ପଦ ଦସ୍ତକ ଅତି ଜନକର ନେତ୍ର କମଳ ଛବିଜିତ ।"

'ରସପଞ୍ଚକ'ର ଗୋଟିଏ ସ୍ଥାନରେ ସେ ନିଜକୁ 'ଭଞ୍ଜରାଜ' କହିଥିବା ଦେଖିବାକୁ ମିଳେ । 'ପଞ୍ଚସାୟକ'ରେ ଯେତେ ସ୍ଥାନରେ ଭଣିତି ରହିଛି, ସବୁଠି ସେ ପ୍ରାୟ ନିଜକୁ "ଉପେନ୍ଦ୍ର ଭଞ୍ଜ ନୃପତି" ଭାବରେ ପରିଚିତ କରାଇଛନ୍ତି । 'ଚିତ୍ରକାବ୍ୟ ବନ୍ଧୋଦୟ'ରେ କବି ନିଜର ଯେଉଁ ଗ୍ରନ୍ଥସୂଚୀ ଦେଇଛନ୍ତି ସେଥିରେ 'ପଞ୍ଚସାୟକ' ଅନ୍ୟତମ । କବି ନିଜେ ରାଜା ହେବାକୁ ହକ୍‌ଦାର ଥାଇ ରାଜା ହୋଇ ନ ପାରି ମନସ୍ତାପରେ ଥିବା କଥା ତାଙ୍କ 'ରସିକ ହାରାବଳୀ' ଗ୍ରନ୍ଥରୁ ଜଣାପଡ଼େ । ଯଥା:—

"ରାଜାଙ୍କୁ ହେବାର ରାଜ୍ୟଭ୍ରଷ୍ଟ, ଯୁବାକୁ ହେବାର ପତ୍ନୀକଷ୍ଟ ।
ବୋଲେ ଉପଇନ୍ଦ୍ରଭଞ୍ଜ ବୀରବର, ଏଥୁଁ ବଳି ନାଇ ଆନ କଷ୍ଟ ।" (୮।୨୫)

ଓଡ଼ିଶାରେ ମାୟାଧର ମାନସିଂହ ପ୍ରଭୃତି ଯେଉଁ କେତେଜଣ ଲେଖକ ଭାବପ୍ରବଣ ହୋଇ ରାଜକବି ସ୍ୱେଚ୍ଛାରେ ରାଜସିଂହାସନ ଛାଡିଦେଇ ବାକ୍‌ଦେବୀଙ୍କ ଚରଣ ତଳେ ନିଜକୁ ଉତ୍ସର୍ଗ କରିଥିଲେ ବୋଲି କାବ୍ୟ-କବିତା-ନାଟକ ଆଦି ଲେଖିଯାଇଛନ୍ତି, ସେମାନେ ଭଞ୍ଜବଂଶର ରକ୍ତାକ୍ତ ଗୃହବିବାଦର ଇତିହାସ ଓ କବିଙ୍କ ମାନସିକ ପ୍ରତିକ୍ରିୟା ସହିତ ପରିଚିତ ଥିଲେ ତ !!

ଖଡ଼ୁହଂଡା ନୀଳକଂଠ ଭଂଜଂଙ୍କର ରାଜ୍ୟରୁ ପ୍ରଜା-ବିଦ୍ରୋହ ଫଳରେ ପଳାୟନର ସଂବାଦ ସୂର୍ଯ୍ୟମଣି ଚ୍ୟାଉପଟ୍ଟନାୟକଂଙ୍କ 'ଘୁମୁସର ଭଂଜ ବଂଶାବଳୀ'ରୁ ମିଳେ:—

"ନୀଳକଂଠ ଭଂଜେ ଶୁଣିଲେ କର୍ଣ୍ଣର ।
ଘନଭଂଜେ ଘେନି ବହୁ ଲସ୍କର ।।
ରଣଭଂଜଂକୁ ରାଜତ୍ୱ ଶାଢ଼ୀ ଦେଇ ।
ସବ ମଲକାଦି କଂଧଂକୁ ଡକାଇ ।।
ଗାଲେରୀ କୋକଲବା ମୁଠା ପାଇକଂକୁ ।
ସଂଗେ ଆଣିଲେ ଯୁଦ୍ଧ କରିବାକୁ ।।
ତାହା ଶୁଣି ନୀଳକଂଠ ଭଂଜ ଭୟ ।
କରି ହୃଦକୁ କଂପାଇ ଅତିଶୟ ।।
ଆପଣା ଲୋକଂକୁ ଘେନି ପଳାଇଲେ ।
ଧରାକୋଟରେ ଯେ ପ୍ରବେଶ ହୋଇଲେ ।
ସେଠାରେ ଭୟ ପାଇ ନ ରହିଲେ ।
ଅଠଗଡ଼କୁ ସତ୍ୱରେ ପଳାଇଲେ ।।
ସେହିଠାରେ କେତେଦିନ ରହି ପୁଣି ।
ନୂଆଗଡକୁ ଗଲେ ସବୁଂକୁ ଘେନି ।×××
ତାହାଂଙ୍କର କୁମର ଉପେଂଦ୍ର ଭଂଜ ।
ଗ୍ରଂଥ କବିତ୍ୱରେ ସେହି କବିରାଜ ।"

ବିଦ୍ରୋହରେ ଜୟଯୁକ୍ତ ହେବା ପରେ ଘନ ଭଂଜେ କିଛିଦିନ ରଣଭଂଜଂଙ୍କ ନାମରେ ଶାସନ ଚଳାଇ ପରେ ରଣଭଂଜଂକୁ ହତ୍ୟା କରି ନିଜେ ରାଜା ହୋଇ-ଥିଲେ । କେହି କେହି କହଂତି ନୀଳକଂଠ ଭଂଜଂକ ମୃତ୍ୟୁ ପରେ ନୂଆଗଡ଼ର ରାଜା ଉପେଂଦ୍ର ଭଂଜଂକୁ ଘୁମୁସରର ରାଜା ବୋଲି ସ୍ୱୀକୃତି ଦେଇ ତାଂଙ୍କର କୁଆଡ଼େ ନୂଆଗଡ଼ଠାରେ ଏକ ଅଭିଷେକ କରାଇଥିଲେ । ମାତ୍ର ସେ ଚିରକାଳ ଘୁମୁସର ବାହାରେହିଁ ରହୁଥାଇଥିଲେ ( ଦୁର୍ଗାମାଧବ ନଂଦ—ନବରବି, ଜୁନ୍ ୧୯୭୪)

ଉପେଂଦ୍ରଭଂଜ ବାଣପୁର ରାଜବଂଶରେ ବିବାହ କରିଥିଲେ । ମାତ୍ର ଅଳ୍ପ ବୟସରେ ତାଂଙ୍କର ପତ୍ନୀବିୟୋଗ ଘଟିଥିଲା । ତାଂକ ପ୍ରଣୀତ ପୁସ୍ତକମାନଂଙ୍କ ମଧ୍ୟରେ ଲାବଣ୍ୟବତୀ, ବୈଦେହୀଶ ବିଳାସ, ପ୍ରେମସୁଧାନିଧି, ସୁଭଦ୍ରାପରିଣୟ, କୋଟି ବ୍ରହ୍ମାଂଡସୁଂଦରୀ, ରସିକହାରାବଳୀ, ରସପଂଚକ, ରସଲେଖା, ସୁବର୍ଣ୍ଣରେଖା, ଦଶପୋଇ, ଷୋଳପୋଇ, ବଜକାବ୍ୟ ବଂଧୋଦୟ ପ୍ରଭୃତି ପ୍ରଧାନ ।

# କାବ୍ୟରେ ରୀତି

ବାମନାଚାର୍ଯ୍ୟଙ୍କ ମତରେ "ରୀତିରାତ୍ମା କାବ୍ୟସ୍ୟ ।" ଅର୍ଥାତ୍ ରୀତିହିଁ ହେଉଛି କାବ୍ୟର ଆତ୍ମା । ସେ ପୁଣି ଲେଖିଛନ୍ତି —"କାବ୍ୟଂ ଗ୍ରାହ୍ୟମଲଂକାରାତ୍" ଅର୍ଥାତ୍ ଅଳଂକାର ଦ୍ୱାରାହିଁ କାବ୍ୟର ମର୍ଯ୍ୟାଦାବୃଦ୍ଧି ହୁଏ ।* ଅଳଂକାର ଅର୍ଥରେ ସେ ବୁଝିଛନ୍ତି ସୌନ୍ଦର୍ଯ୍ୟ । ଏହା ନିଶ୍ଚୟ ବାହ୍ୟ ସୌନ୍ଦର୍ଯ୍ୟ ।*

ଦଂଡୀଂକ ମତରେ ଅଳଂକାର ଓ ଗୁଣ ଉଭୟେହିଁ କାବ୍ୟଶୋଭାଜନକ । କିଂତୁ ବାମନଂକ ମତରେ କେବଳ ଗୁଣହିଁ କାବ୍ୟଶୋଭାଜନକ ଏବଂ ଗୁଣ ଓ ରୀତି ପ୍ରାୟ ଅଭିନ୍ନ । ତାଂକ ମତରେ ଯାହା ଦ୍ୱାରା କାବ୍ୟଶୋଭା ଉତ୍ପାଦନ କରାଯାଏ ତାହାହିଁ ଗୁଣ । ଅଳଂକାର ଦ୍ୱାରା ଏଇ କାବ୍ୟଶୋଭା ଆହୁରି ବଢ଼ିଯାଏ ।

ଦଂଡୀ ଓ ବାମନାଚାର୍ଯ୍ୟ

"କାବ୍ୟଶୋଭାୟାଃ କର୍ତାରୋ ଧର୍ମା ଗୁଣାସ୍ତଦତିଶୟହେତବସ୍ତ୍ୱଲଂକାରାଃ ।" ବାମନଂକ ମତରେ ରୀତି ତିନୋଟି, ଯଥା ଗୌଡ଼ୀ, ବୈଦର୍ଭୀ, ପାଂଚାଳୀ । ( ଏ ସଂପର୍କରେ, ଗୌଡ଼ୀ, ପାଂଚାଳୀ ପ୍ରଭୃତି ରୀତି ଯେଉଁଥିରେ ସମସ୍ତ ଗୁଣ ନାହିଁ, ତାକୁ କାବ୍ୟ କୁହାଯାଇ ନପାରେ । ଯଦି କେତୋଟି ଗୁଣ ଥିଲେ ଚଳିବ ତେବେ ବୈଦର୍ଭୀ ରୀତିରେ ଯଦି 'ଏଇ ପାହାଡ଼ରେ ଧୂମ ଓ ଅଗ୍ନି ଅଛି' କୁହାଯାଏ ତେବେ ତାର ମଧ୍ୟ କାବ୍ୟତ୍ୱ ସ୍ୱୀକାର କରିବାକୁ ହେବ । )ବାମନ କହନ୍ତି, ଗୁଣ କାବ୍ୟର ନିତ୍ୟ ଧର୍ମ, ଅଳଂକାର ଅନିତ୍ୟ ଧର୍ମ । ଗୁଣ ଛଡ଼ା କାବ୍ୟଶୋଭା ହିଁ ହୋଇନପାରେ । ଅଳଂକାର କାବ୍ୟଶୋଭା ବୃଦ୍ଧି କରେ, ମାତ୍ର । ମାତ୍ର ଯଦି ଗୁଣ ନଥାଏ ତାହେଲେ କାବ୍ୟଶୋଭାହିଁ ରହିବ ନାଇ । ଫଳରେ କେବଳ ଅଳଂକାର ଦ୍ୱାରା କାବ୍ୟତ୍ୱ କଦାପି ସଂଭବ ହେବ ନାଇ । ୧ ।

ବାମନଂକ ମତରେ କେବଳ ଗୁଣ ଅବିଚ୍ଛିନ୍ନ ଭାବରେ ବାକ୍ୟ ଓ ବାକ୍ୟାର୍ଥର କାବ୍ୟତ୍ୱ ସଂପାଦନ କରେ । ଗୁଣ ଉପରେହିଁ ଅଳଂକାରର ସ୍ଥିତି ।

ମମ୍ମଟ ଦେଖାଇଛନ୍ତି, ଗୁଣ ନଥିଲେ ମଧ୍ୟ ଅଳଂକାର ଥାଇପାରେ ଏବଂ କେବଳ ମାତ୍ର ଅଳଂକାର ଦ୍ୱାରା କାବ୍ୟର କାବ୍ୟତ୍ୱ ସଂଭବ ।

ରାଜଶେଖର ତାଂକ କାବ୍ୟ-ମୀମାଂସାରେ ବାମନଂକର ତିନୋଟି ରୀତିରହିଁ ଉଲ୍ଲେଖ କରିଛନ୍ତି । ବାମନ ଯାହାକୁ ଗୌଡ଼ୀ, ବୈଦର୍ଭୀ, ପାଂଚାଳୀ କହିଛନ୍ତି,

---

* କବିତା, ୧୯୬୬ । (୧) କାବ୍ୟ-ବିଚାର—ସୁରେଂଦ୍ରନାଥ ଦାଶଗୁପ୍ତ ।

(୨) କାବ୍ୟ-ବିଚାରରୁ ଗୃହୀତ ।

ମମ୍ମଟ ସେବୃତ୍ତିକୁ 'ମାଧୁର୍ଯ୍ୟ-ବ୍ୟଂଜକ, ଲଘୁ, ପ୍ରକାଶକ ଓ କୋମଳ ବର୍ଣ୍ଣ ବିନ୍ୟାସର ଫଳ-ସ୍ୱରୂପ ମନେ କରିଛନ୍ତି । ମଧୁର ବର୍ଣ୍ଣ-ବିନ୍ୟାସରେ ଅର୍ଥାତ୍ ଟ-ବର୍ଗ-ବର୍ଜିତ ଅନ୍ୟ ଅନ୍ୟ ବର୍ଗର ବର୍ଣ୍ଣମାନେ ଯଦି ସେଇ ସେଇ ବର୍ଗର ଅଂତ୍ୟଯୁକ୍ତ ହୁଏ, ଯଥା ଆଂକ, ଅଂକା ଇତ୍ୟାଦି ଏବଂ ଯଦି ଅଳ୍ପ ସମାସ ଥାଏ କିଂବା

ରାଜଶେଖର ଓ ମମ୍ମଟ

ସମାସ ଆଦୌ ନ ଥାଏ ତାହେଲେ ମାଧୁର୍ଯ୍ୟ ହୁଏ । ମାଧୁର୍ଯ୍ୟ-ଗୁଣହିଁ ବୈଦର୍ଭୀ ରୀତିର ପ୍ରକାଶକ । ପୁଣି ବର୍ଗର ପ୍ରଥମ ଓ ତୃତୀୟ ବର୍ଣ୍ଣ ସହିତ ଯଦି ଦ୍ୱିତୀୟ ଓ ଚତୁର୍ଥ ବର୍ଣ୍ଣର ଯୋଗ ହୁଏ, କିଂବା ଟ, ଠ, ଡ, ଢ, ବର୍ଣ୍ଣର ଯଦି ପ୍ରୟୋଗ ହୁଏ ବା ଏକଜାତୀୟ ଦୁଇଟି ବର୍ଣ୍ଣ ଏକତ୍ର ସଂଯୁକ୍ତ ହୁଏ ଏବଂ ସମାସବହୁଳ ପଦ ପ୍ରୟୋଗ ହୁଏ, ତାହେଲେ ଓଜଗୁଣ ହୁଏ । ତାହା ଗୌଡ଼ୀ ରୀତିର ପ୍ରକାଶକ । ଆଉ କୋମଳ ବର୍ଣ୍ଣମାନଂକର ଅର୍ଥାତ୍ ଲ ବ ସ ର ପ୍ରଭୃତିର ପ୍ରୟୋଗରେ ପାଂଚାଳୀ ରୀତି ପ୍ରକାଶ ପାଏ ।' (ଏକ୍ସ)

ଏହା ଏକପ୍ରକାର ବୃତ୍ତ୍ୟାନୁପ୍ରାସ ମଧ୍ୟରେ ପରିଗଣିତ ହୋଇପାରେ । ବୃତ୍ତ୍ୟାନୁପ୍ରାସ ଶବ୍ଦାଳଂକାର, ତେଣୁ ଏଇ ମତ ଅନୁସରଣ କଲେ ବାମନୋକ୍ତ ରୀତି ଅଳଂକାର ମଧ୍ୟରେ ଅଂତର୍ଭୁକ୍ତ ହୋଇଯାଏ ।

ଭାମହ ରୀତି ସଂବଂଧରେ କହଂତି, ବୈଦର୍ଭୀ, ଗୌଡ଼ୀ, ପାଂଚାଳୀ ପ୍ରଭୃତି ରୀତି-ବିଭାଗ କେବଳ ମୂର୍ଖମାନେହିଁ କରିଥାଂତି । ଭାମହ ଗୁଣ, ଦୋଷ, ରୀତି ଏ ସବୁକୁ ଖୁବ୍ ବେଶୀ ଗ୍ରାହ୍ୟ କରି ନାହାଂତି । ସେ କହଂତି, ଗୁଣ କେଉଁଠି ଦୋଷ ହୁଏ, ଦୋଷ କେଉଁଠି ଗୁଣ ହୁଏ । ଅମୁକ ରୀତିରେ ଲେଖିଲେ କାବ୍ୟ ହେବ, ଅମୁକ ରୀତିରେ ଲେଖିଲେ କାବ୍ୟ ହେବ ନାଇ—ଏପରି

ଭାମହ

କୌଣସି କଥା ନାଇ । ଭାମହଂକ ମତରେ ଦୋଷ-ଗୁଣ ଉପରେ ନିର୍ଭର କରି କାବ୍ୟ-ବିଚାର ଏକାଂତ ବହିରଂଗ ସମାଧାନ । ଦୋଷ-ଗୁଣ କେହି କାବ୍ୟର ସ୍ଥାୟୀ ଧର୍ମ ନୁହଂତି । ଶୋଭା ଓ ସୌଂଦର୍ଯ୍ୟହିଁ କାବ୍ୟର ମୂଳ ଉପାଦାନ । କିଂତୁ ଏଇ ଶୋଭା ଓ ସୌଂଦର୍ଯ୍ୟକୁ ଏକାଂତ ଭାବରେ ଶବ୍ଦଗତ ଓ ଅର୍ଥଗତ ମନେ କରି କାବ୍ୟକୁ ଏକାଂତ objective ବା ବହିରଂଗ ଭାବେ ଆଲୋଚନା କଲେ କାବ୍ୟ-ସୌଂଦର୍ଯ୍ୟର ଯଥାର୍ଥ ସ୍ଥାନ ନିରୂପଣ କରି ନପାରି ଶବ୍ଦାର୍ଥର ମୋହଜାଲରେ ନିପତିତ ହେବାକୁ ହୁଏ । ('କାବ୍ୟ-ବିଚାର')

ଅଭିନବ ଗୁପ୍ତ କହଂତି ଯେ ରସର ଶୋଭା ବୃଦ୍ଧି ନକଲେ କୌଣସି ଅଳଂକାରକୁ ଅଳଂକାର କୁହାଯାଇ ନ ପାରେ । ଅର୍ଥାତ୍ ଅଳଂକାର ଶବ୍ଦର ଗୁଣ

ନୁହେଁ କି ଅର୍ଥର ଗୁଣ ନୁହେଁ । ରସର ଶୋଭା-ସମ୍ପାଦନହିଁ

ଅଭିନବଗୁପ୍ତ ଏହାର ଧର୍ମ । କୁନ୍ତକ ବି ସେଇପରି କହିଛନ୍ତି, ବକ୍ରତାର ସହିତ ଅନ୍ୱିତ ନ ହେଲେ ଅଳଙ୍କାର ଅଳଙ୍କାର ହୁଏ ନାହିଁ । ଉପମାଦି ଅଳଙ୍କାର କେବଳ ମାତ୍ର ସାଦୃଶ୍ୟାଦି ଧର୍ମ ଦ୍ୱାରା ଅଳଙ୍କାର ବୋଲି ବିବେଚିତ ହୋଇ ନପାରେ । ବକ୍ରତା ସହିତ ଅନ୍ୱିତ ହୋଇ କାବ୍ୟଶୋଭା ବୃଦ୍ଧି କଲେହିଁ ତାହା ଅଳଙ୍କାର ବୋଲି ପରିଗଣିତ ହୁଏ । କୁନ୍ତକଙ୍କର ଏଇ ଯୁକ୍ତିକୁ ରୁଯ୍ୟକ ପ୍ରଭୃତି ପରବର୍ତ୍ତୀ ଯୁଗର ଆଳଙ୍କାରିକମାନେ ସ୍ୱୀକାର କରିଛନ୍ତି ।

ବିଶ୍ୱନାଥ କବିରାଜ କହନ୍ତି, ରୀତି ଦ୍ୱାରା କେବଳ ଶବ୍ଦ-ସଂଘଟନ ଛଡ଼ା ଅନ୍ୟ କିଛି ବୁଝାଏ ନାହିଁ । ସେଇ ରୀତିକୁ କାବ୍ୟର ଆତ୍ମାସ୍ୱରୂପ କୁହାଯାଇ ନପାରେ ।

ଆନନ୍ଦବର୍ଦ୍ଧନ (ଧ୍ୱନିକାର) ଅଳଙ୍କାରର ସ୍ୱରୂପ ନିର୍ଣ୍ଣୟ ଦିଗରେ ମୁଣ୍ଡ ଖେଳାଇ ନାହାନ୍ତି । ଏମାନଙ୍କ ମତରେ ଧ୍ୱନିର ଅଙ୍ଗୀଭୂତ

ଆନନ୍ଦବର୍ଦ୍ଧନ ନହେଲେ ବା ଧ୍ୱନିର ବିଚ୍ଛିତି-ସାଧନ ନକଲେ ଅଳଙ୍କାର ମାତ୍ରକେ ଗୁଣୀଭୂତବ୍ୟଙ୍ଗର ଅନୁରୂପ ହୁଅନ୍ତି ଏବଂ ଏହା ଦ୍ୱାରା ଯେଉଁ କାବ୍ୟ ହୁଏ ତାକୁ ଚିତ୍ରକାବ୍ୟ କୁହାଯାଇପାରେ ଏବଂ କାବ୍ୟ-ଶ୍ରେଣୀ ମଧ୍ୟରେ ତାହା ଅତି ଅଧମ । ମମ୍ମଟ କହିଛନ୍ତି, ରସର ପୋଷାକ ନ ପାଇଲେ ବା ରସ ନ ଥିଲେ, ଅଳଙ୍କାର ଉକ୍ତିବୈଚିତ୍ର୍ୟ ମାତ୍ର । ଆନନ୍ଦବର୍ଦ୍ଧନଙ୍କ ବକ୍ତବ୍ୟ ହେଲା— "ଅଳଙ୍କାରୋ ହି ଚାରୁତ୍ୱହେତୁଃ ।" (ଏକନ୍)

ବାମନଙ୍କ ତିନୋଟି ରୀତି ଛଡ଼ା ରୁଦ୍ରଟ ଲାଟୀ ନାମକ ଆଉ ଏକ ରୀତିର ଉଲ୍ଲେଖ ମଧ୍ୟ ଦେଖାଯାଏ । ଅଗ୍ନିପୁରାଣରେ ଏଇ ଚାରୋଟି ରୀତିର ଉଲ୍ଲେଖ ଦେଖିବାକୁ ମିଳେ । ଭୋଜ ଏହା ସହିତ ମାଗଧୀ ଓ ଆବନ୍ତିକା ନାମକ ଆଉ ଦୁଇଟି ରୀତି କଥା ଉଲ୍ଲେଖ କରିଛନ୍ତି ।

## ବକ୍ରୋକ୍ତିବାଦ

ଭାମହ ତାଙ୍କ କାବ୍ୟାଳଙ୍କାରରେ ସ୍ୱଭାବୋକ୍ତିକୁ ଅଳଙ୍କାର ବୋଲି ସ୍ୱୀକାର କରି ନାହାନ୍ତି । ହେତୁ, ସୂକ୍ଷ୍ମ, ଲେଶ ପ୍ରଭୃତିକୁ ମଧ୍ୟ ସେ ଅଳଙ୍କାର ବୋଲି ମାନି ନାହାନ୍ତି । ସେ କହିଛନ୍ତି, ବକ୍ରୋକ୍ତି ସବୁ ଅଳଙ୍କାରର ମୂଳ ଏବଂ ବକ୍ରୋକ୍ତି ଛଡ଼ା କାବ୍ୟ ହୁଏ ନାହିଁ । ଯେତେଦୂର ଜଣାପଡ଼େ, ବକ୍ରୋକ୍ତି ଅର୍ଥରେ ସେ କହିବାର ଭଙ୍ଗିର ବୈଚିତ୍ର୍ୟହିଁ ବୁଝିଛନ୍ତି । ଏବଂ ସେଇଥିପାଇଁ ହିଁ ସେ

ସ୍ୱଭାବୋକ୍ତିକୁ କାବ୍ୟ ବୋଲି ମାନିବାକୁ ନାରାଜ । ଘଟଣା ଯେପରି ସ୍ୱାଭାବିକ ଘଟେ ତାକୁ ସେଇପରି ଭାବରେ ବର୍ଣ୍ଣନା କଲେ କହିବା ଭଂଗିରେ ବୈଚିତ୍ର୍ୟ ରହେ ନାଇ । ତେଣୁ ବାକ୍ୟର ଭଂଗିରେ, ଭଂଗିତରେ ଅର୍ଥପ୍ରକାଶକୁହିଁ ସେ କାବ୍ୟତ୍ୱର ପ୍ରଯୋଜକ ବୋଲି ମନେ କରନ୍ତି । ତାଂକ ମତରେ ସମସ୍ତ ଅଳଂକାର ବକ୍ରୋକ୍ତିର ପ୍ରକାର ମାତ୍ର । ଭାମହ ଦଂଡୀ, ବାମନ କିଂବା ରୁଦ୍ରଟଂକ ପରି ବକ୍ରୋକ୍ତିକୁ ଗୋଟିଏ ଶବ୍ଦାଳଂକାର ମାତ୍ର ବୋଲି ମନେ କରନ୍ତି ନାଇ । କେହି କେହି କହନ୍ତି, ଭାମହ ଅତିଶୟୋକ୍ତିକୁହିଁ ବକ୍ରୋକ୍ତି ଏବଂ ସମସ୍ତ ଅଳଂକାର ଅତିଶୟୋକ୍ତି-ମୂଳକ ବୋଲି ନିର୍ଦ୍ଦେଶ ଦେଇଛନ୍ତି । ତାଂକର 'ସୈଷା ସର୍ବୈବ ବକ୍ରୋକ୍ତି' ଉକ୍ତିହିଁ ଏହାର କାରଣ ।

ଆନନ୍ଦବର୍ଦ୍ଧନ ଭାମହଂକ ଉକ୍ତି ପ୍ରତ୍ୟାଖ୍ୟାନ କରି କହିଛନ୍ତି :—'କବି-ପ୍ରତିଭା ଦ୍ୱାରା ଅତିଶୟୋକ୍ତି ଯେଉଁ ଅଳଂକାରକୁ ଆଶ୍ରୟ କରେ ତାହାର ଯଥାର୍ଥ ଗୁରୁତ୍ୱ ଉତ୍ପନ୍ନ ହୁଏ । ଅନ୍ୟ ସବୁ ଅଳଂକାର କେବଳ ଅଳଂକାର ମାତ୍ର । ଅତିଶୟୋକ୍ତି ସମସ୍ତ ଅଳଂକାରର ରୂପ ଧାରଣ କରିପାରେ ବୋଲି ଲକ୍ଷଣିକଭାବେ ଅତିଶୟୋକ୍ତିକୁ ଭାମହ 'ସର୍ବାଳଂକାରରୂପା' ବୋଲି ବର୍ଣ୍ଣନା କରିଛନ୍ତି । (ଏକ୍ସ)

"ତତ୍ରୋତିଶୟୋକ୍ତିର୍ଯମଲାଂକାରମଧିତିଷ୍ଠତି କବିପ୍ରତିଭାବଶାତ୍ ତସ୍ୟ ଚାରୁତ୍ୱାତିଶୟୋଗୋହନ୍ୟସ୍ୟ ତ୍ୱଲଂକାରମାତ୍ରତୈବ ଇତି ସର୍ବାଳଂକାରଶରୀର-ସ୍ୱୀକରଣଯୋଗ୍ୟତ୍ୱେନ ଅଭେଦୋପଚାରାତ୍ ସୈବ ସର୍ବାଳଂକାରରୂପା ଇତ୍ୟୟମେବାର୍ଥୋବଗଂତବ୍ୟଃ ।"

ଅଭିନବଗୁପ୍ତ କିଂତୁ ଏ ବିଷୟରେ ଆନଂଦବର୍ଦ୍ଧନଂକ ସହିତ ଏକମତ ହୋଇ ପାରି ନାହାଂତି । ସେ କହଂତି :—

"ଯାତିଶୟୋକ୍ତିର୍ଲକ୍ଷିତା ସୈବ ସର୍ବା ବକ୍ରୋକ୍ତ୍ୟଲଂକାରପ୍ରକାରଃ ।" ଅର୍ଥାତ୍ ଏଇ ଯେ ଅତିଶୟୋକ୍ତିର ବର୍ଣ୍ଣନା କରାଗଲା, ସମସ୍ତ ଅଳଂକାରହିଁ ଏଇପରି ବକ୍ରତାମୂଳକ । (କାରଣ ଭାମହ ଅନ୍ୟତ୍ର କହିଛନ୍ତି, ସମସ୍ତ କାବ୍ୟାଳଂକାରହିଁ ବକ୍ରୋକ୍ତି "ବକ୍ରାଭିଧେୟଶବ୍ଦୋକ୍ତିରିଷ୍ଟା ବାଚାମଲଂକୃତିଃ' ।) ଅଭିନବଗୁପ୍ତ ପୁଣି କହିଛନ୍ତି, ଅତିଶୟୋକ୍ତିହିଁ ଯଦି ସାଧାରଣତ ସକଳ ଅଳଂକାରସ୍ୱରୂପ ହୋଇ-ଥାଂତା, ତେବେ କବିପ୍ରତିଭାର ଆବଶ୍ୟକତା ରହଂତା ନାଇ । ଆଉ ଅତିଶୟୋକ୍ତି ଅଳଂକାର କେବଳ ଅଳଂକାର-ମାତ୍ର ଏକଥାର ମଧ୍ୟ କିଛି ଅର୍ଥ ନାଇ । କାରଣ ଅଳଂକାରମାତ୍ର ବୋଲି କେଉଁଠି କିଛି ନାଇ ।

ଦଣ୍ଡୀ କହନ୍ତି ଯେ ପ୍ରାୟ ସମସ୍ତ ଅଳଂକାରରେଇ ବକ୍ତବ୍ୟ ଅର୍ଥକୁ ବଢ଼ାଇ କୁହାଯାଏ, ସେଥିପାଇଁ ସମସ୍ତ ଅଳଂକାରରେ ଅତିଶୟୋକ୍ତିର ବୀଜ ରହିଚ । (ଏକ୍ସ)

ଅତିଶୟୋକ୍ତି ଏକପ୍ରକାର ବକ୍ରୋକ୍ତି । ସେଥିପାଇଁ କୁହାଯାଇପାରେ ଯେ ସ୍ୱଭାବୋକ୍ତି ଛଡ଼ା ସମସ୍ତ ଅଳଂକାରହିଁ ବକ୍ରୋକ୍ତିମୂଳକ । ବକ୍ରୋକ୍ତିକୁ ସେଥିପାଇଁ ସେ 'ଅଳଂକାର ସାମାନ୍ୟବଚନ' ବୋଲି ନିର୍ଣ୍ଣୟ କରିଛନ୍ତି ।

ବାମନ କିନ୍ତୁ ଏହାକୁ ଏକ ସ୍ୱତନ୍ତ୍ର ଅଳଂକାର ବୋଲି ଗଣନା କରିବାର ପକ୍ଷପାତୀ । ଏହା ଆନନ୍ଦବର୍ଦ୍ଧନୋକ୍ତ ଅବିବକ୍ଷିତ ବାଚ୍ୟବ୍ୟଂଗର ଅନୁରୂପ । କିନ୍ତୁ ପରବର୍ତ୍ତୀ ଆଲଂକାରିକମାନଙ୍କ ମଧ୍ୟରେ କେବଳ କୁନ୍ତକଙ୍କ ଛଡ଼ା ଅନ୍ୟ କେହି ବକ୍ରୋକ୍ତିକୁ କୌଣସି ବିଶିଷ୍ଟ ସ୍ଥାନ ଦେଇ ନାହାନ୍ତି ।

କୁନ୍ତକ ଯେ କି ସମ୍ଭବତ ଅଭିନବ ଗୁପ୍ତଙ୍କ ସମକାଳୀନ ଥିଲେ, ଏବଂ ଦଶମ ଓ ଏକାଦଶ ଶତକର ଲୋକ ଥିଲେ, ତାଙ୍କର ବକ୍ରୋକ୍ତି-ଜୀବିତ ଗ୍ରନ୍ଥରେ ଶବ୍ଦାର୍ଥ ସାହିତ୍ୟର ସ୍ୱରୂପ ନିର୍ଣ୍ଣୟ କରିବାକୁ ଚେଷ୍ଟା କରିଛନ୍ତି ।

କୁନ୍ତକ ସେ କାବ୍ୟ-ବିଶେଷତ୍ୱ ରୂପେ ଶବ୍ଦାର୍ଥଠାରୁ ସଂପୂର୍ଣ୍ଣ ବିଭିନ୍ନ 'ଗୋଟିଏ ଶୋଭାତିଶଯ୍ୟ, ତାତ୍ପର୍ଯ୍ୟ ବା ରସ-ପ୍ରତୀତିର' କଥା ଉଲ୍ଲେଖ କରିଛନ୍ତି । କବିକୌଶଳର ବିଚିତ୍ରତାହିଁ ଏଇ ଜାତୀୟ ବକ୍ରତାକୁ ସୃଷ୍ଟି କରିଥାଏ । ପୁରାତନ କଥା କହିବାକୁ ଯାଇ ମଧ୍ୟ କବି ସେଠାରେ ନୂତନ ଭାବ ପ୍ରକାଶ କରିଥାନ୍ତି । କୁନ୍ତକ ରସକୁ ଅସ୍ୱୀକାର କରି ନାହାନ୍ତି । ସେ ତାଙ୍କ ଗ୍ରନ୍ଥର ଚତୁର୍ଥ ଉନ୍ମେଷରେ କହିଛନ୍ତି—କେବଳ ମାତ୍ର କଥାକୁ ଆଶ୍ରୟ କରି କାବ୍ୟ ହୁଏ ନାଇ । ରସଦ୍ୱାରରେ ସୌନ୍ଦର୍ଯ୍ୟମୟ ହୋଇ ଉଠିଲେହିଁ ତାହା କାବ୍ୟ ହୁଏ । ଭାମହ ବା ଦଣ୍ଡୀଙ୍କ ଭଳି ସେ ରସକୁ ଏକ ଅଳଂକାର ବିଶେଷ (ଯଥା ରସ-ବାଦଳଂକାର) ରୂପେ ଗ୍ରହଣ କରିବାକୁ ଅନିଚ୍ଛୁକ । ରସ ଯେଉଁଠି ବାଚ୍ୟାର୍ଥର ଅଂଗୀଭୂତ ହୁଏ ସେଠାରେ ତାହା ରସାଦାଦଳଂକାର ହୁଏ । ଆନନ୍ଦବର୍ଦ୍ଧନଙ୍କ ଭଳି କୁନ୍ତକ ମଧ୍ୟ ମନେ କରନ୍ତି ଯେ ରସକୁ ଶବ୍ଦ ଦ୍ୱାରା ପ୍ରକାଶ କରାଯାଇ ନପାରେ । ପୂର୍ବାଚାର୍ଯ୍ୟମାନେ ରସକୁ ଅଳଂକାରର ଅଂଗୀଭୂତ କରିବା ପାଇଁ ରସବତ୍, ପ୍ରେୟଃ, ଊର୍ଜସ୍ୱୀ ଏବଂ ସମାହିତ ପ୍ରଭୃତି ଯେଉଁ ସବୁ ଅଳଂକାରର ଉଦ୍ଭାବନ କରି ଯାଇଛନ୍ତି ଆନନ୍ଦବର୍ଦ୍ଧନ ସେସବୁକୁ ଗୁଣୀଭୂତବ୍ୟଂଗ ପର୍ଯ୍ୟାୟରେ ଆଣି ପକାଇ-ଛନ୍ତି । ମାତ୍ର କୁନ୍ତକ କହନ୍ତି, ଏ ସବୁ ଅଳଂକାର ନୁହେଁ କି ଗୁଣୀଭୂତବ୍ୟଂଗ ନୁହେଁ, ଏମାନେ ଅଳଂକାର୍ଯ୍ୟ । ରସବତ୍ ପ୍ରଭୃତି ଅଳଂକାରରେ ରସହିଁ ପ୍ରଧାନ ।

ରସହିଁ କାବ୍ୟ ଏବଂ ସେଥିପାଇଁ ଏହାକୁ ଅଳଂକାର କୁହାଯାଇ ନପାରେ । ଆନଂଦବର୍ଧନଂକ ସହିତ ତାଂକ ମତର ପାର୍ଥକ୍ୟ ଏଇ ଯେ ସେ ରସକୁ ବକ୍ରତାର ଏକ 'ପ୍ରକାର' ବୋଲି ମନେ କରଂତି । ତାଂକର ଉପଚାର-ବକ୍ରତା ଆନଂଦବର୍ଧନଂକ ଲକ୍ଷଣାମୂଳ ଧ୍ୱନିର ଅନୁରୂପ । (କା:ବ)

## କାବ୍ୟରେ ରସ

କାବ୍ୟରେ ରସର ଗୁରୁତ୍ୱ ସଂବଂଧରେ ଭାମହ ଅନବଗତ ନଥିଲେ । କାବ୍ୟରସ ପାନ କରି ଲୋକେ ଶାସ୍ତ୍ର ପଢ଼ିବାକୁ ପ୍ରବୃତ୍ତ ହୋଇ ପାରଂତି, କାରଣ ପ୍ରଥମେ ମଧୁ ଲେହନ କରି ଲୋକେ ପରେ କଟୁ ଔଷଧ ପାନ କରଂତି । ଅଭିନବ ଗୁପ୍ତଂକ ସମୟରେ ରସର ଯେପରି ଘନୀଭୂତ ଆଲୋଚନା ହୋଇଥିଲା, ଭାମହ, ଦଂଡୀ ପ୍ରଭୃତିଂକ ମଧ୍ୟରେ ସେପରି ଭାବରେ ହୋଇନାଇ । ଦଂଡୀ ରସ ସଂବଂଧରେ ଯାହା ଅଳ୍ପ କିଛି ଲେଖିଛଂତି ସେଥିରୁ ତାଂକର ମତ ସୂକ୍ଷ୍ମ ଭାବରେ ନିରୂପଣ କରିବା କଠିନ । ବାମନ ରସକୁ କାବ୍ୟର ଏକ ପ୍ରଧାନ ଗୁଣ ବୋଲି ସ୍ୱୀକାର କରିଛଂତି । ଏଇ ଗୁଣଟିର ନାମ କାଂତି । ଉଦ୍‌ଭଟ ରସକୁ ଅପେକ୍ଷାକୃତ ଅଧିକ ପ୍ରାଧାନ୍ୟ ଦେଇଛଂତି । ତାଂକ ମତରେ ରସ ଥିଲେହିଁ କାବ୍ୟକୁ ଜୀବଂତ କୁହାଯାଇପାରେ । ସେଥିପାଇଁ ରସକୁ କାବ୍ୟର ଆତ୍ମା କୁହା ଯାଇପାରେ । (କା-ବ)

"ରସାଦ୍ୟଧିଷ୍ଠିତମ୍ କାବ୍ୟମ୍ ଜୀବଦ୍‌ରୂପତୟାଂ ଯତଃ
କଥ୍ୟତେ ତଦ୍ ବସାଦୀନାଂ କାବ୍ୟାତ୍ମତ୍ୱଂ ବ୍ୟବସ୍ଥିତମ୍ ।" (ଉଦ୍‌ଭଟ)

ଅଭିନବଗୁପ୍ତ କହଂତି, ରସକୁ ସାକ୍ଷାତ୍କାର କୁହାଯାଇପାରେ ବା ନିଷ୍ପ୍ରତ୍ୟାତ୍ମିକା ବୃତ୍ତି କୁହାଯାଇପାରେ, କିଂବା ସଂକଳ୍ପ ବା ସ୍ମୃତି ବି କୁହାଯାଇ-ପାରେ, କିଂବା କେବଳ ଏକ ସ୍ଫୁରଣ ବା ସ୍ଫୁର୍ତ୍ତି କୁହାଯାଇପାରେ । ଏ ବିଷୟରେ କିଛି ସଠିକ କହିବା ସଂଭବ ନୁହେ । ମନୀଷ ଚିତ୍ତରେ ପ୍ରସୁପ୍ତ ଭାବରେ ଅନାଦି କାଳରୁ ବହୁ ଭୋଗାନୁଭୂତି ଓ ଭୋଗର ଆକାଂକ୍ଷା ବିଦ୍ୟମାନ ରହିଚି । ସାଧାରଣୀ-କୃତ ଭୟାଦି ଭାବ ଚିତ୍ତରେ ଉପସ୍ଥାପିତ ହେଲେ ଅନାଦିକାଳ-ସଂଚିତ କୌଣସି ନା କୌଣସି ଭୋଗବାସନା ସହିତ ତାର ଯେଉଁ ପରିଚୟ ଘଟେ ତାହା ଫଳରେ ସେଇ ସାଧାରଣୀକୃତ ଭୟାଦି ଭାବ ରସରୂପରେ ପରିପୁଷ୍ଟ ହୋଇଉଠେ । ସବୁ କାବ୍ୟଜ୍ଞଂକ ଚିତ୍ତରେ ଏଇ ସାଧାରଣୀକୃତ ସ୍ୱଭାବର ପ୍ରକାଶ ଏକ ପ୍ରକାର ହୁଏ ନାଇ । ତାହା ଭିନ୍ନ ଭିନ୍ନ ବ୍ୟକ୍ତିଂକ ଚିତ୍ତରେ ଭିନ୍ନ ଭିନ୍ନ ପ୍ରକାର ହୋଇପାରେ । ସାଧାରଣୀକୃତ

ଚମତ୍କାର

ଇତ୍ୟାଦି ଭାବ ସହିତ 'ହୃଦୟସ୍ଥିତ ଅର୍ଧନିମଗ୍ନ ବାସନାର ପରିଚୟ ହେବା ଫଳରେ ଯେଉଁ ଚେତନା ଜାଗ୍ରତ ହୁଏ ତାହା ସବେ ଦେଶକାଳାଦି ସଂବଂଧ-ସଂବଳିତ ବ୍ୟକ୍ତିଗତ ସ୍ୱାର୍ଥ ଓ ବ୍ୟକ୍ତିଗତ ସୁଖ ଦୁଃଖାଦି ଜଡ଼ିତ ନୁହେ । ଏଇ ବାଧାବିହୀନ ଚେତନା-ଉଦ୍‌ବୋଧନର ନାମ ଚମତ୍କାର ।' ଆମର ନିମଗ୍ନ ବାସନା ସହିତ ସାଧାରଣୀକରଣର ମିଳନ ବା ପରିଚୟ-ଜନିତ ଗୋଟିଏ ବିଶିଷ୍ଟ ଚେତନାର ଉଦ୍‌ବୋଧନ ହୁଏ ( aesthetic attitude of the mind ), ଦ୍ୱିତୀୟ ଅର୍ଥ ତଜ୍ଜନିତ ଆହ୍ଲାଦ ଏବଂ ତୃତୀୟ ଅର୍ଥ ତଜ୍ଜନିତ ଶରୀର ପୁଲକାଦି । ଅଭିନବଗୁପ୍ତ ରସ ସଂବଂଧରେ ପୁଣି କହନ୍ତି

ରତ୍ୟାଭ୍ୟାସ

ଯେ ସଂବଦାତ୍ମତା ରୂପେ ରସର ପ୍ରକାଶ ହୁଏ । କାହା ପ୍ରତି କାହାର ଆକର୍ଷଣ ଯଦି ସାଧାରଣୀଭୂତ ଭାବରେ ଅଭିବ୍ୟକ୍ତ ହୁଏ ତେବେ ତାହାକୁ ଆମେ ରତି କହିବୁଁ ନାଇ—ରତ୍ୟାଭ୍ୟାସ କହିବୁଁ । ଅଭିନବଗୁପ୍ତ କାବ୍ୟାର୍ଥକୁ ରସ ବୋଲି କହିଲେ ବି କାବ୍ୟର ଚରମ ତାତ୍ପର୍ଯ୍ୟ ରସ ମଧ୍ୟରେ ହୁଏ ବୋଲି ସୁସ୍ପଷ୍ଟ ଭାବରେ ଅଂଗୀକାର କରିଛଂନ୍ତି ରସ ମଧ୍ୟ ଦେଇ ସମଗ୍ର ବିଶ୍ୱର ଯେଉଁ ଅଂତଦୃଷ୍ଟିଟି ଫୁଟିଉଠେ, କବି ତାଂକ କାବ୍ୟ ମଧ୍ୟ ଦେଇ ସମଗ୍ର ବିଶ୍ୱଭୁବନର ସତ୍ୟକୁ ବୁଦ୍ଧି ଦ୍ୱାରା ରସସିକ୍ତ କରି ପ୍ରକାଶ କରି ଭଗବତ୍‌ପ୍ରାପ୍ତି ସଦୃଶ ଚରମାନଂଦ ଲାଭ କରଂନ୍ତି । ( ଏକନ୍ )

ଶୃଂଗାର ରସ ସଂବଂଧରେ ଅଭିନବଗୁପ୍ତ କହଂନ୍ତି, ଭରତ ଯାହା "ଉଜ୍ଜ୍ୱଳ-ବେଶାତ୍ମକ ଅର୍ଥାତ୍" ଶୃଂଗାରର ନାମ ରତି, ( ଶୃଂଗାରୋ ନାମ ରତିଃ ସ୍ଥାୟିଭାବ ପ୍ରଭାବଃ ଉଜ୍ଜ୍ୱଳବେଷାତ୍ମକ ) ବୋଲି କହିଛଂନ୍ତି ତାହା ଠିକ ନୁହେ । ସ୍ତ୍ରୀ ପୁରୁଷର ପରସ୍ପରାଭିଳାଷ ଓ କାମପ୍ରବୃତ୍ତିକୁ ରତି ବା ଶୃଂଗାର କୁହାଯିବ ନାଇ । ଏହା ବ୍ୟଭିଚାରୀ ଭାବ ମାତ୍ର । କିଂତୁ ପ୍ରାରଂଭରୁ ଶେଷ ପର୍ଯ୍ୟଂତ ମିଳନ ଓ ବିରହରେ ପରିପୂର୍ଣ ସୁଖ ସ୍ୱଭାବକୁ ରତି କୁହାଯାଏ ।

କ୍ଷେମେଂଦ୍ର ରସକୁ ପ୍ରଧାନ ସ୍ଥାନ ନଦେଇ ଔଚିତ୍ୟକୁ ପ୍ରଧାନ ସ୍ଥାନ ଦେଇ-ଛଂନ୍ତି । ସେ କହିଛଂନ୍ତି, ଲୋକେ ରସକୁ କାବ୍ୟର ଆତ୍ମା ବୋଲି କହିଥାଂନ୍ତି । କିଂତୁ ଔଚିତ୍ୟହିଁ ରସର ପ୍ରାଣ ।

ମମ୍ମଟ କାବ୍ୟ ଲକ୍ଷଣ ମଧ୍ୟରେ ରସକୁ ଅଂତର୍ଭୁକ୍ତ ନ କଲେ ମଧ୍ୟ ଦୋଷ-ଗୁଣ ଅଲଂକାରାଦି ଆଲୋଚନା ପ୍ରସଂଗରେ ବିଶ୍ୱନାଥ କବିରାଜଂକ ପରି ରସକୁ ପ୍ରାଧାନ୍ୟ ଦେଇଛଂନ୍ତି । ତାଂକ ମତରେ, ରସହିଁ କାବ୍ୟର ମୁଖ୍ୟ ଅର୍ଥ, ରସକୁ ଆଶ୍ରୟ କରି ଯାହା ଥାଏ ତାହାକୁହିଁ ଶବ୍ଦର ଅର୍ଥ କୁହାଯାଇ ପାରେ ।

## ବିଶ୍ୱନାଥ କବିରାଜ

ବିଶ୍ୱନାଥ କବିରାଜ ତାଂକ "ସାହିତ୍ୟଦର୍ପଣ"ରେ କହିଛଂତି ଯେ ଯେତେ-ବେଳେ ରଜ ଓ ତମ ଗୁଣ ତିରୋହିତ ହୁଏ ଏବଂ ସତ୍ତ୍ୱ ଗୁଣର ଉଦ୍ରେକ ହୁଏ, ସେତେବେଳେ ହୃଦୟର ଚମତ୍କାରିତା ରୂପକ ଯେଉଁ ବିସ୍ତାର ଘଟେ, ତାହା ଫଳରେ କୌଣସି କୌଣସି ପ୍ରାକ୍ତନ ପୁଣ୍ୟଶୀଳ ବ୍ୟକ୍ତି ସ୍ୱପ୍ରକାଶ, ଚିନ୍ମୟ, ଅଖଂଡ, ଅନ୍ୟ ଜ୍ଞେୟ ବସ୍ତୁଠାରୁ ସଂପର୍କହୀନ, ଲୋକୋତ୍ତର, ଚମତ୍କାର-ପ୍ରାଣସ୍ୱରୂପ ବ୍ରହ୍ମସ୍ୱାଦତୁଲ୍ୟ ରସକୁ ନିଜ ସହିତ ଅଭିନ୍ନ ଭାବରେ ଆସ୍ୱାଦନ କରି ପାରଂତି ।

ଚମତ୍କାରିତା — ଏହି ସମୟରେ ମନ ରଜ ଓ ତମ ଦ୍ୱାରା ଆକ୍ରାଂତ ଥାଏ ନାହିଁ, ସେଥିପାଇଁ ସ୍ୱଚ୍ଛ ସତ୍ତ୍ୱ ସ୍ୱରୂପରେ ଅବସ୍ଥିତ ଥାଏ । ଚମତ୍କାର ଶବ୍ଦର ବ୍ୟାଖ୍ୟା କରିବାକୁ ଯାଇ ବିଶ୍ୱନାଥ କହିଛଂତି ଯେ ଚମତ୍କାରିତ୍ୱ ହୃଦୟର ବିସ୍ତାର । ( କା ବି )

ଚମତ୍କାରିତ୍ୱକୁ କେହି ଅଦ୍ଭୁତ ବୋଲି ବ୍ୟାଖ୍ୟା କରି ନାହାଂତି । କେଏ ଚମତ୍କାରିତାକୁ 'ନାଂଦନିକ ବା ସୌଂଦର୍ଯ୍ୟାତ୍ମକ ବୋଧ (aesthetic attitude) ପୁଣି କେହି ହୃଦୟ ସଂବାଦ ଜନିତ ହ୍ଲାଦ, ଏହିପରି ଅର୍ଥରେ ବ୍ୟାଖ୍ୟା କରିଛଂତି ।' ରସ ଯେ ବ୍ରହ୍ମସ୍ୱାଦ ଏବଂ ଆନଂଦାତ୍ମକ ଆସ୍ୱାଦଠାରୁ ଅଭିନ୍ନ ଏକଥା ବିଶ୍ୱନାଥ ମମ୍ମଟଂକଠାରୁ ଗ୍ରହଣ କରିଛଂତି ବୋଲି ଅଧ୍ୟାପକ ଶ୍ରୀ ସୁରେଂଦ୍ରନାଥ ଦାସଗୁପ୍ତ ତାଂକ 'କାବ୍ୟ-ବିଚାର'ରେ ଦର୍ଶାଇଛଂତି ।

ବିଶ୍ୱନାଥ ରସକୁ ସ୍ୱପ୍ରକାଶ ଆନଂଦସ୍ୱରୂପ ବୋଲି ବର୍ଣ୍ଣନା କରିବା ପ୍ରସଂଗରେ କହିଛଂତି ଯେ କରୁଣ, ଭୟାନକ, ବୀଭତ୍ସ, ପ୍ରଭୃତି ରସରେ ଯେଉଁ ସୁଖାନୁଭବ ହୁଏ ତାହା ସହୃଦୟ ପାଠକ ବା ଦର୍ଶକମାନେ ସମସ୍ତେ ଜାଣଂତି । ଯଦି କରୁଣ ରସାସ୍ୱାଦ ସମୟରେ ଦୁଃଖ ଅନୁଭୂତ ହୁଅଂତା ତେବେ କେହି ତାହା ଅସ୍ୱାଦ କରିବାକୁ ଉନ୍ମୁଖ ହୁଅଂତେ ନାହିଁ ବା ରାମାୟଣାଦି ଶୁଣିବା ପାଇଁ କେହି ବ୍ୟାକୁଳ ହୁଅଂତେ ନାହିଁ । କରୁଣ-ରସରେ ଦ୍ରାବିତ ହେଲେ ଅନେକ ସମୟରେ ପାଠକ ଅଶ୍ରୁଜଳ ତ୍ୟାଗ କରଂତି । ମାତ୍ର ତାହାର କାରଣ ଦୁଃଖାନୁଭବ ନୁହେ । ଚିତ୍ତ ରସ -ବିଗଳିତ ହେଲେ ଅନେକ ସମୟରେ ତାହା ଫଳରେ ଅଶ୍ରୁପାତ ଘଟିପାରେ । ନାୟକ ନାୟିକା ବର୍ଣ୍ଣିତ ବିଭାବାଦିକୁ ଯଦି ପାଠକ ବା ଦର୍ଶକ ସ୍ୱକୀୟ ବିଭାବାଦି ରୂପେ ମନେକରେ ତାହାହେଲେ ତାହା ଫଳରେ ଲୌକିକ, ହର୍ଷ, ଶୋକ, ବ୍ରୀଡ଼ା, ଆତଂକ ପ୍ରଭୃତି ଉତ୍ପନ୍ନ ହୋଇପାରେ । ଏହି ଭୟରେ ତାଂକର ପୂର୍ବୋକ୍ତ

ସାଧାରଣୀକରଣକୁ ଟିକିଏ ପରିବର୍ତ୍ତନ କରି ବିଶ୍ୱନାଥ କହିଛନ୍ତି ଯେ ବିଭାବାଦି ଜନିତ ଯେଉଁ ରସାସ୍ୱାଦ ହୁଏ, ତାହା ନାୟକର ହୋଇ ମଧ୍ୟ ଯେପରି ନାୟକର ନୁହେ, ସେହିପରି ଏହା ପାଠକର ବା ଦର୍ଶକର ହୋଇ ମଧ୍ୟ ତାର ନୁହେ । ସ୍ୱଗତତ୍ୱ ବା ପରଗତତ୍ୱ ରୂପକ କୌଣସି ବଂଧନ ତାର ନାଇ ।

ବିଶ୍ୱନାଥ ରସାତ୍ମକ ବାକ୍ୟ କାବ୍ୟ ବୋଲି ('ବାକ୍ୟଂ ରସାତ୍ମକଂ କାବ୍ୟଂ') କହିଛଂନ୍ତି । ଏଇ ରସ ପୁଣି ବିଭିନ୍ନ ପ୍ରକାର । ଭରତ ନାଟ୍ୟ ଶାସ୍ତ୍ରରେ ଗୁଡ଼ିଏ ପ୍ରଧାନ ଓ ଗୁଡ଼ିଏ ଅପ୍ରଧାନ ରସର ଉଲ୍ଲେଖ କରିଛନ୍ତି । ଭରତ ତାଂକ ନାଟ୍ୟ ଶାସ୍ତ୍ରରେ ଲେଖିଛଂନ୍ତି ଯେ 'ବିଭାବାନୁଭାବ ବ୍ୟଭିଚାରିସଂଯୋଗାଦ ରସ ନିଷ୍ପତ୍ତି ।' ଭଟ୍ଟ ଲୋଲ୍ଲଟ ପ୍ରଭୃତି କହଂନ୍ତି, ଅମ ଅଂତରର ସ୍ଥାୟୀ ଭାବ ସହିତ ବିଭାବ ପ୍ରଭୃତିର ସଂଯୋଗ ହେଲେ ରସ ଉତ୍ପନ୍ନ ହୁଏ । ସ୍ଥାୟୀ ଭାବ ଅର୍ଥରେ ଆଲଂକାରିକମାନେ ଅଂତରର ଗୁଢ଼ ପ୍ରଦେଶରେ ପ୍ରବାହିତ ହେଉଥିବା ଭାବ ବା emotions ବୁଝଂନ୍ତି । ଏହା ପ୍ରଧାନତଃ ଆଠ ପ୍ରକାର : ଶୃଂଗାର, (ବିଭାବ—ରତି) (ବା sex-emotion) ହାସ୍ୟ, (ବିଭାବ ହର୍ଷ) କରୁଣ, (ବିଭାବ ବିୟୋଗ) ବୀର, (କ୍ରୋଧ ବିଭାବ ଉତ୍ସାହ, ଅପକାର ସହ୍ୟ ନ କରିବାର ଯେଉଁ ତୀବ୍ର ଭାବ) ଭୟ, ବୀଭତ୍ସ, ଅଦ୍ଭୁତ ଇତ୍ୟାଦି । ଯେତେବେଳେ ଲୌକିକ ବସ୍ତୁ ଦ୍ୱାରା ଏଇ ଭାବ ସକଳ ଉଦ୍ଦୀପିତ ନ ହୋଇ ଶିଳ୍ପ ଦ୍ୱାରା ଉଦ୍‌ବୋଧିତ ହୁଅଂନ୍ତି ସେତେବେଳେ ଏହାକୁ ରସ କୁହାଯାଏ । ଭଟ୍ଟଲୋଲ୍ଲଟ ପ୍ରଭୃତିଂକ ମତରେ ବିଭାବ, ଅନୁଭାବ ଓ ବ୍ୟଭିଚାରୀ ପରସ୍ପର-ପୋଷକତା କରି ସଂଯୁକ୍ତ ହେଲେ ରସର ଉତ୍ପତ୍ତି ହୁଏ । *

ଏଥିରୁ ଭୋଜରାଜ ଶୃଂଗାରକୁ ଏକମାତ୍ର ରସ ବୋଲି କହଂନ୍ତି । ମହାକବି ଭବଭୂତି କରୁଣକୁ ଏବଂ ଅଭିନବ ଗୁପ୍ତ ଶାଂନ୍ତ ରସକୁ ମୂଳ ରସ ବୋଲି କହଂନ୍ତି । ବିଶ୍ୱନାଥ କବିରାଜ ତାଂକ ପିତାମହ ନାରାୟଣ ପଂଡିତ କେବଳ ଅଦ୍‌ଭୁତକୁ ରସ ବୋଲି ମାନଂନ୍ତି ବୋଲି କାରିକାରେ କହିଛଂନ୍ତି । (ʻ) ଭଟ୍ଟନାୟକ କହଂନ୍ତି ଯେ ରସ ପ୍ରତୀତ ବି ହୁଏ ନାଇ, ଉତ୍ପନ୍ନ ବି ହୁଏ ନାଇ, ଅଭିବ୍ୟକ୍ତ ବି ହୁଏ ନାଇ । ନଟ ବା ଦର୍ଶକ ଚିତ୍ତରେ ନାଟକୀୟ ବ୍ୟାପାର ଯଦି ନିଜର ବୋଲି ମନେ ହୁଅଂନ୍ତା, ତାହା ହେଲେ କରୁଣ ରସ ସମ୍ବନ୍ଧରେ ସେମାନେ ଅତ୍ୟଂନ୍ତ ଦୁଃଖିତ ହୁଅଂନ୍ତେ । କିଂନ୍ତୁ ତାହା ହୁଏ ନାଇ । ସେଇପରି ସୀତାଂକ ଆଲୋଚନା କଲାବେଳେ କାହାର ନିଜ ପ୍ରଣୟିନୀ କଥା ମନେ ପଡ଼ିବା ସ୍ୱାଭାବିକ ନୁହେ କିଂବା ନିଜ ଜୀବନରେ କେହି ସମୁଦ୍ରଲଂଘନାଦି ପ୍ରତ୍ୟକ୍ଷ କରି ନାଇ । ତାଂକ ମତରେ ଅନୁଭବ ବା ସ୍ମୃତି ଛଡ଼ା

* କାବ୍ୟ-ବିଗ୍ରହ ୧ । 'ଦିଗଂନ୍ତ', ୧୯୬୭ ଫେବୃଆରି, ୧୨.ଂପାଦକୀୟ

ରସ ପ୍ରତୀତି ଘଟି ନ ପାରେ । ଏବଂ ଯେଉଁ କାରଣରୁ ରସପ୍ରତୀତି ଅସମ୍ଭବ, ରସର ଉତ୍ପତ୍ତି ହୁଏ କହିବା ମଧ୍ୟ ସେହି କାରଣରୁ ଅସଂଭବ । ରସର ଅଭିବ୍ୟକ୍ତି ହୁଏ ଏହା ମଧ୍ୟ କୁହାଯାଇ ନ ପାରେ, କାରଣ ଯାହା ଥାଏ ତାହା କେବଳ

ରସପ୍ରତୀତି ଅଭିବ୍ୟକ୍ତ ହୋଇପାରେ । ରସ ପୂର୍ବେ ନ ଥିଲା, ବିଭାବାଦି ଦ୍ୱାରା ପ୍ରକାଶ ପାଇଲା ଏହା ବି କୁହାଯାଇ ନ ପାରେ । ଭଟ୍ଟ ନାୟକ କହନ୍ତି କାବ୍ୟରେ ବ୍ୟକ୍ତିଗତ ବିଭାବାଦି ସାଧାରଣୀକାରେ ପ୍ରତିଭାତ ହୁଏ । ଭାବକତ୍ୱ ସ୍ୱରୂପ ଗୋଟିଏ ସ୍ୱତନ୍ତ୍ର ବ୍ୟାପାର ଦ୍ୱାରା ଯେଉଁ ନୂଆ ପ୍ରକାର ସୃଷ୍ଟି ବା ପ୍ରତିଫଳନ ହୁଏ, ସେଇ ପ୍ରତିଫଳନଗତ ରସ ଅନୁଭବ ବା ସ୍ମୃତି ପ୍ରଭୃତି ସାଧାରଣ ଚିତ୍ତ ବୃତ୍ତିଠାରୁ ସଂପୂର୍ଣ୍ଣ ପୃଥକ । ରସର ଭୋଜକତ୍ୱ ବା ଭୋଗବୃତ୍ତି ଦ୍ୱାରା 'ସତ୍ତ୍ୱୋଦ୍ରେକପ୍ରକାଶାନନ୍ଦମୟ' ସ୍ୱକୀୟ ସ୍ୱାତ୍ମିକ ଚିଦବୃତ୍ତି ସହିତ ବିଲକ୍ଷଣ ବିଶିଷ୍ଟ 'ପରବ୍ରହ୍ମାସ୍ୱାଦସହୋଦର' ରୂପେ ଅଲୌକିକ ଭାବରେ କାବ୍ୟ ନାଟକୀୟ ରସ ଆସ୍ୱାଦିତ ହୁଏ । ରସର ଉପସ୍ଥାପନ ମଧ୍ୟ କୌଣସି ଲୌକିକ ବସ୍ତୁ ଦ୍ୱାରା ସଂଭବ ନୁହେଁ । ରସର ଅନୁଭବ ମଧ୍ୟ କୌଣସି ଲୌକିକ ଉପାୟ ଦ୍ୱାରା ଘଟେ ନାହିଁ । ଭଟ୍ଟନାୟକଙ୍କ ମତରେ ରସର ଉପସ୍ଥାପନ ରସର ପ୍ରକାଶ ପାଇଁ ଦୁଇଟି ଅଲୌକିକ ବୃତ୍ତି ମାନିବାକୁ ହୁଏ । ଗୋଟିକୁ ସେ କହୁଛନ୍ତି ଭାବକତ୍ୱ, ଅନ୍ୟଟିକୁ ଭୋଜକତ୍ୱ ବା ଭୋଗୀକରଣ । (୧)

ଅଭିନବ ଗୁପ୍ତ ଭଟ୍ଟନାୟକଙ୍କ ମତ ସମର୍ଥନ କରନ୍ତି ନାହିଁ । ତାଙ୍କ ମତରେ ରସର ଭୋଗୀକରଣ କହିଲେ କଣ ବୁଝାଏ ତାହା ଭଟ୍ଟନାୟକଙ୍କ କଥାରୁ ସ୍ପଷ୍ଟ ନୁହେଁ । ରତି ଉତ୍ସାହ ପ୍ରଭୃତି ରସର ଆସ୍ୱାଦକୁ ରସର ଭୋଗୀକରଣ କୁହାଯାଇ ପାରେ । ଏଇ ରସାସ୍ୱାଦ ବିଭିନ୍ନ ପ୍ରକାରର । ସତ୍ତ୍ୱ, ରଜ, ତମ ଏଇ ତିନୋଟି ଗୁଣର ପ୍ରକାଶ ଦ୍ୱାରା ଯଦିଚ ରସାଦିର ସଂଭୋଗ ହୁଏ, ତଥାପି ଏ ତିନୋଟିର ମିଶ୍ରଣ ପ୍ରଣାଳୀ ଅସଂଖ୍ୟ ପ୍ରକାର ଘଟି ପାରେ । ଭଟ୍ଟନାୟକଙ୍କ ମତର ତାତ୍ପର୍ଯ୍ୟ ହେଉଛି : ଅଭିଧା ଶକ୍ତିଦ୍ୱାରା କାବ୍ୟର ଶବ୍ଦାର୍ଥ ବୋଧ ହେଲେ ଶବ୍ଦାର୍ଥଗତ ଦୋଷାଭାବ, ଗୁଣ ଓ ଅଳଂକାରାଦି ଦ୍ୱାରା ଏପରି ଏକ ନୂତନ ବ୍ୟାପାର ଉଦ୍ଭୂତ ହୁଏ ଯାହା ଫଳରେ କାବ୍ୟଗତ ନାୟକ ନାୟିକାଙ୍କ ମନୋଗତ ଭାବ ଏକ ଅଲୌକିକ ଉପାୟରେ ଚିତ୍ତ ମଧ୍ୟରେ ଉପସ୍ଥାପିତ ହୁଏ । ସେଇ ଉପସ୍ଥିତିରେ ନାୟକ ନାୟିକାଙ୍କର ବ୍ୟକ୍ତିଗତ ସ୍ୱଭାବ ତିରୋହିତ ହେଲେ ରତ୍ୟାଦି ସାଧାରଣ ଭାବରେ

(୧) କାବ୍ୟ-ବିଚାର ।

ସେମାନଙ୍କର ଶୋଷାଏ ଉପସ୍ଥିତ ଘଟେ । ଏଇ ଭାବକଳ୍ପ

ଭାବକଳ୍ପ

ବ୍ୟାପାର କୌଣସି ମନସ୍ତାତ୍ତ୍ୱିକ ଅବସ୍ଥା ନୁହେ । ଏହା ଏକ ସ୍ୱତନ୍ତ୍ର ବୃତ୍ତି ବୋଲି ଭଟ୍ଟନାୟକ ସ୍ୱୀକାର କରିଛନ୍ତି ଏବଂ ଏହାକୁ ଭୋଜକଳ୍ପ ଆଖ୍ୟା ଦେଇଛନ୍ତି ; (*Ibid*)

ପଦାର୍ଥ ହିଁ ରସ ରୂପେ ଅନୁଭୂତ ହୁଏ । ସାରଦାତନୟ କୁହନ୍ତି ଯେ ଯେଉଁପରି ଢେଉ ସବୁ ଉଠନ୍ତି ପୁଣି ସମୁଦ୍ର ମଧ୍ୟରେ ଲୀନ ହୋଇ ଯାଆନ୍ତି, କେତେବେଳେ ସେମାନେ ସମୁଦ୍ରର ମାହାତ୍ମ୍ୟକୁ ପ୍ରକାଶ କରନ୍ତି, କେତେବେଳେ ପୁଣି ତା ଭିତରେ ଲୀନ ହୋଇ ଥାଆନ୍ତି, ସେଇପରି ବ୍ୟଭିଚାରୀ ଭାବଗୁଡ଼ିକ କେତେବେଳେ ସ୍ୱତନ୍ତ୍ର ଭାବରେ ପ୍ରକାଶ ପାଇ ସ୍ଥାୟୀ ଭାବର ଆସ୍ୱାଦକୁ ସୁପୁଷ୍ଟ କରନ୍ତି, କେତେବେଳେ ପୁଣି ତା ଭିତରେ ଲୀନ ହୋଇ ଯାଆନ୍ତି । (କା ବ)

## ଔଚିତ୍ୟବାଦ

କ୍ଷେମେନ୍ଦ୍ର ତାଙ୍କର ଔଚିତ୍ୟବାଦ ଚର୍ଚ୍ଚାରେ ଔଚିତ୍ୟକୁ ରସର ପ୍ରାଣ ସ୍ୱରୂପ ବୋଲି କହିଛନ୍ତି । ସେ କହନ୍ତି, ଉଚିତ ସ୍ଥାନରେ ବିନ୍ୟାସ କଲେ ଅଳଙ୍କାର ଦେହକୁ ଅଳଙ୍କୃତ କରିପାରେ ଏବଂ ଉଚିତ ସ୍ଥାନରୁ ଚ୍ୟୁତ ହେଲେ

କ୍ଷେମେନ୍ଦ୍ର

ଗୁଣକୁ ମଧ୍ୟ ଗୁଣ କୁହା ଯାଏ ନାଇ । କଣ୍ଠରେ ମେଖଳା ପିନ୍ଧିଲେ କିମ୍ବା ନିତମ୍ବରେ ହାର ପରିଧାନ କଲେ ସେ ଅଳଙ୍କାରର ମର୍ଯ୍ୟାଦା ରହେ ନାଇ । ଶୌର୍ଯ୍ୟ ଗୁଣ ସତ କିନ୍ତୁ ଭୀତ ବା ପ୍ରଣତ ବ୍ୟକ୍ତ ପ୍ରତି ଶୌର୍ଯ୍ୟ ପ୍ରକାଶ ହାସ୍ୟକର । ଯାହା ସଙ୍ଗତ ଯାହା ଖାପେ ତାହାକୁଇ ଔଚିତ୍ୟ କହିବା । ଔଚିତ୍ୟ ଅର୍ଥ ଆନୁରୂପତା, ସାମଞ୍ଜସ୍ୟ । ରସର ଉପଯୁକ୍ତ ବାକ୍ୟ ବିନ୍ୟାସକୁ ଗୁଣୌଚିତ୍ୟ କୁହାଯାଏ । ଏହିପରି ରସାନୁକୂଳ ବା ଅର୍ଥାନୁକୂଳ ପଦକୁ ଅଳଙ୍କାରୌଚିତ୍ୟ କୁହାଯାଏ । ରସୌଚିତ୍ୟ ଦେଖାଇବାକୁ ଯାଇ କେଉଁ ରସ ସହିତ କେଉଁ ରସର ମିଳନ କିପରି ଅବସ୍ଥାରେ ସମ୍ଭବପର ହୁଏ ତାହା ଦେଖାଇବାକୁ ଚେଷ୍ଟା କରିଛନ୍ତି । କ୍ଷେମେନ୍ଦ୍ର ଏଇପରି କାରକୌଚିତ୍ୟ, ଲିଙ୍ଗୌଚିତ୍ୟ, ବଚନୌଚିତ୍ୟ, ବିଶେଷଣୌଚିତ୍ୟ, ଉପସର୍ଗୌଚିତ୍ୟ, କ୍ରିୟାପଦୌଚିତ୍ୟ, କାଳୌଚିତ୍ୟ, ସ୍ୱଭାବୌଚିତ୍ୟ, ସାରସଂଗ୍ରହୌଚିତ୍ୟ, ପ୍ରତିଭୌଚିତ୍ୟ, ଅବସ୍ଥୌଚିତ୍ୟ, ନାମୌଚିତ୍ୟ ପ୍ରଭୃତି ଉଲ୍ଲେଖ କରିଛନ୍ତି । କୁନ୍ତକଙ୍କ ମତରେ ଔଚିତ୍ୟ ହାନି ହେଲେ ରସର ଅପକର୍ଷ ଘଟେ ; କିନ୍ତୁ ଏହା ବୋଲି ଔଚିତ୍ୟକୁ ରସର ପ୍ରାଣ କୁହାଯାଇ ନ

ନାଂଦନିକ ବୋଧ

ପାରେ । କିଂତୁ ଏକଥା ସ୍ୱୀକାର୍ଯ୍ୟ ଯେ ଔଚିତ୍ୟବୋଧ ସୌଂଦର୍ଯ୍ୟ-ବୋଧର ଏକ ପ୍ରଧାନ ଅଂଗ । କୁନ୍ତକ ଔଚିତ୍ୟକୁ ବକ୍ରୋକ୍ତିର ଏକ ପ୍ରଧାନ ଅଂଗ ବୋଲି ସ୍ୱୀକାର କରଂତି । ତାଂକ ମତରେ ଔଚିତ୍ୟ ହାନି ହେଲେ ସୌନ୍ଦର୍ଯ୍ୟ ହାନି ଘଟି ପାରେ । କେଉଁ ରେଖା ସଂଗେ କେଉଁ ରେଖା ମିଳିତ ହେଲେ, କିଂ । କେଉଁ ବର୍ଣ୍ଣ ସଂଗେ କେଉଁ ବର୍ଣ୍ଣ ମିଳିତ ହେଲେ ତାହା ସୁଂଦର ବୋଲି ପ୍ରତୀତ ହୁଏ ତାହା ବାହ୍ୟ ସୂତ୍ର ଦ୍ୱାରା କୌଣସି ମତେ ଅନୁମାନ କରି ଯାଏ ନାଇ । ନିପୁଣ ଶିଳ୍ପୀ ନିକଟରେ ସେ ଔଚିତ୍ୟ ନିଜେ ହିଁ ପ୍ରତିଭାତ ହୁଏ ଏବଂ ସେ ଔଚିତ୍ୟର ହାନି ହେଲେ କୌଣସି ବସ୍ତୁହିଁ ସୁଂଦର ବୋଲି ପ୍ରତିଭାତ ହୁଏ ନାଇ । ବସ୍ତୁତ ରସୋତ୍ପତ୍ତି ସ୍ଥଳରେ ମଧ୍ୟ ବିଭାବାଦିର ଯଥାଯଥ ସନ୍ନିବେଶ ନ ହେଲେ ଶବ୍ଦରେ ଧାତୁରେ ଉପସ୍ଥାପିତ ହୋଇ ତାହାର ହୃଦୟ-ସଂବାଦ ଉତ୍ପନ୍ନ କରି ପାରେ ନାଇ । ଉପସ୍ଥାପିତ ବସ୍ତୁ ସହିତ ଇଦାନିଂତନ ବା ପ୍ରାକ୍ତନ ବାସନାର ଅନୁରୂପତା ନ ଥିଲେ ହୃଦୟ-ସଂବାଦ ଥାଇ ପାରେନା ଓ ରସର ଉତ୍ପନ୍ନ ମଧ୍ୟ ହୋଇପାରେନା । କ୍ଷେମେଂଦ୍ର ଔଚିତ୍ୟକୁ କୁଂତକଂକ ପରି ଏପରି ବ୍ୟାପକ ଭାବରେ ବ୍ୟାଖ୍ୟା କରି ନାହାଂତି ।

ଜଗନ୍ନାଥ ପଂଡିତ ତାଂକ ରସଗଂଗାଧର ଗ୍ରଂଥରେ କାବ୍ୟର ଲକ୍ଷଣ ପ୍ରସଂଗ ରେ ରମଣୀୟ ପ୍ରତିପାଦକ ଶବ୍ଦକୁ କାବ୍ୟ କହିଛଂତି । ରମଣୀୟତା ଅର୍ଥ - ଲୋକୋତ୍ତରାହ୍ଲାଦଜନକ ଜ୍ଞାନଗୋଚରତା । ଲୋକୋତ୍ତର ଶବ୍ଦର ବ୍ୟାଖ୍ୟା କରିବାକୁ ଯାଇ ଜଗନ୍ନାଥ କହିଛଂତି ଯେଉଁ ଜାତୀୟ ଆହ୍ଲାଦ ମଧ୍ୟରେ ଗୋଟାଏ ବିଶେଷ ଚମତ୍କାରିତ୍ୱ ଥାଏ ଯାହା କେବଳ ମାତ୍ର ସହୃଦୟର ଅନୁଭବ ଦ୍ୱାରା ଅନୁଭୂତ ହୁଏ ଏବଂ ଯାହାକୁ ଅପର ସମସ୍ତ ପ୍ରକାର ଅହ୍ଲାଦ ଠାରୁ ସ୍ୱତଂତ୍ର ବୋଲି ମନେ କରାଯାଏ । ତେଣୁ ଏଇ ଚମତ୍କାରିତ୍ୱକୁ ସେ ଗୋଟିଏ ସ୍ୱତଂତ୍ର ଜାତି କହିଛଂତି, ସେ ପୁଣି କହିଛଂତି, ସାଧାରଣ ଲୌକିକ ବାକ୍ୟ ଦ୍ୱାରା ଯେଉଁ ଅନଂଦ ହୁଏ ସେଥିରେ ଏଭଳି ଲୋକୋତ୍ତରତ୍ୱ ନାଇ, ତେଣୁ ସେଭଳି ବାକ୍ୟକୁ କାବ୍ୟ କୁହାଯାଏ ନାଇ । ଜଗନ୍ନାଥଂକ ମତରେ ଚମତ୍କାରତ୍ୱ ହିଁ କାବ୍ୟତ୍ୱ । ଚମତ୍କାର ଶବ୍ଦରେ ଜଗନ୍ନାଥ ଆହ୍ଲାଦ ବା ଆନଂଦ ମାତ୍ର ବୁଝଂତି ନାଇ, କିଂତୁ "କାବ୍ୟର ଆହ୍ଲାଦରେ ଯେ ଗୋଟିଏ ସୌନ୍ଦର୍ଯ୍ୟ ରୂପ ବାସନା ସହିତ ସ୍ଫୁଟ ଚିତ୍ତର ମିଳନ ଜନିତ ଏକ ଦୁର୍ବାଚ୍ୟ ଅନୁଭୂତି ଅଛି ତାହାକୁହିଁ ସେ ଚମତ୍କାର ଶବ୍ଦ ଦ୍ୱାରା ଲକ୍ଷିତ କରିବାକୁ ଚାହିଁଛଂତି ।" (କାବ୍ୟ-ବିଚାର, ପୃ '୫୯) ଜଗନ୍ନାଥଂକ ମତରେ କବି ପ୍ରତିଭାଇ କାବ୍ୟୋତ୍ପତ୍ତିର କାରଣ । ପ୍ରତିଭାର ବୈଶିଷ୍ଟ୍ୟ ହିଁ କାବ୍ୟର ବୈଶିଷ୍ଟ୍ୟ ।

# କାବ୍ୟରେ ଧ୍ୱନି

ଆନନ୍ଦବର୍ଦ୍ଧନ କାବ୍ୟର ଆତ୍ମା ଧ୍ୱନି ବୋଲି କହନ୍ତି । 'କାବ୍ୟସ୍ୟାତ୍ମା ଧ୍ୱନିରିତି ବୁଧୈର୍ଯଃ ସମାମ୍ନାତପୂର୍ବଂ ।' ଆନନ୍ଦବର୍ଦ୍ଧନଙ୍କ ମତରେ, ଯାହା କିଛି କାବ୍ୟର ଶୋଭାକାରୀ ତାହାକୁ ଯେଉଁ ନାମ ଦିଆ ଯାଉ ନା କାହିଁକି ତାହା ଅଳଂକାର ମଧ୍ୟରେ ପଡ଼ିବ । ଏହି ଅଳଂକାରର ଅନେକ ପ୍ରକାର ଶ୍ରେଣୀ ବିଭାଗ ଆଳଂକାରିକମାନେ କରିଛନ୍ତି । ଶ୍ରେଣୀ ବିଭାଗରେ ବିଚକ୍ଷଣତା ଥିଲେ ମଧ୍ୟ ନୂତନତ୍ୱ ନାହିଁ । ସେହିପରି ଗୁଣ, ଅଳଂକାର ଛଡ଼ା କାବ୍ୟ-ଶୋଭାର ନିମିତ୍ତଭୂତ ଯେ କୌଣସି ବୈଚିତ୍ର୍ୟର ଆଲୋଚନା କରାଯାଉ ନା କାହିଁକି ତାହା ଗୁଣାଳଂକାର ବୈଶିଷ୍ଟ୍ୟ ମାତ୍ର ହେବ । ଶବ୍ଦାର୍ଥ କାବ୍ୟର ଶରୀର । ଏମାନେ କେହି ଧ୍ୱନି ନୁହନ୍ତି । ଶବ୍ଦାର୍ଥର ଚାରୁତାକୁ ମଧ୍ୟ ଧ୍ୱନି କୁହାଯାଇ ନ ପାରେ । କାରଣ ଅର୍ଥର ଚାରୁତା ଅଳଂକାର ମଧ୍ୟରେ ପଡ଼େ । ଅନୁପ୍ରାସ ଯମକ ଆଦି ବିଭିନ୍ନ ପ୍ରକାର ବୃତ୍ତି ବା ରୀତିରେ ସୃଷ୍ଟି, ବୃତ୍ତି ଓ ରୀତି ଗୁଣାଳଂକାର ଛଡ଼ା ଅନ୍ୟ କିଛି ନୁହନ୍ତି । ତେଣୁ ଏହା ଧ୍ୱନି ନୁହେଁ ।

ଏହି ଧ୍ୱନିର ସ୍ୱରୂପ ନିରୂପଣ କରିବାକୁ ଯାଇ ଆନନ୍ଦବର୍ଦ୍ଧନ କହନ୍ତି : "ତସ୍ୟ ହି ଧ୍ୱନେଃ ସ୍ୱରୂପମ୍ —ସକଳସତ୍କବିକାବ୍ୟୋପନିଷଦ୍‌ଭୂତମ୍ ଅତିରମଣୀୟମ୍ ଅଣୀୟସୀଭିଃ ଚିରନ୍ତନକାବ୍ୟଲକ୍ଷଣାଭିଧାୟିନାଂ ବୁଦ୍ଧିଭିରନୁନ୍ମୀଲିତପୂର୍ବମ୍ ।' ଅଭିନବ ତାଂକ ଟୀକାରେ କହିଛନ୍ତି —"କେବଳ ମାତ୍ର ସହୃଦୟ ବ୍ୟକ୍ତିମାନେହିଁ ସମସ୍ତ ପ୍ରକାର ଧ୍ୱନିର ସାରଭୂତ ରସଧ୍ୱନିର ଆସ୍ୱାଦ କରି ପାରନ୍ତି । ଯାହା ହୃଦୟରେ ଏଭଳି ସ୍ୱାଭାବିକ ଶକ୍ତି ଅଛି ଯେ ସେ ସତ୍‌କାବ୍ୟବର୍ଣ୍ଣିତ କାବ୍ୟାର୍ଥ ଆସ୍ୱାଦନ କରି ତନ୍ମୟ ହୋଇ ପାରନ୍ତି, ତାହାଂକୁହିଁ ସହୃଦୟ କୁହାଯାଏ । (ଏକ୍ନ)

ଧ୍ୱନିକାରଙ୍କ ମତରେ କାବ୍ୟର ଅର୍ଥ ଦୁଇ ପ୍ରକାର—ଗୋଟିଏ ବାଚ୍ୟ, ଅନ୍ୟଟି ପ୍ରତୀୟମାନ । ବାଚ୍ୟ ଅର୍ଥ ଉପମାଦି ବହୁବିଧ ଉପାୟରେ ପ୍ରକାଶିତ ହୁଏ । କିନ୍ତୁ ମହାକବିମାନଙ୍କ ବାକ୍ୟରେ ରମଣୀୟ ଲାବଣ୍ୟ ଭଳି ଆଉ ଗୋଟିଏ ପ୍ରତୀୟମାନ ଅର୍ଥ ଥାଏ, ଯାହା କାବ୍ୟର ଶବ୍ଦ ଓ ସାଧାରଣ ଅର୍ଥଠାରୁ, ଗୁଣାଳଂକାର ପ୍ରଭୃତିଠାରୁ ସମ୍ପୂର୍ଣ୍ଣ ବିଭିନ୍ନ ।

"ପ୍ରତୀୟମାନଂ ପୁନରନ୍ୟଦେବ ବସ୍ତ୍ୱସ୍ତି ବାଣୀଷୁ ମହାକବୀନାମ୍
ଯତ୍ତତ୍ ପ୍ରସିଦ୍ଧାବୟବାତିରିକ୍ତଂ ବିଭାତି ଲାବଣ୍ୟମିବାଙ୍ଗନାସୁ ।"

ଶରୀରର ଲାବଣ୍ୟ ଯେପରି ଶରୀରର ଅବୟବଠାରୁ ସମ୍ପୂର୍ଣ୍ଣ ବିଭିନ୍ନ, ଅଥଚ ତାହା ଅବୟବ ଦ୍ୱାରାହିଁ ପ୍ରକାଶିତ ହୁଏ ଏବଂ କୌଣସି ଅଳଂକାରାଦିର ଅପେକ୍ଷା ରଖେ

ନାଇ, ଧ୍ୱନି ବି ସେଇପରି କାବ୍ୟଶରୀରର ମଧ୍ୟ ଦେଇ ଅଭିବ୍ୟକ୍ତ ହୁଏ—ଯଦିଚ ତାହା କାବ୍ୟଶରୀରଠାରୁ ଏକାଂତ ସ୍ୱତଂତ୍ର ।" ଏଇ ଧ୍ୱନିଗମ୍ୟ ଅର୍ଥ ତିନି ପ୍ରକାର—କେବଳ ବସ୍ତୁ, ଅଳଂକାର ଏବଂ ରସାଦି –ଯାହା ବାଚ୍ୟ ଅର୍ଥ ଦ୍ୱାରା ଆକ୍ଷିପ୍ତ ହୁଏ, କିଂତୁ ବାଚ୍ୟ ଅର୍ଥଠାରୁ ସଂପୂର୍ଣ୍ଣ ଭିନ୍ନ । ଅଭିନବ କହଂତି, ଏଇ ତିନି ପ୍ରକାର ଧ୍ୱନି ମଧ୍ୟରେ ରସଧ୍ୱନିହିଁ ସର୍ବଶ୍ରେଷ୍ଠ । ଅଭିନବଂକ ମତରେ ରସହିଁ ଯଥାର୍ଥରେ କାବ୍ୟାର୍ଥ । (ଏକ୍ଷନ୍ ଏବଂ କାବ୍ୟ-ନିର୍ଣ୍ଣୟ)

ବାଚ୍ୟାର୍ଥଠାରୁ ଅନେକ ସମୟରେ ସଂପୂର୍ଣ୍ଣ ବିଭିନ୍ନ ଭାବରେ ପ୍ରତୀୟମାନ ଅର୍ଥଟି ପ୍ରକାଶ ପାଇପାରେ । (ଯେପରି ଗୃହକର୍ତ୍ତା ପଥିକକୁ ତା ଶାଶୂ ଯେଉଁଠି ଶୋଇଛଂତି, ସେଠି ପାଦ ନ ଦେବାକୁ ନିଷେଧ ଛଳରେ ପ୍ରୋଷିତଭର୍ତ୍ତୃକା ପତ୍ନୀ ପରୋକ୍ଷ ଭାବରେ ନିମଂତ୍ରଣ କରିଥାଏ । ) ବସ୍ତୁବ୍ୟଂଜନା ପରି ଅଳଂକାର ବ୍ୟଂଜନା

**କାବ୍ୟାର୍ଥ**

ମଧ୍ୟ ବହୁପ୍ରକାର । ବସ୍ତୁ ଓ ଅଳଂକାର ବାଚ୍ୟାର୍ଥ ଦ୍ୱାରା ପ୍ରକାଶିତ ହୋଇଥାଂତି । କିଂତୁ ରସ, ଭାବ ଓ ରସାଭାସ ଓ ଭାବାଭାସ କେବେ ବାଚ୍ୟାର୍ଥ ଦ୍ୱାରା ପ୍ରକାଶିତ ହୁଅଂତି ନାଇ, ସେମାନେ କେବଳ ଅସ୍ୱାଦ୍ୟଭାବରେହିଁ ପ୍ରତିଭାତ ହୁଅଂତି, ତେଣୁ କାର୍ଯ୍ୟତ ରସଭାବାଦି ଧ୍ୱନି ଛଡ଼ା ଅନ୍ୟ କୌଣସି ବ୍ୟାପାର ଦ୍ୱାରା କଦାପି ପ୍ରତୀତ ହୁଅଂତି ନାଇ, କାରଣ ଏମାନେ କୌଣସି ଶବ୍ଦ ବା ବାକ୍ୟର ଅର୍ଥ ନୁହଂତି । 'ଦେଶ, କାଳ, ଆଶ୍ରୟାଦି ସହିତ ସାମଂଜସ୍ୟ ମଧ୍ୟରେ ଓ ଔଚିତ୍ୟ ମଧ୍ୟରେ ଚିତ୍ତବୃତ୍ତିରେ ଯେତେବେଳେ ସ୍ଥାୟୀଭାବ ପ୍ରଧାନ ରୂପରେ ଉଦ୍ରିକ୍ତ ହୁଏ, ସେତେବେଳେ ତାହାକୁ କୁହାଯାଏ ରସ ଏବଂ ବ୍ୟଭିଚାରୀ ଭାବ ପ୍ରଧାନରୂପେ ଉଦ୍ରିକ୍ତ ହେଲେ ତାକୁ କୁହାଯାଏ ଭାବ । ଦେଶକାଳାଶ୍ରୟାଦିର ବିରୁଦ୍ଧରୂପରେ ସ୍ଥାୟିଭାବ ଉଦ୍ରିକ୍ତ ହେଲେ ତାକୁ କୁହାଯାଏ ରସାଭାସ ।'

'ଅଥ ସହିତ ଯୁକ୍ତ ହୋଇ ଶବ୍ଦର ବ୍ୟାପାର ଦ୍ୱାରାହିଁ ଧ୍ୱନି ନିଷ୍ପନ୍ନ ହୋଇଥାଏ । ରସାଦି ବସ୍ତୁ କେବେ କୌଣସି ଶବ୍ଦର ଅର୍ଥ ହୋଇ ପାରେନା ।' "ବ୍ରାହ୍ମଣ, ତମର ପୁଅଟିଏ ହୋଇଚି" କହିଲେ ବ୍ରାହ୍ମଣର ଯେ ଆନଂଦ ହୋଇଚି ତାହା ଅନୁମାନ କରାଯାଏ । ତେଣୁ ଅଭିନବ କହିଛଂତି, ରସହିଁ ବାସ୍ତବିକ କାବ୍ୟର **ଆତ୍ମା** । ବସ୍ତୁ ଓ ଅଳଂକାରଧ୍ୱନି ଶେଷରେ ଏଇ ରସରେହିଁ ପର୍ଯ୍ୟବସିତ ହୁଅଂତି । ସେଥିପାଇଁ ସେମାନଂକୁ କାବ୍ୟାର୍ଥଠାରୁ ଉତ୍କୃଷ୍ଟ କୁହାଯାଏ ଏବଂ ଏଇ ଅର୍ଥରେ ଧ୍ୱନିହିଁ କାବ୍ୟର ଆତ୍ମା ଏହା କୁହାଯାଇପାରେ । (କାବ୍ୟ-ବିଚାର ଓ 'କାବ୍ୟ ନିର୍ଣ୍ଣୟ')

ଏଠାରେ ଏ ସଂପର୍କରେ ଅଧିକ ଆଲୋଚନା ନିଷ୍ପ୍ରୟୋଜନ ।

# ସ୍ଫୋଟବାଦ

ସ୍ଫୋଟ ସମ୍ବନ୍ଧରେ ପତଂଜଳିଂକ ମହାଭାଷ୍ୟରେ ପଶ୍ପଶା ପ୍ରକରଣରେ ଇଂଗିତ ରହିଛି ।'ତପରସ୍ତତ୍କାଲସ୍ୟ' ସୂତ୍ରର ବ୍ୟାଖ୍ୟା ଅବସରରେ ଏହାର ଉଲ୍ଲେଖ ମିଳେ । ଭର୍ତ୍ତୃହରିଂକ ବାକ୍ୟପଦୀୟରେ ଏ ବିଷୟରେ ବିଶଦ ଆଲୋଚନା ଦେଖିବାକୁ ମିଳେ । ଭର୍ତ୍ତୃହରିଂକ ମତରେ ଶବ୍ଦ ତିନି ପ୍ରକାର-ବୈଖରୀ, ମଧ୍ୟମା ଓ ପଶ୍ୟଂତୀ । ଯେଉଁ ସବୁ ଶବ୍ଦ କାନରେ ଶୁଣାଯାଏ ତାହାକୁ ବୈଖରୀ କୁହାଯାଏ । ଅଂତର ମଧ୍ୟରେ—'କ୍ରମାବଗାହିରୂପେ ବୁଦ୍ଧିବ୍ୟାପାର ବା ଚିଂତାବ୍ୟାପାର ରୂପେ ପ୍ରାଣବୃତ୍ତି ସହିତ ଅନୁଚ୍ଚାରିତ ଓ ଅଶ୍ରୁତ, ଜ୍ଞାନ ବା ବୁଦ୍ଧିର ଆକାରରୂପେ ଉଚ୍ଚାରିତ ଶବ୍ଦର ପ୍ରଯୋଜକ ରୂପେ ଯାହା ପ୍ରକାଶ ପାଏ ତାହାକୁ ମଧ୍ୟମା ଶବ୍ଦର ସ୍ୱାଭିଖ୍ୟା କୁହାଯାଏ । ଯଦିଚ ଏଇ ବୁଦ୍ଧିର ଧାରା ମଧ୍ୟରେ କ୍ରମ ବା ପୌର୍ବାପର୍ଯ୍ୟର ଆଭାସ ଥାଏ ଏବଂ ସେଇ ହିସାବରେ ତାହା କ୍ରମଭାବୀ ଶବ୍ଦଧ୍ୱନିକୁ ଉତ୍ଥାପିତ କରିପାରେ, ତଥାପି ବୁଦ୍ଧିର ସ୍ୱରୂପରେ ଅବସ୍ଥିତ ବୋଲି ଏହା । ମଧ୍ୟରେ ଯଥାର୍ଥଭାବରେ କୌଣସି କ୍ରମର ପୌର୍ବାପର୍ଯ୍ୟ ନାଇ । ଏହାର ଶକ୍ତି ଦ୍ୱାରା ପ୍ରକାଶିତ ଓ ଉଚ୍ଚାରିତ ଶବ୍ଦର ପୌର୍ବାପର୍ଯ୍ୟ ସୃଷ୍ଟି ହୋଇଥାଏ ।' ଚିତ୍ତ ମଧ୍ୟରେ ଯେଉଁ ଅର୍ଥର ପ୍ରକାଶ ହୁଏ ତାହା ଏକ ଅଖଂଡ ଜ୍ଞାନାତ୍ମକ ପ୍ରକାଶ— କିଂତୁ ତାହା ମଧ୍ୟରେ ପୌର୍ବାପର୍ଯ୍ୟର କ୍ରମଧାରା ନାଇ । କିଂତୁ ତାହା ନିଜକୁ ଶବ୍ଦାକାରରେ ପ୍ରକାଶ କରିବା ସମୟରେ ପୌର୍ବାପର୍ଯ୍ୟ ଧାରାକୁ ଅବଲଂବନ କରି ସ୍ୱାନୁରୂପ, ସ୍ୱାଭିବ୍ୟଂଜକ ଶବ୍ଦଧାରା ସୃଷ୍ଟି କରିପାରେ । ଏଇ ଶକ୍ତି ତାହା ମଧ୍ୟରେ ଅଂତର୍ନିହିତ ରହିଛି । ପଶ୍ୟଂତୀ ଅବସ୍ଥା ଏହା ଅପେକ୍ଷା ମଧ୍ୟ ସୂକ୍ଷ୍ମ । ଏଇ ଅବସ୍ଥାରେ ଜ୍ଞାନ ଓ ଜ୍ଞେୟ ଏକୀଭୂତ ହୋଇଥାଏ । (କା-ବି) ଏଥିପାଇଁ ଏହାର କୌଣସି ପରିଚ୍ଛିନ୍ନ ଆକାର ନାଇ, ଅଥଚ ପରିଚ୍ଛିନ୍ନ ଅର୍ଥକୁ ସଂଶ୍ଳିଷ୍ଟ ବା ସଂଯୁକ୍ତ ଭାବରେ ପ୍ରକାଶ କରିବାର ସାମର୍ଥ୍ୟ ତାହା ମଧ୍ୟରେ ଅଛି । ସମସ୍ତ ଅର୍ଥର ପ୍ରକାଶ ସତେ ଯେପରି ଯୁଗପତ୍ ଏଇ ଅବସ୍ଥା ମଧ୍ୟରେ ପ୍ରଶାଂତ ଭାବରେ ରହିଛି । ସୃଷ୍ଟିପ୍ରକ୍ରିୟାର ପ୍ରାକ୍କାଳରେ ବୀଜ ମଧ୍ୟରେ ସମସ୍ତ ବୃକ୍ଷୋତ୍ପାଦନର ଶକ୍ତି ଯେପରି ବିବିଧ ଭଂଗୀରେ ଫୁଟି ଉଠିବା ପାଇଁ ପ୍ରସ୍ତୁତ ଥାଏ, ଅଥଚ ନିଜକୁ ବିଭକ୍ତ କରି ପ୍ରକାଶ କରେ ନାଇ, ଭୀଷଣ ଝଡ଼ ପୂର୍ବରୁ ପ୍ରକୃତିର ଅଂତଃସ୍ତବ୍ଧତା ମଧ୍ୟରେ ଯେପରି ତାର ଶକ୍ତିପୁଂଜ ନିଜ ମଧ୍ୟରେ ଲୀନ ହୋଇ ଥାଏ, ଚିତ୍ତର ମଧ୍ୟ ସେଇପରି ଏକ ଅବସ୍ଥା ଅଛି ଯେଉଁ ଅବସ୍ଥାରେ ଅର୍ଥାକାରର ଉଦ୍‌ବୋଧ ହୋଇ ନାଇ, ଅଥଚ ଚିତ୍ତର ସ୍ୱାଭିନ୍ନ ସ୍ପଂଦନ ମଧ୍ୟରେ ତାହା ବିଧୃତ ହୋଇ ରହିଅଛି—ଏଇ ଅବସ୍ଥାକୁ କୁହାଯାଏ ପଶ୍ୟଂତୀ ।

ପ୍ରକୃତିପ୍ରତ୍ୟୟ ଭେଦରେ ଶବ୍ଦର ଯେଉଁ ସବୁ ଶକ୍ତି କଳ୍ପନା କରାଯାଇଛି ବସ୍ତୁତ ତାର କୌଣସି ସତ୍ତା ନାଇ । ମହାଶକ୍ତି ମଧ୍ୟରୁ ବାହାରିଛି ବୋଲି ସମସ୍ତ ଶବ୍ଦରହିଁ ବିଶିଷ୍ଟ ଶକ୍ତି ଅଛି । ସେଥିପାଇଁ ରୂପ-ରସ-ଗନ୍ଧ-ସ୍ପର୍ଶାଦିର ଯେପରି ଦୃଷ୍ଟ ଓ ଅଦୃଷ୍ଟ ଫଳ ଅଛି, ଶବ୍ଦର ସେଇପରି ଦୃଷ୍ଟ ଓ ଅଦୃଷ୍ଟ ଫଳ ଅଛି । ଶବ୍ଦାତ୍ମକ ମନ୍ତ୍ରାଦିରେ ଉଚ୍ଚାରଣ ଦ୍ୱାରା ବିଷାପନୟନ ପ୍ରଭୃତି ଦୃଷ୍ଟ ଫଳ ଦେଖାଯାଏ । ସେଇପରି ବେଦାତ୍ମକ ଅକ୍ଷରମାଳାର ଯଥାବିଧି ଉଚ୍ଚାରଣରେ ସ୍ୱର୍ଗାଦି ଅଦୃଷ୍ଟ ଫଳ ଘଟିଥାଏ··· ।' (ଏକ୍ସ) (କାବ୍ୟ ନିର୍ଣୟ)

## ରୀତି-ଯୁଗର ଆମ୍ବିକ

ସୂର୍ଯବଂଶୀ ଯୁଗ ପରେ ପରେ ରାଧାକୃଷ୍ଣ ପ୍ରେମଲୀଳା ଧୀରେ ଧୀରେ ଓଡ଼ିଆ କାବ୍ୟଜଗତରେ ପ୍ରବେଶ କରେ । ମୁସଲମାନ ଯୁଗରେହିଁ ଏହା ଓଡ଼ିଆ କାବ୍ୟ ସାହିତ୍ୟରେ ପ୍ରାଧାନ୍ୟ ଲାଭ କରେ । ଠିକ୍ ଜୟଦେବଙ୍କ ସମୟରେ ଯେଉଁ କାରଣରୁ ଏହା ଗୌଡ଼-ବଙ୍ଗରେ ଇସଲାମୀ ପ୍ରଭାବ ସମୟରେ ପ୍ରଧାନ ଆମ୍ବିକରୂପେ ଆତ୍ମପ୍ରକାଶ କରିଥିଲା, ଓଡ଼ିଶାରେ ଯେ ନିଶ୍ଚୟ କେତେକ ଅନୁରୂପ କାରଣ ଥିଲା ଏଥିରେ କିଛି ସଂଦେହ ନାଇ । ସାରଳା-ଯୁଗରେ ଜଗନ୍ନାଥ ଦାସ ଓ ବଳରାମ ଦାସ ରାଧାକୃଷ୍ଣ ତତ୍ତ୍ୱକୁ କେତେକ ଖଂଡକବିତାରେ ସ୍ଥାନ ଦେଇଥିଲେ ମଧ୍ୟ ସେମାନଂକର ସଂଭୋଗ ବର୍ଣନାକୁ ଯଥାସଂଭବ ବାଦ ଦେଇଥିଲେ । ଦନାଇ ଦାସଂକ 'ଗୋପୀ ଭାଷା'ରେ ରାଧାକୃଷ୍ଣ ପ୍ରେମଲୀଳା ଥିଲେ ମଧ୍ୟ ତହିଁର କାରୁଣ୍ୟ ଦିଗହିଁ ଅଧିକ ଚିତ୍ତା-କର୍ଷକ ମନେହୁଏ । ଦେବଦୁର୍ଲଭ ଦାସଂକ 'ରହସ୍ୟ ମଂଜରୀ'ରେ ମଧ୍ୟ ରାଧାକୃଷ୍ଣ ପ୍ରେମଲୀଳାର ମାହାତ୍ମ୍ୟ ବର୍ଣିତ ହୋଇଛି । କିଂତୁ ରାଧାକୃଷ୍ଣଂକ ରତି-କ୍ରୀଡ଼ା ପ୍ରାଧାନ୍ୟ ପାଇ ନାହିଁ ।

### ଦୀନକୃଷ୍ଣ ଦାସ

ଦୀନକୃଷ୍ଣ ଦାସହିଁ ସର୍ବପ୍ରଥମେ ପ୍ରାକ୍-ଭଂଜ ଯୁଗରେ 'ଗୀତଗୋବିଂଦ'ର ପ୍ରଣୟ-ମୈଥୁନ-ଲୀଳାକୁ ଓଡ଼ିଆ କାବ୍ୟ ବିବକ୍ଷିତରେ ମଂଚପ୍ରବେଶ କରାଂଛି । ସେ ଯେପରି ଉଲଗ୍ନ ଓ ଅଶ୍ଲୀଳ ଶବ୍ଦରେ ଗୋପୀମାନଂକ ସହ ଶ୍ରୀକୃଷ୍ଣଂକର ପ୍ରଣୟ-ମୈଥୁନ ବର୍ଣନା କରିଛଂତି ତାହା ଅନେକ ସମୟରେ ଦେହ-ତାପରେ ଗୀତଗୋବିଂଦକୁ ମଧ୍ୟ ବଳି ଯାଇଛି । କେତୋଟି ଦୃଷ୍ଟାଂତ 'ରସକଲ୍ଲୋଳ'ରୁ ଦିଆ

କାବ୍ୟ-ବିବକ୍ଷିତ

ଯାଉଛୁ— (ଶୀତବଦନରେ କୃଷ୍ଣ ଓ ଗୋପୀଙ୍କ ମଧ୍ୟରେ ଅଙ୍କା ଋଷିହାସ) "(କୃଷ୍ଣ) କେଉଁ ଗୋପୀ ପାଶେ ହୋଇ ପ୍ରବେଶ, କଉତୁକେ କରନ୍ତି ପରିହାସ/କୋଳେ ରଖିଅଛୁ ତୁ ଉଷୁମକୁ, କହୁଅଛୁ ଯାଇ ମୁଁ ହିମକୁ/କାହିଁଗଲୁ ଯେ ବୋଲି ଲୋଡୁଅଛୁ, କୁଚକନ୍ଦରେ ଆସି ଏ ପଶିଛି ।"

(ଗୋପୀଙ୍କ ଉତ୍ତର)

"କମ୍ପୁଅଛୁ ଯେବେ ଶୀତ ବଳରେ, କମ୍ପା ନ ପଶ ଆସି ମୋ କୋଳରେ

(୧୧ଶଛାନ୍ଦ)

ତା'ପରେ କୃଷ୍ଣଙ୍କୁ ଆକୃଷ୍ଟ କରିବା ପାଇଁ ବିଭିନ୍ନ ଗୋପୀ ତାଙ୍କ ଆଗରେ ଯେପରି ଅଙ୍ଗଭଙ୍ଗି କରୁଛନ୍ତି ତାହା ଝୁନ୍ନତ ରୁଚିର ପରିଚାୟକ ନୁହେ ।

"କେଉଁ ଗୋପୀ ଦେଖି ଧୈର୍ଯ୍ୟ ନରଖି କରେ ମଧୁର ଅଙ୍ଗଭଙ୍ଗ
କର୍ଣ୍ଣକଣ୍ଡୁ ଛଳେ କର ଟେକି ଦେଲେ ବଶ କରଇ ଶିଖିରଙ୍ଗ ।
କେଉ ଯୁବତୀ, କରଇ କରିବର ଗତି,
କୁଚରୁ ଅଂଚଳ ଖସାଇ ଚଂଚଳ କରଇ ଯଦୁପତି ମତି । ୬ । ୨୮ X X
କେଉଁ ଗୋପିକା ଜାନୁ କଦଳୀବୃକ୍ଷରୂପୀ
କନକ କଳସ କମନୀୟ ବେଶ କୁଚ ମଙ୍ଗଳକୁମ୍ଭ ସ୍ଥାପି ।
କେଉଁ ଗୋପିକା କୁଚ ଶ୍ରୀଫଳ ଘେନ କର
କଲି ନମସ୍କାର ଆହେ ମୋର ପ୍ରାଣନାଥ ତୁମେ ହେ ବେଣୁଧାରୀ । ୬।୩୧

ଦୀନକୃଷ୍ଣ ଦାସ ମଧ୍ୟପ୍ରାନ୍ତ ଯମକ (ଯଥା :—କମଳ ସମ୍ଭବ ଭବ ସୁର-ନାୟକ, କଉଶପ ଆଦି ଲୋକ ନାହାର ଲୋକ ର. କ. ୧ମ ଛା ) ପ୍ରାନ୍ତଯମକ (ଯଥା କମନୀୟ କୃଷ୍ଣ କଥା ପ୍ରସଙ୍ଗ କାଳସର୍ପକୁ ଯେ କଥାପ୍ରସଙ୍ଗ—ର: କ. ୩ଛା), ଶୃଙ୍ଖଳା(କରୁଣା କଟାକ୍ଷ କଟାକ୍ଷେ ଅଲକ୍ଷ୍ୟ ଘେନାଘେନ ଭାବ ଦେଖାଇ—୬ଷ୍ଠ ଛା), ବକ୍ରୋକ୍ତି ଆଦି 'ରସକଲ୍ଲୋଳ' ଏବଂ ଅନ୍ୟାନ୍ୟ ଗ୍ରନ୍ଥରେ ନିପୁଣ ଭାବରେ ବ୍ୟବହାର କରିଛନ୍ତି । ଦୀନକୃଷ୍ଣଙ୍କର ରସକଲ୍ଲୋଳ ଗ୍ରନ୍ଥଟି କ-ଅଦ୍ୟାନୁପ୍ରାସରେ ରଚିତ ।

'ରସକଲ୍ଲୋଳ' ଛଡ଼ା ଦୀନକୃଷ୍ଣଙ୍କର 'କମଳାକାନ୍ତ ଚଉତିଶା' ଏବଂ 'ଦ୍ରୁତିଭ ଅବକାଶ' ଦୁଇଟି ଜନପ୍ରିୟ ରଚନା । କମଳାକାନ୍ତ ଚଉତିଶାର ଗୋଟିଏ ବହୁ-ଉଦ୍ଧୃତ ପଂକ୍ତି:—

"କମଳାକାନ୍ତବାହନଭକ୍ଷ୍ୟଧାରିନାରୀଯାନ
ତା ସୁତ ତା ରିପୁ ପୂର୍ଣ୍ଣ ମୁଖ ମଳିନ ।
କନକପୁର ଯାହାଂ ତା-ରିପୁ ଦୂତ ଭଣ୍ଡାର
କରିଛୁ ପାଣି ସଂଯୋଗ ରବି ସୁତଗଣ ।"

କିଂବା "ଘୃତଖେଚରୀ ଶପୁସୁତ ଘଟନ ମୁଖ ଘାପିତ
ଘୃମିତ ଦଶୁଚ ବନ-ସୁତଲୋଚନ ।
ଘାତକୀ କର-ଅଇର-ଶପୁ ଅଂଗେ ଯେହ୍ନେ ଘାର ।"

'ଆର୍ତ୍ତତ୍ରାଣ ଚଉତିଶା' କବିଂକର ସବୁଠାରୁ ଜନପ୍ରିୟ ଜଣାଣ । ଏହାର ପ୍ରତିଟି ଶବ୍ଦ ଯେଉଁପରି ମର୍ମସ୍ପର୍ଶୀ ସେଇପରି କାରୁଣ୍ୟ-ବ୍ୟଂଜକ ।

'କୃପାସିଂଧୁ ବଦନ କରି ଅବଲୋକନ
କେଉଁ କରମହୀନ ଜନ
କାକୁସ୍ଥତର ହୋଇ କର ଯୋଡ଼ି ଜଣାଇ
ଗରୁଡ଼ ସ୍ତଂଭ ସନ୍ନିଧାନ ହେ । ମହାପ୍ରଭୁ । ।"

କବିଂକ ସମକାଳୀନ ସମାଜରେ ମଧ୍ୟବିତ୍ତ ବୁଦ୍ଧିଜୀବୀ ଏବଂ ଜଣେ ସଚେତନ କବି କିପରି ବିଡ଼ଂବନା ଭୋଗୁଥିଲେ ତାହାର ଉଲ୍ଲେଖ କବି ନିଜ "ରସକଲ୍ଲୋଳ" ଗ୍ରଂଥରେ କରିଛଂତି । ଯଥା :—

"କବି ଯା କରେ ମୂର୍ଖକୁ ସ୍ତୁତି ଏଥିରୁ ବଳି ନାହିଁ ବିପତ୍ତି ।
ଏଥିକି ପ୍ରତି ସ୍ତୁତିରେ କାତି ମାରିବା ଭଲ ଯେ ।" ୧୬ଶ ସ୍ତୁ ।

ପୁଣି, କୃଷ୍ଣେ ଆଶ୍ରା କରି ସୁବିଦ୍ୟା ଆଚରି ପାଷାଂଡକୁ ଯାହା ସ୍ତୁତି
କୃଷ୍ଣଦାସ କହେ, କିଛି ଭଲ ନୋହେ କେବଳ ସ୍ତୁତିକି କତି । ୨୪ ସ୍ତୁ ।

'ଦାଢ଼୍ୟତାଭକ୍ତି'ରେ ଶ୍ରୀରାମ ଦାସ ଲେଖିଛଂତି ଯେ ଦୀନକୃଷ୍ଣ ଦାସଂକ ପୁରୀ-ଖୋରଧା

କବିର ବିଡ଼ଂବନା — ରହଣି ବେଳେ ଦିନେ ରାଜା ଦିବ୍ୟସିଂହଦେବ ତାଂକୁ ଡକାଇ କହିଲେ ଯେ ସେ ରାଜାଂକ ନାମରେ ଗୀତ ଭଣିତି କଲେ ଅନେକ ଧନରତ୍ନ ପାଇବେ । କିଂତୁ ଦୀନକୃଷ୍ଣ ଦାସ ଏଥିରେ ରାଜି ନହେବାରୁ ରାଜା କ୍ରୁଦ୍ଧ ହୋଇ ତାଂକୁ ବଂଦୀଶାଳାରେ ରଖିଲେ । ମାତ୍ର ଜଗନ୍ନାଥଂକ ଆଦେଶରେ ତାଂକ ହାତବେଡ଼ି ଗୋଡ଼ବେଡ଼ି ଖୋଲିଗଲା । ରାଜା ଭୟ ପାଇ ତାଂକୁ ଛାଡ଼ିଦେଲେ ।*

(ରାଜା କହିଲେ)—"ମୋ ନାମ ଭଣିଲେ ଅବଶ୍ୟ, ଅନେକ ଦେବୀ ଗ୍ରାମ ଦେଶ ।
ନୋହିଲେ ମରିବୁ ଅବଶ୍ୟ, ଛାଡ଼ ତୋ ଜୀବନର ଆଶ ।"

(ଦୀନକୃଷ୍ଣ)—"ବୋଇଲେ ଶୁଣ ନୃପନାଥ, କେବଳ ଦେବ ଜଗନ୍ନାଥ/
ଏ ପିଂଡ ବିକିଅଛି ତାରେ, ଗୀତ ମୁଁ ଅନ୍ୟରେ ନ ବୋଲେ ।" (ଦାଢ଼୍ୟତାଭକ୍ତି)

---

* କେହି କେହି ଜଳେଶ୍ୱର ଆଡ଼ର ଦୀନକୃଷ୍ଣ ଏବଂ ଖୋରଧା ଆଡ଼ର ଦୀନକୃଷ୍ଣ ଏ ଦୁଇଜଣ ସ୍ୱତଂତ୍ର ବ୍ୟକ୍ତି ବୋଲି ମନେ କରଂତି । ମାତ୍ର ଉଭୟଂକର ହିଟହିଟା ଓ ଗ୍ରଂଥ-ପ୍ରମାଣ ପ୍ରାପ୍ତ ଏକ ମନେ ହେବାରୁ ସେମାନେ ଏକ ଓ ଅଭିନ୍ନ କହିବା ସଂଗତ ହେବ । ଲେଖକ ।

ଏଥିରୁ ତତ୍କାଳୀନ ସମାଜ-ପରିବେଶରେ ଜଣେ ଆତ୍ମ ସଚେତନ କବି କିପରି ଅଶେଷ ଦୁଃଖ ନିର୍ଯାତନା ଭୋଗ କରୁଥିଲେ ତାହାର ଏକ ସ୍ପଷ୍ଟ ଆଲେଖ୍ୟ ମିଳେ । ଦୀନକୃଷ୍ଣ ଦାସ ଉପେନ୍ଦ୍ର ଭଞ୍ଜଙ୍କର ପୂର୍ବବର୍ତ୍ତୀ । ଦିବ୍ୟସିଂହ ଦେବଙ୍କ ସତର ଅଙ୍କରେ ଅର୍ଥାତ୍ ଖ୍ରୀ: ୧୭୦୫ରେ ସେ ନିଜର 'ନାମରତ୍ନ ଗୀତା' ରଚନା ଶେଷ କରିଥିବା କଥା ଉକ୍ତ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ।

ଲୋକନାଥ ବିଦ୍ୟାଧର ଉପେନ୍ଦ୍ରଭଞ୍ଜ ପୂର୍ବବର୍ତ୍ତୀ କବି । ତାଂକ 'ପଦ୍ମାବତୀ ପରିଣୟ" କାବ୍ୟଟି ଦିବ୍ୟସିଂହ ଦେବଂକ ଚଉଦ ଅଂକରେ ଅର୍ଥାତ୍ ୧୭୦୨ ଖ୍ରୀଷ୍ଟାବ୍ଦରେ ଶେଷ କରିଥିବା କଥା ଉକ୍ତ ଗ୍ରଂଥରେ ଭଣିତାରେ ଲେଖିଯାଇଛନ୍ତି ।

**ଲୋକନାଥ ବିଦ୍ୟାଧର**

ସେ ତାଂକ କାବ୍ୟରେ ବାଣପୁରର ସୁନ୍ଦର ବର୍ଣ୍ଣନା କରିଥିବାରୁ ସେ ବାଣପୁର ଅଂଚଳର ଲୋକ ହୋଇଥିବେ ବୋଲି ଅନୁମିତ ହୁଏ । ସେ ତାଂକ 'ସର୍ବାଂଗସୁନ୍ଦରୀ' କାବ୍ୟରେ କେତେକ ସ୍ଥାନରେ ନିଜକୁ 'ଲୋକନାଥ ଦାସ' ବୋଲି କହିଛନ୍ତି ଏବଂ ଅନ୍ୟ କେତେକ ସ୍ଥାନରେ ଲୋକନାଥ ବିଦ୍ୟାଧର ବୋଲି ଲେଖି-ଛନ୍ତି । 'ନୀଳାଦ୍ରୀ ମହୋତ୍ସବ' କାବ୍ୟଟି ସେ ଦିବ୍ୟସିଂହ ଦେବଂକ ଆଙ୍କରେ ଲେଖିଥିବା କଥା ଉଲ୍ଲେଖ କରିଛନ୍ତି । ଏଥିରେ ସେ ପ୍ରୋଷିତଭର୍ତ୍ତୃକା, ବାସକ ଶଯ୍ୟା, ସ୍ୱୟଂଦୂତୀ ନଷ୍ଟଦୂତୀ ପ୍ରଭୃତିର ବର୍ଣ୍ଣନା ଦେଇଛନ୍ତି । 'ଉପେନ୍ଦ୍ର ଭଂଜ ଓ ଦୀନକୃଷ୍ଣଂକୁ ଛାଡ଼ିଦେଲେ ତାଂକର ବର୍ଣ୍ଣନା-ଚାତୁରୀ ଓ ଶବ୍ଦ ବିନ୍ୟାସ ଅନ୍ୟ କବିଂକଠାରେ ଦେଖାଯାଏ ନାଇ ।' (ସୂ: ନା: ଦା—ଉ. ସା ଇ)

ଜଗନ୍ନାଥଂକ ବର୍ଣ୍ଣନା —

"ତରୁଣ ତମାଳ ନୀଳଗିରିମାଳ ଶାଳ ଉଜ୍ଜ୍ୱଳ ବଦନ
ଧବଳ କମଳ କାଳିନ୍ଦୀ କମଳ ମଧ୍ୟେ ସୂର୍ଯ୍ୟ ପ୍ରାୟେ ଶୋଭନ ।
ହରିଲି ଶ୍ରୀବଦନେ ବେନି ନୟନ ।
ସୁଅଧର ଛବି ନିଂଦେ ଉଦେ ରବି ପଲ୍ଲବ ବନ୍ଧୁଲି ପ୍ରସୁନ ।
ଶିରରେ ସଗର ଶାଖାର ସହିତ ସୁଘଟ ମୁକୁଟ ବିରାଜଇ,
ସୁଗଂଡ ମଂଡଳ ମଂଡିତ କୁଂଡଳ ମାର୍ତ୍ତଂଡ ଚଂଡକୁ ଖଂଡଇ ।
ପ୍ରଳମ୍ବ ଶ୍ରୀଭୁଜ ଦଂଡ ଦେଖି ପ୍ରିୟେ,
ପତିତେ ଶରଣ ପଶିବା କ ରଣ ଭାବରୁ ଏହେନ ଶୋଭାପାଏ ।"

କବିଂକର ଅନ୍ୟାନ୍ୟ କାଳ୍ପନିକ କାବ୍ୟ ମଧ୍ୟରେ ଚନ୍ଦ୍ରକଳା, ରସକଳା ପ୍ରଭୃତି ଉଲ୍ଲେଖନୀୟ ।

କବି ବିଦ୍ୟାଧର ଶ୍ଳେଷ, ଯମକ,ଅନୁପ୍ରାସ ଏବଂ ଅଲଂକାର ପ୍ରୟୋଗରେ ବିଶେଷ ନୈପୁଣ୍ୟ ଦେଖାଇଛନ୍ତି ।

**ଭୂପତି ପଣ୍ଡିତ**

ଭୂପତି ପଣ୍ଡିତଙ୍କ 'ପ୍ରେମପଂଚାମୃତ' ରାଧାକୃଷ୍ଣ ପରକୀୟା ପ୍ରେମର ମହତ୍ତ୍ୱ ପ୍ରତିପାଦନ କରିଛି । ସେ ନିଜ ରଚନାରେ ଓଡ଼ିଆ ପ୍ରାକୃତର ଜୟଗାନ କରିଛନ୍ତି ଏବଂ ଓଡ଼ିଆ ପ୍ରାକୃତହିଁ ବ୍ୟବହାର କରି ଯାଇଛନ୍ତି । ରାଧାକୃଷ୍ଣଙ୍କ ସମ୍ବନ୍ଧରେ ସେ ଲେଖିଛନ୍ତି—

ତୋହର ଜୀବ ଆତ୍ମା ରାଧେ
ପରମ ମିଶି ତାର ମଧ୍ୟେ
ଦ୍ୱିଅର୍ଦ୍ଧେ ଏକ ପୂର୍ଣ୍ଣ ହୋଇ
ଏଣୁ ସେ ଏକ ଅଂଶ ହୋଇ ।
ମନ ପରମ ଅଂଗ ବେନି
ଯୋଗ ସଂଯୋଗେ ଭିନ୍ନ ଗଣି ।"

ସେ ସ୍ୱକୀୟା, ସମାନ, ବିଟପା ଓ ପରକୀୟା ଏଇ ଚାରିରସ ବିଚାର କରି ପରକୀୟାକୁ ଶ୍ରେଷ୍ଠ ଆସନ ଦେଇ ଯାଇଛନ୍ତି । ରାଧାଙ୍କ ସଂଗେ ସେ ବୃନ୍ଦାବତୀଙ୍କୁ ମଧ୍ୟ କୃଷ୍ଣପ୍ରିୟା ରୂପେ ଅବତାରଣା କରିଛନ୍ତି । ଭୂପତି ପଣ୍ଡିତ ଜଣେ ପଶ୍ଚିମବାସୀ ହୋଇ ଓଡ଼ିଆ ପ୍ରାକୃତରେ ଗ୍ରଂଥ ରଚନା କରି ଯାଇଛନ୍ତି । ଆଙ୍ଗିକ ଦିଗରୁ ସେ ରୀତି-ଯୁଗର ଅନ୍ତର୍ଗତ ନୁହଁନ୍ତି । ସେ ଜଗନ୍ନାଥ ଦାସଙ୍କ ଭାଗବତ ବୃତ୍ତରେ ଏବଂ ସହଜ ପ୍ରାକୃତରେହିଁ ଗ୍ରଂଥ ରଚନା କରି ଯାଇଛନ୍ତି ।

**ବୃନ୍ଦାବତୀ ଦାସୀ**

ବୃନ୍ଦାବତୀ ଦାସୀ ଖ୍ରୀ. ୧୭୯୯ରେ 'ପୂର୍ଣ୍ଣତମ ଚନ୍ଦ୍ରୋଦୟ' କାବ୍ୟ ରଚନା ଶେଷ କରିଥିଲେ । ଲେଖିକା ପୁରୀ ଜିଲାର ମଲିପଡ଼ା ଗ୍ରାମର କରଣ ବଂଶୀୟା । ଏ ଗ୍ରଂଥଟିର ବିବକ୍ଷିତ ଓ ଉପଜୀବ୍ୟ ବିଷୟ ହେଉଛି ଶ୍ରୀ ଚୈତନ୍ୟଙ୍କ ପ୍ରଚାରିତ ପ୍ରେମ-ଧର୍ମ । ଆଲଂକାରିକ କାବ୍ୟ ହିସାବରେ ତାଙ୍କ ଗ୍ରଂଥଟି ଉଚ୍ଚକୋଟିର ବୋଲି ବିଶେଷଜ୍ଞମାନଙ୍କର ମତ । ତାଙ୍କ ସ୍ୱାମୀଙ୍କ ନାମ ଥିଲା ଚନ୍ଦ୍ରଶେଖର ମହାପାତ୍ର । ମାତ୍ର ପୁରୁଷାନୁକ୍ରମେ ବ୍ରଜବୈଷ୍ଣବ ଥିବାରୁ 'ଦାସ' ନାମରେ ପରିଚିତ । ନାୟିକାର ପ୍ରଥମ ଅଧ୍ୟାୟରେ ଶବ୍ଦାଲଂକାର ଦ୍ୱାରା ଶ୍ରୀକୃଷ୍ଣଙ୍କର ସ୍ତୁତି କରିଛନ୍ତି .—

"ଶ୍ରୀକୃଷ୍ଣ ପ୍ରତି ଅଂଗ ଯେହି, ସ୍ୱଭାବେ ନିରୂପମ ସେହି ।
ଉପମା ଧାତା ଘଟଣାରେ, ଦିଅନ୍ତି ସିନା କବିତ୍ୱରେ ।
ସେ ଧାତା ଘଟଣୁ ବାହାର, ସ୍ୱୟଂ ପ୍ରକାଶ ବେଣୁଧର ।
ତେଣୁ ଏ ଉପମା ଯୁଗଳ, ଦେବାର ନୋହିଲା ଯୁଗତ ।"

( 'ଶ୍ରୀକୃଷ୍ଣଙ୍କ ରୂପ ଓ ବେଶଭୂଷା ପ୍ରଭୃତି ନିରୁପମ ଥିବାରୁ ଉପମା ଦେବାରେ କବି ଦ୍ୱିଧାବୋଧ କରୁଛନ୍ତି । ତଥାପି କବିତ୍ୱ ଅନୁରୋଧରେ ସେ ଉପମା ପ୍ରୟୋଗ କରିବାକୁ ବାଧ୍ୟ ହୋଇଛନ୍ତି ଇତ୍ୟାଦି ଇତ୍ୟାଦି । )

## ଉପେନ୍ଦ୍ର ଭଞ୍ଜ

ମୁସଲମାନ ଯୁଗରେ ଅବକ୍ଷୟମାନ ଓଡ଼ିଶାର ସାହିତ୍ୟ ଆକାଶର ମଧ୍ୟାହ୍ନ ସୂର୍ଯ୍ୟର ହେଉଛନ୍ତି ଉପେନ୍ଦ୍ର ଭଞ୍ଜ । ସେ ଏ ଯୁଗୀୟ ସାହିତ୍ୟର ମୂର୍ଦ୍ଧନ୍ୟ କବି ।

ଉପେନ୍ଦ୍ର ଭଞ୍ଜ ପରକୀୟା ପ୍ରୀତିକୁ ନିଜ କବିତାରେ ସ୍ଥାନ ଦେଇ ନାହାଁନ୍ତି । ସେ ରାଧାକୃଷ୍ଣ ପ୍ରେମ-ଲୀଳା ଉପରେ କୌଣସି କାବ୍ୟ ଲେଖି ନାହାଁନ୍ତି । ଆଦର୍ଶ ସତୀ ଏବଂ ଆଦର୍ଶ ପୁରୁଷ ରାମଚନ୍ଦ୍ରଙ୍କୁ ନାୟକ କରି ସେ ବୈଦେହୀଶ ବିଳାସ ଗ୍ରନ୍ଥଟି ବ-ଆଦ୍ୟାନୁପ୍ରାସରେ ରଚନା କରିଛନ୍ତି । ତାଙ୍କର ସ୍ୱକୀୟା ପ୍ରେମ "ପ୍ରେମସୁଧାନିଧି"ରେ "କେତେଦୂରେ କୁମୁଦିନୀ

ସ୍ୱକୀୟା ପ୍ରେମ    କେତେଦୂରେ ସୁଧାକର/ପ୍ରେମ ଆଭେଦ୍ୟ ତାଙ୍କର........ଯେ

ଯାହାର ସେ ତାହା'ର" ପଙ୍କ୍ତିରେ ସୁନ୍ଦର ଭାବରେ ପ୍ରତିଫଳିତ ହୋଇଚି । ଏହାକୁ ଅନେକ ବକ୍ତା ଭଞ୍ଜ-ଜୟନ୍ତୀ ସଭାମାନଙ୍କରେ ଭଞ୍ଜଙ୍କର 'ଯେ ଯାହାର ସେ ତାହାର ବାଦ' କହି ଉଚ୍ଚସ୍ୱରରେ ବକ୍ତୃତା କରିଥାନ୍ତି ।

ଭଞ୍ଜଙ୍କର 'ଝୋଲପୋଇ' ପୁସ୍ତକଟି ଏ ପର୍ଯ୍ୟନ୍ତ ଅପ୍ରକାଶିତ ଥିଲା । 'ଦିଗନ୍ତ' ପତ୍ରିକାରେ ଧାରାବାହିକ ଭାବେ ଅଧ୍ୟାପକ ଡଃ ଜାନକୀବଲ୍ଲଭ ମହାନ୍ତିଙ୍କ (ଭରଦ୍ୱାଜ) ଦ୍ୱାରା ତାହାର ସମ୍ପାଦନା କରାଇ ତାର ସଟୀକ-ପାଠ ପ୍ରକାଶ କରାଯାଇ ଥିଲା । ଏଇପରି ତାଙ୍କର ଆଉ କେତେକ ରଚନା ଅପ୍ରକାଶିତ ଅଛି । ମାତ୍ର ସେଥିପ୍ରତି କାହାରି ଦୃଷ୍ଟି ନାଇ । ଏହା ପ୍ରକୃତରେ ଦୁର୍ଭାଗ୍ୟର ବିଷୟ । ସ୍ୱାମୀ-ସ୍ତ୍ରୀର ପ୍ରେମ ଓ ସମ୍ଭୋଗ ଉପେନ୍ଦ୍ର କାବ୍ୟର ମୂଳକଥା ।

"ସ୍ମର ଶାସ୍ତ୍ର ଯାର ପଢ଼ା ନାହିଁ   ଯାଗ କରୁଥାନ୍ତି କାହିଁପାଇଁ ?
ତହିଁ ଭୋଗସ୍ରକ ଚନ୍ଦନ ବନିତା ଜୀବଗଲେ ସେ ପ୍ରାପତ ହୋଅଇ ।
ସ୍ୱର୍ଗ ଯାଇ କେଉଁ ଭୋଗ ହେବ, ମୀଥାରେ ମୋକ୍ଷଣ ଅଛି ଭାବ,
ସୁତନୁ ଜାନୁ ସିଂହାସନ କି ତହିଁ ମନୋରମ ହୋଇ ସ୍ଥାନ ଥିବ ?"

ଜୀବନକୁ ଏଇ ସଂସାର ମଧ୍ୟରେ କିପରି ଉପଭୋଗ କରିହେବ ଭଞ୍ଜକବି ତାହାର ମାର୍ଗଦର୍ଶନ ଦେଇ ଯାଇଛନ୍ତି । ସ୍ୱର୍ଗକୁ ଯାଇ କଣ ହେବ ? ପ୍ରିୟାର ନୀବି ମୋଚନ ଆନନ୍ଦଠାରୁ କଣ ତାହା ଅଧିକ ଆନନ୍ଦ ଦେଇ ପାରିବ ? ପ୍ରିୟାର

ଆନୁ ସିଂହାସନଠାରୁ କଣ ଇଂଦ୍ରାସନ ବଡ଼ ହୋଇପାରିବ ? ସେ ସ୍ୱର୍ଗକୁ ମର୍ତ୍ତ୍ୟରେ କଳ୍ପନା କରି ଲେଖିଛଂତି—

ମହାସୁଖ ନାହିଁ ଦଂପତ୍ତିରୁ     କି କାର୍ଯ୍ୟ କୁବେର ସଂପତ୍ତିରୁ
ଜୀବନ ଯିବାର ବଡ଼ ତ ନୁହଇ
ଯୁବାଂକୁ ଯୁବତୀ ବିଚ୍ଛେଦରୁ ।
ପରମ ପଦାର୍ଥ ପୀରତିରୁ     ବଡ ସୁଖ ନାହିଁ ସୁରତିରୁ
ନାହିଁ ନଥିବ ନୋହିବ ସର୍ବମତେ
ତହିଁକି ପ୍ରତି କାରଣ ଶ୍ରୁତିରୁ ।
ରତି ବୋଲି ଯେଉଁ ଦୁଇ ଅକ୍ଷର     ପାଶୋର ଯିବାକୁ ସେ ପଂଚଶର
ନିଜ ବଲ୍ଲଭୀ ନାମ ତା ଦେଇଚ,
ଏଣୁ ସେ ନାଗର ଗହଣ ସାର ।
ପଚ୍ଚଶର ପଚ୍ଚ ରଷି ଯହିଁ     ଅଦ୍ଭୁତଗଜାରେ ଦେଲେ ମୋହି
ନବଯୌବନୀ ବନିତା ଗୃହିଁ ।
ଧୈର୍ଯ୍ୟ ଧରୁକେ ଅବମୀଜ ହୋଇ ।

ପୁଣି—

ଯୁବତୀ ସଂଗେ ବିହାର ନାହିଁ, ବିଚ୍ଛେଦ ଯାହାର
ଧିକ ଜୀବନ ତାହାର ହେଉ ସଂହାର ।
ଓଷ୍ଠେ ସୁଧା ସୁତେହାର ଥାଉ ଅମରେ ନିହାର—
କର କରଂତି ଆହାର, ତାଂକୁ ଜୁହାର;
ତାଂକ ଖ୍ୟାତି ସୃଷ୍ଟି ବାହାର
ବାଳାବାହୁ ଥାଉ ଗଳେ ବହଂତି ହାର ।

ଉପେଂଦ୍ର ଭଂଜ 'କୋଟି ବ୍ରହ୍ମାଂଡ ସୁଂଦରୀ' କାବ୍ୟରେ ନାୟିକାର ରୂପ-ଲାବଣ୍ୟ ସହିତ ହରଲୀଳା, ରାମଲୀଳା, ଓ କୃଷ୍ଣଲୀଳାର ତୁଳନା କରିଛଂତି ।

**ରାମଲୀଳା ସହିତ ନାୟିକାର ତୁଳନା**

କଲ୍କ କି ସୃଷ୍ଟି କିଛୁ ନ ହୁଡ଼ିଲ
ହରଲୀଳା ଏ ରୂପେ ନିବାଡ଼ିଲ ।
ସୁଗ୍ରୀବରେ ସେ ଚଂଦନ ମିଶ୍ରିତ
ରାମ-ଲକ୍ଷ୍ମଣ ମୁଖେ ପ୍ରଶଂସିତ । ୧୫ ।

କାଶିତ ଚଂଦ୍ରହାସ-ଝଲକ
ମଂଦୋଦରୀ-ବର ଶକ୍ର ତିଲକ
ମେଘନାଦ ଶିଖା ଲକ୍ଷ୍ୟ ଝଲକ
ଦକ୍ଷ ଧରି ସେ ସୁମନା-ବଳୀକ । ୧୬ ।
ସଦା ଅଂଗଦ ବାହୁରେ ବିହରେ
କୁଚ-କୁଂଭ ଉନ୍ନତି ଚିତ୍ତ ହରେ
ଏଣୁ କରି ପୁଷ୍ପ ଲଂକା କଂପନ
ଏ ତ କଳଙ୍କ କଥା ଉଦ୍ଦୀପନ । ୧୭ । (ଚମ୍ପୁ ଛାଂଦ)

(ରାମ ଅବତାରରେ ହରି ( ଶ୍ରୀ ରାମଚଂଦ୍ର ) ସୁଗ୍ରୀବ ଓ ଚଂଦନ ନାମକ ଦୁଇ ମାଂକଡ଼ଂକ ସଂଗେ ବଂଧୁତା କରିଥିଲେ । ଏ ଦୁହେଁ ରାମଂକର ପ୍ରଶଂସା କରୁଥିଲେ । ନାୟିକାର ସୁଗ୍ରୀବ (ଉତ୍ତମଗ୍ରୀବା) ଚଂଦନ ମିଶ୍ରିତ ହୋଇ ଶୋଭା ପାଇଲା ଏବଂ ମୁହଁରେ ଚଂଦନ ବୋଳା ହେବାରୁ ମୁହଁ ଲକ୍ଷ୍ମଣ (ଚଂଦ୍ର) ପରି ରାମ (ଶୋଭା) ଯୁକ୍ତ ହେଲା ।

ମଂଦୋଦରୀ-ବର (ରାବଣ) ଚଂଦ୍ରହାସ (ଖଂଡା ଝଲକ) ଓ ଶ୍ରେଷ୍ଠ ଶସ୍ତ୍ରରେ ପ୍ରକାଶିତ ହୋଇଥିଲା । ମେଘନାଦର (ଇଂଦ୍ରଜିତ) ଶିଖାଝଲକୁ (ମୁକୁଟ ପ୍ରଭା) ତୁଳନା ନଥିଲା । ସେ ମଧ୍ୟ ସୁମନା (ଦେବତାଂକୁ) ମାନଂକୁ ଧରି ନେବାକୁ ଦକ୍ଷ ଥିଲା । ପୁଣି, ମଂଦୋଦରୀ-ବର (ଶ୍ରେଷ୍ଠା କ୍ଷୀଣୋଦରୀ) ନାୟିକା ଶକ୍ରଶସ୍ତ୍ର ପରି କପାଳରେ ତିଳକଚିହ୍ନ ଦେଇଥିଲା । ଏହାର ଶିଖା (କେଶପାଶ) ସହ ମେଘନାଦ (ମୟୂର) ଲକ୍ଷ୍ୟହେଲା । ) ପୁଣି ସେଇ ମୟୂର ସଦୃଶ ଝଲଥିବା କେଶ ସୁମନା-ବଳୀକୁ (ପୁଷ୍ପାବଳୀ) ଧରିବାକୁ ଦକ୍ଷ ହେଲା ।

ଅଂଗଦ ସର୍ବଦା ବାହୁବଳରେ ବିହାର (କ୍ରୀଡ଼ା) କରୁଥିଲା । କୁଂଭକର୍ଣ୍ଣ ଉଚ୍ଚତାରେ ସମସ୍ତଂକ ଚିତ୍ତ ହରଣ କରୁଥିଲା । କନ୍ୟାର ବାହୁରେ ସର୍ବଦା ଅଂଗଦ (ଅଳଂକାର ବିଶେଷ) ବିହାର କରି ବା ରହିଲା । କୁଚକୁଂଭ ଉଚ୍ଚତାରେ ମନହରଣ କଲା । ଲଂକାରେ ପୁଷ୍ପକ ବିମାନ କଂପୁଥିଲା । ଦେବତାମାନଂକ ବିମାନ ଅସୁର କବଳରେ ରହି କଂପୁଥିଲା । ମେଘନାଦ ଦ୍ୱାରା ଧର୍ତ୍ତ ହୋଇ ଦେବତାମାନେ ମଧ୍ୟ କଂପୁଥିଲେ । କୁମାରୀ କେଶରେ ପୁଷ୍ପଲଂକା (ପୁଷ୍ପ ସମୂହ) କଂପୁଥିଲେ ।) (ଓ.ସା.ଇ)

**କୁଣ୍ଡଳୀକା :** କୃଷ୍ଣକୁନ୍ତଳା ସହିତ ମଧ୍ୟ ନାୟିକାର ରୂପ ତୁଳନା କରାଯାଇଛି—
ନେହେ ସୁଭ୍ରତ ହେବା କହୁଚି　　କୃଷ୍ଣ ଅର୍ଜୁନ ରଂଗ କରାଇଛୁ ।
ଭ୍ରୂଣ ଅଂଜନ କପାଳ କମାଣ　　ବାଣ ପ୍ରୟୋଗ କଟାକ୍ଷ ପ୍ରମାଣ ।

କର୍ଣବଜ୍ର ମଲ୍ଲିକଢ଼ୀ ବହିଲା ସୁଭାଟଂକ ଅଢ଼ଣୀରେ ଶୋହିଲା ।
ଦ୍ରୋଣସୁତ ଉତ୍ତରହିଁ ବଖ୍ୟାତ କଲା କ ଉପଲକ୍ଷଣା ସାକ୍ଷାତ ।
—(କୋ.ବ୍ର ୩।୧୯)

(ମହାଭାରତରେ କୃଷ୍ଣ ଓ ଅର୍ଜୁନ ଯୁଦ୍ଧରଂଗ କରୁଥିଲେ । ଅର୍ଜୁନ ଧନୁ ଓ କୃଷ୍ଣଚଂଦ୍ର ଢାଲ ଧରି ଲଢ଼ୁଥିଲେ । ଦ୍ରୋଣସୁତ ଅଶ୍ୱତ୍ଥାମା ଓ ବିରାଟ ରାଜାଂକ ପୁତ୍ର ଉତ୍ତର ଏ ଦୁଇ ବୀର ବିଖ୍ୟାତ ହୋଇଥିଲେ । କନ୍ୟାର ଆଖିରେ କୃଷ୍ଣ, ଶ୍ୱେତ ଓ ରଂଗ (ଲାଲ) ବର୍ଣ ଲୀଳା କରୁଛି । ଚକ୍ଷୁର ଅଂଜନ ଧନୁର୍ଗୁଣ, ଭ୍ରୂଲ ଧନୁ, କଟାକ୍ଷ ଚଳନ ଅର୍ଜୁନଂକ ଧନୁ ଓ ବାଣ ସଂଗେ ସମାନ ହେଲା । ନାୟିକା କର୍ଣରେ ବଜ୍ରସମ ମଲ୍ଲୀକଢ଼ୀ ଓ ଢାଲ ସମ ଭାଟଂକ ଶୋଭା ପାଇଲା । ଦ୍ରୋଣସୁତ (କୋଇଲ) ପରି ଉତ୍ତର (ବାକ୍ୟ) କହିବାରେ ବିଖ୍ୟାତ ହେଲା ।) (ଓ ସା ଇ)

ନାୟିକାର ଶୋଭାବର୍ଣନା—ନାରୀହିଁ ଉପେଂଦ୍ରଭଂଜଂକ ଔପନ୍ୟାସିକ କାବ୍ୟ-ଗୁଡ଼ିକର କେଂଦ୍ରବିଂଦୁ । ତା' ସହିତ ମୈଥୁନ ଜୀବନର ଏକମାତ୍ର କାମନା ଓ ସୁଖ ।

ସୁସ୍ୱର କରି ବାଗୀଶ୍ୱରୀ ଭଣି ପ୍ରୟୋଜନ ଏଇ ପ୍ରୟୋଗଶ୍ରେଣୀ
କେଳି-ପ୍ରବୀଣା ବୀଣାଜିଣା ବାଣୀ ଖଂଜନ ଗଂଜନ-ରଂଜନକ୍ଷଣୀ ।
ସୁରସ-ନିଧି ନିଧି ପ୍ରତିମା ଗୁଣ-ନାଗରୀ-ନାଗରୀ ଉତ୍ତମା ।
ସଂସାରସାର ଲବଣ୍ୟ ସଦନା କୁଂଦହିରି କୁଂଦଜିତ ରଦନା ।
ସବିକାଶ କାଶ ନଂଦନ ହାସୀ ରାଜିତ ରାଜୀବ ଜିତ ସୁହାସୀ ।
ନବୀନାଠାରେ ଏ ବିନା ଉକ୍ତି ଶୋଭିତ ଲୋଭିତ କେବେ ନୁହଂତି
(୮ । ୧୪)

ନାୟିକାର ପ୍ରଧାନ ଗୁଣ ମଧ୍ୟରେ 'କେଳି-ପ୍ରବୀଣା' 'ସୁରସ-ନିଧି ନିଧି-ପ୍ରତିମା' ଆଦି ଲକ୍ଷଣୀୟ । ସେ "ଅନଂଗ ଶାସ୍ତ୍ର ପୋଥି ନ ଛାଡ଼ନ୍ତି କରୁ, ଏକାଂତ ସ୍ଥାନେ ବସି ପଢ଼ଇ ଥିରୁ ।" ବସଂତ, ମଳୟ, ଚଂଦ୍ର ସମସ୍ତେ ସେଇ କାମ-ଲୀଳାର ଉଦ୍ଦୀପକ ଓ ସହାୟକ ।

"ଅତି ରସମୟ ବସଂତ ସମୟ ବିଚିତ୍ର ପ୍ରମେୟ ତାହାର
ମିତ୍ର ଅନଂଗକୁ ପ୍ରବଳ କରାଇ ଆଚରି ଚର୍ଚରୀ-ବିହାର ।
ଆଗତେ ଆରୋହିଲା ନାଗେଶ୍ୱରକୁ ।
ଋତୁରାଜ ପଦୁଁ ସେ ରଜ ଘେନିଲା ଗୁହିଁ ପ୍ରଫୁଲ୍ଲ କେଶରକୁ ।" ୬।୧

ନବଯୌବନା ସୁଂଦରୀ କଂଦର୍ପର ରୂପାସ୍ତ୍ର ପରି ଦେଖାଯାଉଛି । ସେ ପୁଷ୍ପବତୀ ହେବା ପରେ ସାତ ଦିନ କାଂତଗୃହରେ ରହିବା କଥାକୁ ଲକ୍ଷ୍ୟ କରି କବି ଲେଖିଛଂତି—

"କାଂଡଗୃହେ ରଖିଲେ ଅନୁଗୃଣି
ବାଲା କାମଂକାଂଡ ଏହା ବିଗୃଣି ।
ନୋହେ ଲେହ ଫୁଲ ଏଥୁ ବାହାର
ରୂପ ମୋହନାସ୍ତ୍ର ନଷ୍ଟେ ଏହାର ।
କାମରୂପାସ୍ତ୍ର ନୋହିଲେ କାହିଁକି
ଆସ୍ଥି ଗୋଚର ଥିଲା ଏ ବହିକି ।
ଏବେ ଗୋଚର ହୋଇଲା କବିକି
ବର୍ଣ୍ଣିବାକୁ ତା ମଂଜୁଳ ଛବିକି ।"
(କୋ: ବ୍ର ୩୬।୪୦-୪୧)

ଏବଂ "ଭଗ୍ନ ଯୌବନ ସୃଷ୍ଟି ସଜାଡ଼ିଲା ଆଗ ଉପମାସୃଷ୍ଟି ଉଜାଡ଼ିଲା ।
ଯୋଗୀ ସୃଷ୍ଟିରେ ପ୍ରଳୟ ବହିବ ଯୁବା ସୃଷ୍ଟି ଆଉ କେତେ ରହିବ ।"
(କୋ. ବ୍ର ୩୬।୬୦)

ସମସ୍ତ କିଛୁ କେବଳ ସେଇ ଗୋଟିଏ ଦୃଷ୍ଟିକୋଣ, ଗୋଟିଏ ମାନସ-ଭଂଗୀକୁ ପ୍ରତିଫଳିତ କରୁଚି । ନାରୀର ସାର୍ଥକତା କେବଳ 'କାମକାଂଡ' ହେବାରେ । ଏହାହିଁ ଭଂଜକାବ୍ୟର ମୂଳସ୍ୱର ।

ନାରୀର କୌଣସି ଅଂଗକୁ ସେ ବର୍ଣ୍ଣନା ନକରି ଛାଡ଼ି ନାହାଂନ୍ତି । ଏପରିକି ଲାବଣ୍ୟବତୀ ପୁଷ୍ପବତୀ ହେବା ପରେ ଭଂଜେ ତା'ର ଗୋପନ ଅଂଗ ଏବଂ ଶୋଣିତ ମଂଡଳର ମଧ୍ୟ ବର୍ଣ୍ଣନା କରିଛଂନ୍ତି :—

ଶୁଣ ରସିକେ ନବ ଯଉବନୀ ହୋଇ ବନିତା ମଂଡଳୀ ଅବନୀ । X X
ଯାଇଁ ଏକାଂତେ ଯହୁଁ ରତ୍ନକେଶୀ ଜଂଘା ସନ୍ଧିରେ ସେ ଦୃଷ୍ଟି ନିବେଶି
କଂଦ ସ୍ଫଟିକ ବାଡ଼ରେ ଯେସନ ଫୁଲ ମଂଦାର ତେମଂତ ପ୍ରସନ୍ନ ।
ଚୂର୍ଣ୍ଣ ଭୂମିରେ ମଂଡଳ ଆକାରେ ଦ୍ରାବି ହିଂଗୁଳ ଢାଳିଲା ପ୍ରକାରେ ।
ହେମ ପଦକରେ କାମ ବଣିକ କଲା ନାୟକ ଦା ଦବ୍ୟ ମାଣିକ୍ୟ ।
ଯୁବାଜନଙ୍କୁ ପାର୍ଶ୍ୱରେ ସଂକଳ୍ପ କରେ କର, କଂବେ ନାହିଁ ବିକଳ୍ପ ।
ଯଉବନ ମାଳି ସ୍ତନ ଶଂଭୁରେ ପୂଜାବିଧି ସାରି ଦବ୍ୟ କଂବୁରେ ।
ପାରିଜାତ ପ୍ରସାଦ କି ଥୋଇଚି ସେହି ପ୍ରକାରେ ରୁଚିର ହୋଇଚି ।
ବାଳଭାନୁ ଜାନୁ ଗିରି-ଗୁହାରେ ସ୍ଥିତ ତା ଭାନୁ କି ଅଗ ବାହାରେ
ଅଧୋମୁଖରୁ ଶୋଣିତ ବମନ କଚ୍ଛପ କି କରଇ ଧେନ ମନ ।

ଚନ୍ଦ୍ର ଦେଖନ୍ତି କରି ମାନସରେ    ରତି ଜଗନ ଫେଣ୍ଟି ଶେଷରେ ।
ନବନୀତରେ ସିଂଦୂର ଗୋଳିଲା    ଏହି ଉପମାରେ ଚନ୍ଦ୍ର ବଳିଲା ।
(ଲ:ବ ୩ । ୨୭-୩୧

ଅନେକେ ମନେକରିଥାଂନ୍ତି, 'ଉପେନ୍ଦ୍ର ଶୃଂଗାର ରସ ନାମରେ ଯାହା ବର୍ଣ୍ଣନା କରିଛଂନ୍ତି ତାହା ବୀଭତ୍ସ ।' ମାତ୍ର ଆର୍ତ୍ତବଲ୍ଲଭ ମହାଂନ୍ତି ବିଜୟଚଂଦ୍ର ମଜୁମଦାର ପ୍ରମୁଖଂକର ଏହି ମତ ଖଂଡନ କରିଛଂନ୍ତି । ତାଂକ ମତରେ ସ୍ଥାନେ ସ୍ଥାନେ ବର୍ଣ୍ଣନାରେ ଅଶ୍ଳୀଳତା ରହିବା ଯୋଗୁ ଯଦି ଶୃଂଗାର ବୀଭତ୍ସରେ ପରିଣତ ହୁଏ, ତେବେ ଭାରତର ପ୍ରାୟ ସମସ୍ତ ସଂସ୍କୃତ ଓ ପ୍ରାକୃତ କାବ୍ୟମାନଂକରେ ନାୟକର ନାୟିକା ପ୍ରତି ପ୍ରୀତିକୁ ଏହି ଦୋଷରେ ଦୁଷ୍ଟ ବୋଲି କହିବାକୁ ହେବ । *

ସେ ଯାହାହେଉ ଭଂଜ ଓ ରୀତିଯୁଗୀୟ କବିମାନଂକର ପ୍ରଧାନ ଉପଜୀବ୍ୟ ରସ ହେଲା ଶୃଂଗାର । ଏହାର ସ୍ଥାୟିଭାବ ରତି । ଆଲଂବନ ସ୍ତ୍ରୀ ପୁରୁଷ । ଉଦ୍ଦୀପନ ବସଂତାଦି ଋତୁ, ମାଲ୍ୟ, ଅନୁଲେପନ, ଅଳଂକାର, ଚଂଦ୍ର, ଚଂଦ୍ରିକା, ଚଂଦନ, ମଳୟ ଇତ୍ୟାଦି । ଅନୁଭାବ—ନୟନଭଙ୍ଗୀ, ଭ୍ରୂକ୍ଷେପ, କଟାକ୍ଷ, ଲଳିତ ମଧୁର ଅଂଗ ବିକ୍ଷେପ, ମୁଖାବଲୋକନ, ଗୁଣଶ୍ରବଣ, ଗୁଣବର୍ଣ୍ଣନା, ସ୍ତଂଭସ୍ୱେଦାଦି । ବ୍ୟଭିଚାରୀ—ଉଗ୍ରତା, ମରଣ, ଆଳସ୍ୟ ଓ ଜୁଗୁପ୍ସା ବ୍ୟତୀତ ଅନ୍ୟ ସମସ୍ତ ଭାବ ।

ଶୃଂଗାର ଦୁଇ ପ୍ରକାର । ସଂଭୋଗ ଓ ବିପ୍ରଲଂଭ । ବିପ୍ରଲଂଭ ଶୃଂଗାରରେ ଅନୁଭାବ—ନିର୍ବେଦ, ଗ୍ଳାନି, ଶଂକା, ଅସୂୟା ଔତ୍ସୁକ୍ୟ, ନିଦ୍ରା, ସ୍ୱପ୍ନ, ବ୍ୟାଧି, ଉନ୍ମାଦ ଇତ୍ୟାଦି । ଏହାର ବର୍ଣ୍ଣ ଶ୍ୟାମଳ । ଅଧିଷ୍ଠାତା ଦେବତା ବିଷ୍ଣୁ ।

ବୀଭତ୍ସ ରସର ସ୍ଥାୟିଭାବ ଜୁଗୁପ୍ସା । ଅହୃଦ୍ୟ ଓ ଅପ୍ରିୟ ଦର୍ଶନ, ଅନିଷ୍ଟ ଶ୍ରବଣ, ଦର୍ଶନ ଓ ପରିକୀର୍ତ୍ତନ ଆଦି ବିଭାବ । ଶବ ଆଲଂବନ । ଅଂତବିଦାରଣାଦି ଉଦ୍ଦୀପନ । ଅନୁଭାବ—ସର୍ବାଂଗବିକ୍ଷେପ, ମୁଖନେତ୍ର ଘୂର୍ଣ୍ଣନ, ହୃଲ୍ଲେଖ, ନିଷ୍ଠୀବନ, ଉଦ୍‌ବେଜନ । ବ୍ୟଭିଚାରୀ—ଅପସ୍ମାର, ମୋହ, ବ୍ୟାଧି, ମରଣ । ଏହାର ବର୍ଣ୍ଣ ନୀଳ । ଦେବତା ମହାକାଳ । *

## ଆଂଗିକ ଓ ଅଳଂକାର

ଭଂଜ ତଥା ରୀତିଯୁଗୀୟ କାବ୍ୟରେ ଯମକ, ଅନୁପ୍ରାସ, ଶୃଂଖଳା, ପଦାନୁପ୍ରାସ, ଦ୍ୱିରୁକ୍ତି, ପଠିତ, ଶ୍ଳେଷ, ଚିତ୍ରାଂଲକାର, ବର୍ଣ୍ଣଚିତ୍ର, ଆକାର ବା ବଂଧଚିତ୍ର,

* ପ୍ରାଚୀ ସଂସ୍କରଣ 'ଲାବଣ୍ୟବତୀ'ର ମୁଖବଂଧରୁ ।

ଗତିଚିତ୍ର, ଗୋମୂତ୍ର, ବାକ୍ୟୋବାକ୍ୟ, ପ୍ରହେଳିକା (ଦତ୍ତାକ୍ଷର, ଚ୍ୟୁତାକ୍ଷର, ଇତ୍ୟାଦି) ଅକ୍ଷର ମୁଷ୍ଟି, ବିନ୍ଦୁମତୀ ପ୍ରଭୃତିର ବହୁଳତା ଦେଖାଯାଏ ।

ଅଳଙ୍କାର (ଶବ୍ଦାଳଙ୍କାର, ଅର୍ଥାଳଙ୍କାର ଏବଂ ଶବ୍ଦାର୍ଥ ଉଭୟ ଅଳଙ୍କାର) ପ୍ରଭୃତିର ପ୍ରାଚୁର୍ଯ୍ୟ ମଧ୍ୟ ଏହି କାବ୍ୟର ଅନ୍ୟତମ ବୈଶିଷ୍ଟ୍ୟ ।

ଓଡ଼ିଆ ପ୍ରାକୃତରେ ଯେ ସଂସ୍କୃତ ଅଳଙ୍କାର-କାବ୍ୟ ପରି ଉଚ୍ଚାଙ୍ଗ କାବ୍ୟ ରଚନା କରାଯାଇପାରେ, ଏ-ଦିଗରେ ପ୍ରଥମେ ସଫଳ ପରୀକ୍ଷା ଚଳାଇଛନ୍ତି କବି ଉପେନ୍ଦ୍ର ଭଞ୍ଜ ଏବଂ ଆଶାତୀତ ସାଫଲ୍ୟ ମଧ୍ୟ ଲାଭ କରିଛନ୍ତି । ତେଣୁ ତାଙ୍କୁ ଓଡ଼ିଆ ସାହିତ୍ୟର ଗୋଟାଏ ଯୁଗର ପଥିକୃତ୍ କବି କୁହାଯାଇ ପାରେ ।

ସାଧୁ ତତ୍ସମ ଓ ତଦ୍‌ଭବ ଶବ୍ଦ ସଙ୍ଗେ ଦେଶୀ ପ୍ରାକୃତ ଶବ୍ଦମାନଙ୍କର ରସ ଓ ଧ୍ୱନିଗତ ସମନ୍ୱୟ ଭଞ୍ଜଙ୍କ ରଚନାରେ ଯେପରି ନୈପୁଣ୍ୟ ସହକାରେ ଦେଖାଯାଏ ତାହା ଅନ୍ୟତ୍ର ବିରଳ । ଯଥା :—

ଭଞ୍ଜ ଓ   ବିନାଶ ନାସା ଶ୍ରବଣ ସୂର୍ପଣଖା ପ୍ରବେଶ ଲଙ୍କାରେ ।
ରାଧାନାଥ   ବୃକ୍ଷ ପାଟଳିରୁ ଫୁଲ ଝାଡ଼ିଦେଇ ଉଡ଼ି ଯାଇଚି କି କୀର । (ବୈ.ବି)

(କିମ୍ବା) ବଧିର ନୁହେ ମୁଁ ଶୀର ବୋଇଲ ତହୁଁ ଧୀବର
ଶୁଣିଛିଲିଣି ପଥରେ ପଥର ଅବଳା,
ବାଳପଣେ ତୋ ଚରଣୁ ଆଶଙ୍କା ଉପୁଜେ ତେଣୁ
ନଉକା ନାରୀ କା ହେଲେ ବୁଡ଼ିବ ଭେଳା ।
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବି ପାଦ ନ ଧୋଇ ନାବ । (ବୈ ବି)

କିମ୍ବା   'ବକେ ବସିଥିଲା ଧ୍ରୁବ ଉପର

ରାଧାନାଥ କିନ୍ତୁ ଏ ସମନ୍ୱୟ ରକ୍ଷା କରିପାରିଲେ ନାହିଁ । ତାଙ୍କର ରଚନାମାନଙ୍କରେ ସାଧୁ ତତ୍ସମ ଶବ୍ଦ ସଙ୍ଗେ କଥିତ ଶବ୍ଦର ସମନ୍ୱୟ ସେପରି ଦେଖା ଯାଏ ନାହିଁ କହିଲେ ଚଳେ । ଭଞ୍ଜଙ୍କ ମାଳ ଯମକର ଉଦାହରଣ :

ବହଇ ନର୍ବର ଝର ଝର ଅବିରତ
ବିଶେଷ ତରଙ୍ଗ ରଙ୍ଗ ରଙ୍ଗିଣୀ ଶୋଭିତ ଯେ
ବହି ଚନ୍ଦ୍ର ଚନ୍ଦ୍ର ଚନ୍ଦ୍ର ଶୀତଳକୁ ବାତ
ବହେ ମନ୍ଦ ମନ୍ଦ ମନ୍ଦସୁତ କରେ ଚୂତ ଯେ । ବୈ.ବି ୧୯

ଶୃଙ୍ଖଳାଯମକ :   ବୋଧେ ଶୃଙ୍ଖଳାରେ ରଘୁନାଥ ସୀତା ମତି
ବିଚିତ୍ର ଚିତ୍ରକୂଟ ଯେ କୁଟକେ ବ୍ରତତି ଯେ

ବ୍ରତତୀତତି କମ୍ପନ୍ତି ଅତିଶ୍ରି ବାସନ୍ତି
ବାସନ୍ତି ସହିତରେ ଫୁଲ୍ଲ ଫୁଲରେ ସ୍ତ୍ରବର୍ତ୍ତି ଯେ । ବୈ ଷ
ସିଂହାବଲୋକନ : ବୋଧନ୍ତି ରାମ ସିଂହାବଲୋକନେ ଅବଲା
ବଳାକା ପଂତି କରନ୍ତୁ ଧି ବିଲୁ ଧବଳା ଯେ ।
ବଳାଇ ମାନସ ମାନ ମାନ ଅବା ଭ୍ରାଣବନ୍ଧୁ
ବନ୍ଧୁକ ରଂଜନ ଅତି ରଂଗ ନିରବଧି ଯେ । ବୈ ଷ

ଏଇପରି ସମସ୍ତ ପ୍ରକାର ଯମକ, ଅନୁପ୍ରାସ, ଶୃଂଖଳା ଶ୍ଳେଷ, ଗତିଚିତ୍ର, ଚିତ୍ରାଂଳକାର ଭଂଜେ ବ୍ୟବହାର କରିଯାଇଛନ୍ତି ।

## ରୀତି-କାବ୍ୟରେ ମୂଲ୍ୟବୋଧ

ସବୁ ରୀତି-କାବ୍ୟର ମୂଲ୍ୟବୋଧ ସମାନ ନୁହେଁ । ତେବେ ଅଳଂକାର-ପ୍ରାଚୁର୍ଯ୍ୟ ଓ ଶୃଂଗାର ରସର ପ୍ରାଧାନ୍ୟ ପ୍ରାୟ ପ୍ରତି କାବ୍ୟରେ ଦେଖାଯାଏ । କାବ୍ୟ-ଲକ୍ଷ୍ମୀଂକର ସ୍ୱକୀୟ ସୌନ୍ଦର୍ଯ୍ୟ ଅଳଂକାରର ବାହୁଲ୍ୟରେ ପ୍ରାୟ ଉପଲବ୍ଧି କରିହୁଏ ନାହିଁ । ବିଷୟବସ୍ତୁରେ ବୈଚିତ୍ର୍ୟ ବିଶେଷ କିଛି ନାହିଁ । କୁମାର-କୁମାରୀ ବା ରାଧା-କୃଷ୍ଣଂକର ପୂର୍ବରାଗ, ପ୍ରଣୟ, ବିଚ୍ଛେଦ, ମିଳନ ଓ ରତିକ୍ରୀଡ଼ା ସମସ୍ତ ପୌରାଣିକ ଏବଂ ଔପନ୍ୟାସିକ (ଆର୍ତ୍ତବାବୁ ଭଂଜଂଙ୍କ କାଳ୍ପନିକ କାବ୍ୟକୁ 'ଔପନ୍ୟାସିକ' କହିଛନ୍ତି) କାବ୍ୟର କଥାବସ୍ତୁ । ନାୟିକାର ଶୋଭା ବର୍ଣ୍ଣନା, ଗୁଣ ବର୍ଣ୍ଣନା, ପ୍ରେମ ଓ ଉଦ୍ଦୀପନ (ବସନ୍ତ, ମଳୟ, ଚନ୍ଦ୍ର) ପ୍ରତ୍ୟେକ କାବ୍ୟରେ ପୁଣି ଭରିଛି । ଗୁଣ ବର୍ଣ୍ଣନାରେ 'କେଳି-ପ୍ରବୀଣା' 'ସୁରସ-ନିଧି ନିଧି ପ୍ରତିମା', 'ଗୁଣ-ନାଗରୀ-ନାଗରୀ ଉତ୍ତମା', 'ସଂସାରସାର ଲାବଣ୍ୟ ସଦନା' ପ୍ରଭୃତି ବିଶେଷଣ ଭଂଜେ ପ୍ରଚୁର ପରିମାଣରେ ପ୍ରୟୋଗ କରିଛନ୍ତି । ମୋଟ ଉପରେ ଦୈହିକ ମିଳନ ଓ ତଜ୍ଜନିତ ସୁଖହିଁ ରୀତି କାବ୍ୟର ପ୍ରଧାନ ମୂଲ୍ୟବୋଧ—ଏହା କେଉଁଠି ସ୍ୱକୀୟା ଏବଂ କେଉଁଠି ପରକୀୟାକୁ ଆଶ୍ରୟ କରି ଗଢ଼ି ଉଠିଛି ।

### ମାଧୁର୍ଯ୍ୟ-ରସ

କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା ଓ ଅଭିମନ୍ୟୁ ସାମନ୍ତସିଂହାର ଉଭୟେ ମାଧୁର୍ଯ୍ୟ ରସର କବି । ଏମାନେ ଭଂଜଂଙ୍କର ଉତ୍ତରସୂରୀ । ଉପେନ୍ଦ୍ର ଭଂଜଂଙ୍କ ନାୟିକା ସ୍ୱକୀୟା । ମାତ୍ର ବ୍ରହ୍ମା ଓ ସାମନ୍ତସିଂହାରଂକ ନାୟିକା ପରକୀୟା । କବିସୂର୍ଯ୍ୟ ବ୍ରହ୍ମା 'ଯୁଗଳରସାମୃତ ଲହରୀ' ଓ 'ପ୍ରେମ-ତରଂଗିଣୀ'ରେ କାନ୍ତାଭାବର ଶ୍ରେଷ୍ଠତ୍ୱ ପ୍ରତି-ପାଦନ କରିଛନ୍ତି ।

"ଘୂର୍ଣ୍ଣାୟମାନ ନୟନ ଦୁହେଁ ରସାଳସେ
ଅନ୍ୟାନ୍ୟରେ ପ୍ରାପ୍ତି ଲୋଭ ପରକୀୟା ରସ ଯେ ।
ଅପ୍ରାକୃତ ଅନଙ୍ଗରେ ପୀଡ଼ିତ ହୃଦୟ
ମହାଭାବ ରୂପା ରସ ରାଜା ଜୟ ଜୟ ।"

ଅଭିମନ୍ୟୁ ସାମନ୍ତସିଂହାର ଅଭିମନ୍ୟୁ ରାଧା-କୃଷ୍ଣଙ୍କୁ 'ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି" ରୂପେ ବର୍ଣ୍ଣନା କରିଛନ୍ତି ଏବଂ ତାଙ୍କର ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରିବା" ପାଇଁ ସେ ଦୁହେଁ ମର୍ତ୍ତ୍ୟରେ ଅବତାର ଗ୍ରହଣ କରିଛନ୍ତି ବୋଲି କହିଛନ୍ତି ।

'ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି, ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରି ଅବତରି । ଆଦି ଅନାଦି କାରଣ ନିର୍ଗୁଣ ସଗୁଣ, ଆତ୍ମାରାମ ସନାତନ ବ୍ରହ୍ମ ନିରୂପଣ ।' (ବିଦଗ୍‌ଧ ଚିନ୍ତାମଣି)

ସେ ନିତ୍ୟରେ ଈଶ୍ୱର ହେଲେ ମଧ୍ୟ ଲୀଳାରେ 'ଈଶ୍ୱରଙ୍କଠୁ ସ୍ୱତନ୍ତ୍ର' । ଅଭିମନ୍ୟୁ ଅପ୍ରାକୃତ ପ୍ରେମଲୀଳାକୁ ଅଭୂତ ମାନବୀୟ ଆବେଗରେ ଭରି ଦେଇ ସହଜ ଓ ରସସ୍ନିଗ୍ଧ କରି ପାରିଛନ୍ତି ।

ଅଭିମନ୍ୟୁଙ୍କ କାବ୍ୟରେ ମଧ୍ୟ ଶୃଙ୍ଗାର ରସ, ବିଶେଷ କରି ରତିଲୀଳାର ପ୍ରାବଲ୍ୟ ଦେଖାଯାଏ । ତାଙ୍କ ବି.ଚି. ରେ ରାଧା ତଥା ଗୋପୀମାନଙ୍କ ସହ କୃଷ୍ଣଙ୍କ ପ୍ରୀତି ବିଷୟରେ କହିବାକୁ ଯାଇ ଆର୍ତ୍ତବଲ୍ଲଭ ମହାନ୍ତି ଆକ୍ଷେପ କରିଛନ୍ତି : "ଓଡ଼ିଆ ସାହିତ୍ୟରେ ଏଭଳି ଅତ୍ୟଧିକ ପ୍ରଚଣ୍ଡ ନିଷ୍ଠାତ୍ମକ ରଚନା ସମୀଚୀନ ନୁହେଁ" । ତାଙ୍କ ମତରେ 'ପ୍ରୀତି ଅବୈଧୀ ହେଲେ ରସରେ ବାଧା ଜନ୍ମେ ।'

କିନ୍ତୁ ବୈଧୀ ପ୍ରୀତି ବା ସ୍ୱକୀୟା ସହ ରତିକ୍ରୀଡ଼ା ଯଦି ଅତ୍ୟଧିକ ଦେହ-ତାପ-ତପ୍ତ ହୁଏ ତେବେ ତାହା ମଧ୍ୟ ରସରେ ବାଧା ସୃଷ୍ଟି କରିଥାଏ । ଏହାର ଉଦାହରଣ ଭଞ୍ଜଙ୍କ କାବ୍ୟ-କବିତାରେ ଅଭାବ ନାହିଁ । 'ବିଦଗ୍‌ଧ ଚିନ୍ତାମଣି'ର ୩୪ଶ ଛାନ୍ଦଟି ବିଜୟଚନ୍ଦ୍ର ମଜୁମଦାର ତାଙ୍କ 'ଓଡ଼ିଆ ସାହିତ୍ୟର ପରିଚୟ' ଗ୍ରନ୍ଥରେ ସନ୍ନିବେଶିତ କରିଛନ୍ତି । ଆର୍ତ୍ତବଲ୍ଲଭ କହନ୍ତି 'ସେ ଛାନ୍ଦଟି ଯେପରି ଅଶ୍ଳୀଳ ସେପରି ଅଶ୍ଳୀଳ ପଦାବଳୀ ଅନ୍ୟତ୍ର ବିରଳ ।' (ଲାବଣ୍ୟବତୀ—ମୁଖବନ୍ଧ, ପ୍ରାଚୀ ସଂସ୍କରଣ)

(ଅବନା) ମଦମତ୍ତ ଉନ୍ମତ ଗଜମସ୍ତକ
ବଡ଼ ଉଲଟ ତବଲ ରମ୍ୟ ମଣ୍ଡପ ତ ସତ ।
ଦନ୍ତ ଶଠ ବରକତ ବନଧର ଯହୁ ପ୍ରକଟ କନକ ଘଟ ଘଟନତ ସ୍ତନ ।

(ବନା) ଧୀରେ ଧୀରେ ବେଲେ ଦେବେ ଗ୍ରଡିକ ମୋ ଯୋଖି
ଦଶ ଦଶେ ଆସୁ ନାହିଁ କି ଦୋଷେ ସୁମୁଖୀ ।
ଚରଣ ଶରଣ ରଣରଣ ଦରହର ।
ଯତନେ ରତନ ଘନ ସ୍ତନ ତ ରଂକର ।
ଅଂଗ ଅନଂଗର ଶର ସଦନ ତ ସତ ।
ନୟନ ଦର୍ଶନ ଜନରଂଜନ ସତତ । (ଯମସ୍ଵର ନବୋଷ୍ଠକ)

.... .... ....

ଅବ୍ଜ ରସଶ୍ରେଣୀ ହେବେ ଭ୍ରମର ଚକୋର
ଅବଜ ପୂଜନେ ଶୋଭନ ହେବେ ସର୍ବପୁର ।
ଅରୁଣ ଲୋକନେ ମୂଦ କୁମୂଦ ହୋଇବ
ବିପକ୍ଷିତ କଥାରେ ସୁଗତି ନମିଳବ । (ବ ଚ ୩୪)

ଲୌକିକ ଯୌନ-ସଂଭୋଗ ସହିତ ଅଲୌକିକ ରାଧାକୃଷ୍ଣ ପ୍ରେମଲୀଳାର ସଂଯୋଗ ଘଟାଇ ସାମଂତସିଂହାର ତାଂକର କାବ୍ୟ ଜଗତ ସୃଷ୍ଟି କରିଛଂତି ।

## ଯମକ, ଅନୁପ୍ରାସ, ଶ୍ଳେଷ, ଶୃଂଖଳା

ରୀତି-କବିମାନେ ପ୍ରଚୁର ଯମକ, ଅନୁପ୍ରାସ, ଶ୍ଳେଷ, ଶୃଂଖଳା ଆଦି ଅଲଂକାର ନିଜ ନିଜ କାବ୍ୟରେ ବ୍ୟବହାର କରିଛଂତି ।

**ଯମକ** : ଭରତଂକ ମତରେ ଶବ୍ଦର ଅଭ୍ୟାସରେ ଯମକ ହୁଏ । ଯେଉଁଠି ଦୁଇଟିଯାକ ଗୋଟିଏ ଅର୍ଥଯୁକ୍ତ ପଦ ହୁଅଂତି ସେଠି ଲଟାନୁପ୍ରାସ ହୁଏ । ବର୍ଣାନୁପ୍ରାସରେ କେବଳ ବ୍ୟଂଜନର ଆବୃତ୍ତି ହୁଏ, ମାତ୍ର ଯମକରେ ସ୍ଵର ଓ ବ୍ୟଂଜନ ଉଭୟର ଆବୃତ୍ତି ହୁଏ । ଓଡ଼ିଆ ସାହିତ୍ୟରେ ପ୍ରଚଳିତ ଯମକମାନଂକ ମଧ୍ୟରେ ଏକାକ୍ଷର ଯମକ, ଦ୍ଵିବର୍ଣାଦ୍ୟ ଯମକ, ଦ୍ଵଂଦ୍ଵାଦ୍ୟ ଯମକ, ବ୍ୟୁରୁକ୍ତ ଯମକ, ଅନୁଚ୍ଛଂଦ ଯମକ, ସମପାଦ ଯମକ, ଧ୍ଵନି ଯମକ, ଆଦି, ମଧ୍ୟ, ଆଦ୍ୟଂତ ଯମକ, ଆଦି-ମଧ୍ୟ ଯମକ, ମଧ୍ୟ-ଅଂତ ଯମକ, ମାଳ ଯମକ, ସର୍ବ ଯମକ, ମହାଯମକ, ନୟନ ଯମକ । ଭଂଜଂକ ମହାଯମକ ସାମଂତସିଂହାରଂକଠାରୁ ପୃଥକ ।

**ଶୃଂଖଳା** :—ଯମକପ୍ରାଂତ ଶୃଂଖଳା, ସିଂହାବଲୋକ, ଚନ୍ଦସିଂହାବଲୋକନ, ମଂଡୂକପ୍ଲୁତ ଶୃଂଖଳା, ଗଂଗାସ୍ରୋତାଧିକାର ଶୃଂଖଳା, ସର୍ବାଂଗପାଦ ଶୃଂଖଳା, ଇତ୍ୟାଦି ଉଲ୍ଲେଖନୀୟ ।

**ଅନୁପ୍ରାସ** :—ସ୍ୱରର ସମତା ନ ଥାଇ ଅନତିଦୂରସ୍ଥ ବର୍ଣ୍ଣଙ୍କର ସାମ୍ୟକୁ ଅନୁପ୍ରାସ କହନ୍ତି । ଦଣ୍ଡୀଙ୍କ ମତରେ ଏହା ଦ୍ୱିବିଧ ଯଥା ବୃତ୍ତ୍ୟାନୁପ୍ରାସ, ଶ୍ରୁତ୍ୟାନୁପ୍ରାସ । ସାହିତ୍ୟ ଦର୍ପଣକାରଙ୍କ ମତରେ ଏହା ଷଡ଼ବିଧ—ଶ୍ରୁତି, ବୃତ୍ତି, ବର୍ଣ୍ଣ, ପଦ, ଦ୍ୱିରୁକ୍ତ ଓ ଲାଟ ଅନୁପ୍ରାସ । ଶ୍ରୁତ୍ୟାନୁପ୍ରାସ ପୁଣି ତିନି ପ୍ରକାର—ଗ୍ରାମ୍ୟ, ନାଗର ଓ ଉପନାଗର । ଗ୍ରାମ୍ୟ ପୁଣି ମସୃଣ, ବର୍ଣ୍ଣମସୃଣ, ବର୍ଣ୍ଣୋତ୍କଟ ଓ ବର୍ଣ୍ଣାନୁତ୍କଟ ଭେଦରେ ଚାରି ପ୍ରକାର ।

ଶ୍ଳେଷ—ସଭଙ୍ଗ, ଅଭଙ୍ଗ ଓ ଭଙ୍ଗାଭଙ୍ଗ । ଏହାଛଡ଼ା ପୁଣି ଚୂର୍ଣ୍ଣୀଭୂତ ବ୍ୟଙ୍ଗ୍ୟ ରହିଛି । ଶ୍ଳେଷ ଅନେକ ପଦର ଏକରୂପବୋଧ ।

ଉପରୋକ୍ତ ଅଳଙ୍କାର ଛଡ଼ା ଚିତ୍ରାଳଙ୍କାରର ପ୍ରୟୋଗ ମଧ୍ୟ ଭଞ୍ଜ-କାବ୍ୟରେ ଦେଖାଯାଏ । ଭଞ୍ଜଙ୍କ 'ଚିତ୍ରକାବ୍ୟ ବନ୍ଧୋଦୟ'ରେ ଆମେ ଚିତ୍ରାଳଙ୍କାର ପାଉଁ । ଏହା ଛ' ପ୍ରକାର ଯଥା ବର୍ଣ୍ଣ, ସ୍ଥାନ, ସ୍ୱର, ଆକାର, ଗତି ଓ ବନ୍ଧ ।

ଏହାପରେ ଗତିଚିତ୍ର, ଯଥା ଗତପ୍ରତ୍ୟାଗତ, ତୁରଙ୍ଗପାଦ, ଅଜାମେଷଯୁଦ୍ଧ, ମଣ୍ଡୂକପ୍ଲୁତ, ଶାର୍ଦ୍ଦୂଳବିକ୍ରୀଡ଼ିତ, ଗୋମୂତ୍ରିକା ଓ ସର୍ବତୋଭଦ୍ର ଭେଦରେ ନାନାବିଧ ।

ଏ ସମସ୍ତର ବିଶଦ ଆଲୋଚନା ଓ ଉଦାହରଣ 'କବିତା, ୧୯୭୨' ଗ୍ରନ୍ଥର ପୃଷ୍ଠଭୂମିରେ ଏବଂ ପ୍ରାଚୀ ପ୍ରକାଶିତ 'ଲାବଣ୍ୟବତୀ' ମୁଖବନ୍ଧରେ ଦ୍ରଷ୍ଟବ୍ୟ । ଅଧିକନ୍ତୁ ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ବିଦଗ୍ଧ ଚିନ୍ତାମଣି'ର ୩୪ଶ ଓ ୩୬ଶ ଛାନ୍ଦରେ ତାଙ୍କ ପ୍ରଯୁକ୍ତ ଅନୁପ୍ରାସ ଶୃଙ୍ଖଳାର ବିସ୍ତୃତ ଦୃଷ୍ଟାନ୍ତମାନ ରହିଛି ।

## ଉପସଂହାର

ସ୍ୱର୍ଗୀୟ ମୃତ୍ୟୁଞ୍ଜୟ ରଥ କହିଛନ୍ତି :—"ଅଳଙ୍କାର ବିଷୟରେ ଉତ୍କଳ ସାହିତ୍ୟ ଯେ ବେଶୀ ଧନୀ, ଏହା କହିବା ନିଷ୍ପ୍ରୟୋଜନ । କିନ୍ତୁ ଖାଲି ଏହି ବାହ୍ୟ ଭୂଷଣ ଥାଇ କ'ଣ ହେବ ? ସେଥିରେ ଅନ୍ତଃସାର ନାହିଁ । ଏହି ସମୟରେ ରଚିତ କାବ୍ୟାବଳୀରେ କୌଣସି ଉନ୍ନତ ଚିନ୍ତା ଏବଂ ବିଷୟବୈଚିତ୍ର୍ୟ ନାହିଁ । ଆବରଣଟି କାଢ଼ି ନେଲେ ଅନେକ କାବ୍ୟର ମଙ୍କା ପ୍ରାୟ ଏକ ଦେଖାଯିବ । ସେ ସବୁରେ ନା ଇତିହାସ, ନା ସମାଜଚିତ୍ର, ନା ଉନ୍ନତ ଆଦର୍ଶ କିଛୁ ନାହିଁ ।" (ରସକଲ୍ଲୋଳ—ପ୍ରାଚୀ ସଂସ୍କରଣ ମୁଖବନ୍ଧ)

ଏ-ଯୁଗୀୟ ସମାଜଜୀବନରେ ଓଡ଼ିଶାର ଗଜପତିମାନଙ୍କର ତଥା ତାଙ୍କ ଅଧୀନସ୍ଥ ସାମନ୍ତ ରାଜନ୍ୟମଣ୍ଡଳୀଙ୍କ 'କାଳମାହାତ୍ମ୍ୟ ଚରିତ୍ର ତଥା ସ୍ୱାନୈତିକତା

ପ୍ରଜାମାନଂକ ମଧ୍ୟରେ ପ୍ରତିଫଳିତ ହୋଇଥିଲା ।' ଉପେନ୍ଦ୍ରଂକ ପୂର୍ବକାଳୀନ ତଥା ସମକାଳୀନ ଘୁମୁସର ରାଜବଂଶ ଉଲଗ୍ନ କାମଚରିତାର୍ଥତା ଓ ସ୍ୱଜନବଧ ଇତ୍ୟାଦି ମହାପାତକରେ କଳୁଷିତ ହୋଇ ପଡ଼ିଥିଲା । ଗୋପୀନାଥ ଭଂଜଂକ ଦ୍ୱାରା ଜ୍ୟେଷ୍ଠ ଭ୍ରାତା ବନମାଳୀଂକ ହତ୍ୟା ଏବଂ ଗୋପୀନାଥଂକ ପୁତ୍ର ଧନଂଜୟଂକର ତାଂକର ପ୍ରିୟବତୀ କନିଷ୍ଠା ମହିଷୀ ନୟାଗଡ଼ ରାଜଜେମା ମଂଡାଦେଈଂଙ୍କ ଦ୍ୱାରା ନିଧନ ପୁଣି ମଂଡାଦେଈଂକ ପ୍ରରୋଚନାରେ ନୀଳକଂଠଂକର (ଉପେନ୍ଦ୍ରଂଦ୍ର ପିତା) ଜ୍ୟେଷ୍ଠଭ୍ରାତା ଗଂଗାଧର ଓ ତାଂକ ପୁତ୍ର ଶତ୍ରୁଭଂଜଂକୁ ହତ୍ୟା ଏବଂ ଶତ୍ରୁଭଂଜଂକ ପୁତ୍ର ରଣଭଂଜଂକୁ ଘନଭଂଜଂକର ହତ୍ୟା, ଏ ସମସ୍ତର ବିଷମୟ ଫଳାଫଳ ଓ ପ୍ରତିକ୍ରିୟା ତତ୍କାଳୀନ ସମାଜଜୀବନକୁ ନିଶ୍ଚୟ ନିମ୍ନଗାମୀ କରିଥିଲା । ବାଣଭଟ୍ଟଂକ 'ଶ୍ରୀହର୍ଷ ଚରିତ'ର ସ୍ପଷ୍ଟ ଉଲ୍ଲେଖରେ ଯେଉଁପରି ନୈତିକ ଚରିତ୍ରହୀନତା ଓ ସ୍ୱଜନବଧ ଇତ୍ୟାଦିର ନଗ୍ନଚିତ୍ରଣ ଦେଖିବାକୁ ପାଉଁ ଓଡ଼ିଶାର ଅବସ୍ଥା ଥିଲା ଠିକ୍ ସେଇପରି ।

ଏହାଛଡ଼ା ଓଡ଼ିଶା ଗଜପତି ରାମଚନ୍ଦ୍ରଦେବ ମୁସଲମାନ ଧର୍ମଗ୍ରହଣ କରି ନିଜ କନ୍ୟା ଓ ଭଗିନୀଂକୁ ମୁସଲମାନ ବିଜେତାଂକୁ ଅର୍ପଣ କରିଥିବା କଥା ପୂର୍ବରୁ କୁହାଯାଇଛି । ତେଣୁ ଏଇ ଘୋର ଅଧଃପତନର ଯୁଗରେ ଓଡ଼ିଆ କାବ୍ୟକବିତାର ସଂପ୍ରସାରଣଶୀଳ ଦିଗଂତ ଯେ ସଂକୁଚିତ ହୋଇଯାଇଥିଲା ବା ଓଡ଼ିଆ ସାହିତ୍ୟ ଯେ ତା'ର ବିଷୟବୈଚିତ୍ର୍ୟ ହରାଇ ବସିଥିଲା ଏଥିରେ ଅସ୍ୱାଭାବିକତା କିଛି ନାଇ । ସମ୍ମୁଖରେ କୌଣସି ନୂତନ ବିଷୟବସ୍ତୁ ନ ପାଇ ରୀତିଯୁଗୀୟ କବିମାନେ ଆଂଗିକସର୍ବସ୍ୱ ହୋଇପଡ଼ିଥିଲେ । ଖାଲି ଓଡ଼ିଆ ନୁହେଁ, ଭାରତବର୍ଷରେ ସର୍ବତ୍ର ମୁସଲମାନ ପର୍ବରେ ଯେଉଁ କାବ୍ୟକବିତାମାନ ସୃଷ୍ଟି ହୋଇଛି, ସେ ସବୁଥିରେ କଥାବସ୍ତୁ ହୋଇଛି ପ୍ରଥାଗତ । ବିଜୟଚନ୍ଦ୍ର ମଜୁମଦାର, ଡଃ ଆର୍ତ୍ତବଲ୍ଲଭ ମହାଂତି ପ୍ରମୁଖ ସମସ୍ତେ ଓଡ଼ିଶାର ଏଇ ଛଟିଷ୍ଣୁ ଯୁଗର ଶୋଚନୀୟ ଦୁରବସ୍ଥା ତଥା ନୈତିକ ଅଧୋଗତି କଥା ବର୍ଣ୍ଣନା କରିଯାଇଛନ୍ତି ।

ଏହାର ଅବ୍ୟବହିତ ପରେ ମରହଟ୍ଟା ଅମଳରେ (ଖ୍ରୀ:୧୭୫୧-୧୮୦୩) ଦେଶର ଧର୍ମ ଓ ସଂସ୍କୃତିମୂଳକ ଅନୁଷ୍ଠାନ ଗୁଡ଼ିକ ବିଧର୍ମୀ ଶାସକମାଂନଙ୍କ ଅତ୍ୟାଚାରରୁ ରକ୍ଷା ପାଇଲା । ଶାସକ ଓ ଶାସିତ ମଧ୍ୟରେ ବ୍ୟବଧାନର ଦୂରତା ମଧ୍ୟ କେତେକ ପରିମାଣରେ କମିଗଲା । ମାତ୍ର ସେମାନେ ଦେଶରେ ଦୃଢ଼ ଶାସନ ପ୍ରତିଷ୍ଠା କରି ପାରି ନ ଥିଲେ । "ସେମାନଂକ ରାଜତ୍ୱକୁ ଲୋକେ ବରଂ ଏକପ୍ରକାର ତସ୍କରର ରାଜତ୍ୱ" ବୋଲି ମନେକରୁଥିଲେ । (ଓ ଇ) ଦେଶରେ ସାହିତ୍ୟ ଓ ସଂସ୍କୃତିର ପ୍ରବାହ ପୂର୍ବପରି ସ୍ଥାନୀୟ ପୃଷ୍ଠପୋଷକତା ଉପରେ ନିର୍ଭର କରୁଥିଲା । ତେବେ ବେରାର ଓ

ମଧ୍ୟପ୍ରଦେଶର ମରହଟ୍ଟା ରାଜାମାନେ ଓ ସେମାନଂକର ପ୍ରାଦେଶୀକ ପ୍ରତିନିଧିମାନେ କବି ଓ ପଂଡିତମାନଂକୁ ଆଦର କରୁଥିଲେ । ପରିଣାମରେ ଏହି ସମୟରେ ଅନେକ ଉତ୍କଳୀୟ କବି ଓ ପଂଡିତ ସଂସ୍କୃତରେ ଗ୍ରଂଥ ଲେଖି ସମଗ୍ର ଭାରତରେ ପ୍ରସିଦ୍ଧି ଅର୍ଜନ କରିଛଂତି । ଏମାନଂକ ମଧ୍ୟରେ ଗଂଗାଧର ମିଶ୍ର, ('କୋଶଳାନଂଦ ମହାକାବ୍ୟ' ପ୍ରଣେତା) ହଳଧର ମିଶ୍ର (ବସନ୍ତୋତ୍ସବ ଓ ସଂଗୀତ କଳ୍ପଲତା) ଶତଂଜୀବ ମିଶ୍ର ('ମୁଦିତ ମାଧବ' ନାଟିକା) ଜଗନ୍ନାଥ ମିଶ୍ର (ରସକଳ୍ପଦ୍ରୁମ) ପ୍ରଭୃତି ପ୍ରଧାନ ।

ଭାମହ କହଂତି, ସତ୍‌କାବ୍ୟ ପ୍ରୀତି ଓ କୀର୍ତ୍ତିର କାରଣ ହୁଏ । କଳା ମନୁଷ୍ୟର ଧର୍ମଅର୍ଥକାମମୋକ୍ଷ ଏହି ଚତୁର୍ବର୍ଗ ଫଳପ୍ରାପ୍ତିରେ ସହାୟକ ହୁଏ ଏବଂ ମନୁଷ୍ୟକୁ ବିଚକ୍ଷଣତା ପ୍ରଦାନ କରେ । ମମ୍ମଟଂକ ଭାଷାରେ:—

"କାବ୍ୟଂ ଯଶସେଽର୍ଥକୃତେ ବ୍ୟବହାରବିଦେ ଶିବେତର କ୍ଷତୟେ
ସଦ୍ୟଂ ପରନିର୍ବୃତୟେ କାଂତାସମ୍ମିତତୟୋପଦେଶଯୁଜେ ।"

ଅର୍ଥାତ୍ କାବ୍ୟ ଲେଖିଲେ ଯଶ ମିଳେ, ଅର୍ଥ ମିଳେ ଏବଂ ବିଭିନ୍ନ ସମାଜର ବ୍ୟବହାର ଜଣାଯାଏ । କାଂତା ଯେପରି ମଧୁର ପ୍ରେମଶୀଳ ବ୍ୟବହାର ଦ୍ୱାରା ତା'ର ପ୍ରିୟତମକୁ ଆକୃଷ୍ଟ କରେ, କାବ୍ୟ ସେଇପରି ରସସୃଷ୍ଟି ଦ୍ୱାରା ଉନ୍ନତ ଚରିତ୍ର ପ୍ରକାଶ କରି ପାଠକ ବା ଦର୍ଶକକୁ ଆକୃଷ୍ଟ କରିପାରେ । କାବ୍ୟର ଭିନ୍ନ ଭିନ୍ନ ଚରିତ୍ରରୁ ପ୍ରକୃଷ୍ଟ ଉପଦେଶ ଓ ଅଭିଜ୍ଞତା ଲାଭ କରାଯାଇପାରେ ବୋଲି ଏଥିରୁ ସୂଚିତ ହେଉଛି ।

ମାତ୍ର ସେ ଅଭିଜ୍ଞତା ଯଦି କେବଳ କାମଜନିତ ହୁଏ ଏବଂ ତାହା ଯଦି ଜୀବନର ବୃହତ୍ତର ପରିସରରୁ ବିଚ୍ଛିନ୍ନ ହୋଇପଡ଼େ, ତେବେ କାବ୍ୟର ମୂଳ ଉଦ୍ଦେଶ୍ୟ ବ୍ୟାହତ ହୁଏ ନାହିଁ କି ? ରୀତି-ଯୁଗ ଓଡ଼ିଆ ସାହିତ୍ୟରେ ଏକ ଋଦ୍ଧିମଂତ ଯୁଗ ହେଲେ ମଧ୍ୟ ଏହାର ଅନଭିପ୍ରେତ ଦିଗରେ ପ୍ରଭାବ ସାହିତ୍ୟଂକୁ ଦିଗ୍‌ଭ୍ରଷ୍ଟ କରିବାରେ କମ ସାହାଯ୍ୟ କରି ନାହିଁ ।

ମହାକବି ଉପେଂଦ୍ରଭଂଜ, ଦୀନକୃଷ୍ଣ, ଅଭିମନ୍ୟୁଂକ ଭଳି ମହାନ କବି-ପ୍ରତିଭା ରୀତି-ଯୁଗର ଅବିସ୍ମରଣୀୟ ଦାନ । ଏ ଯୁଗର ଅବକ୍ଷୟମାନ ଆବହ ମଧ୍ୟରୁ ଯେ ଏମାନଂକ ଭଳି ସ୍ରଷ୍ଟା-ମାନବର ଜନ୍ମ ହେଲା, ଏହାହିଁ ହେଉଛି ଓଡ଼ିଆ ଜାତି ଓ ଓଡ଼ିଆ ସାହିତ୍ୟର ଅମୋଘ ଜୀବନୀଶକ୍ତି ସପକ୍ଷରେ ମହାକାଳର ସର୍ବଶ୍ରେଷ୍ଠ ପ୍ରମାଣପତ୍ର । ସେମାନଂକର ଚର୍ଯା ଓ ମନନ, କଳା, ଓ ସୃଜନୀଶକ୍ତି ଏ ଦେଶର ଇତିହାସରେ ସର୍ବାପେକ୍ଷା କାଳିମାମୟ ମୁହୂର୍ତ୍ତରେ, ଏକମାତ୍ର ଆଶା ଓ ପ୍ରତିଶ୍ରୁତିର ଆଲୋକ-ରେଖା ହୋଇ ଦେଖାଦିଏ ।

[ ଶେଷ ]

# ॥ ସଂଶୋଧନୀ ॥

ପଂଚମ ଅଧିକରଣ ଭ୍ରମବଶତଃ ଦୁଇଥର ଛପା ଯାଇଚ । ତେଣୁ ୫ମ (୨), ୬ଷ୍ଠ ଓ ୭ମ ଅଧିକରଣମାନ ଯଥାକ୍ରମେ ୬ଷ୍ଠ, ୭ମ ଓ ୮ମ ଅଧିକରଣ ହେବ । ଅଷ୍ଟମ ଅଧିକରଣ ସେଥିପାଇଁ ଦିଆ ଯାଇ ନାଇ ।

| ମୁଦ୍ରାକର ପ୍ରମାଦ | ସଂଶୋଧିତ ପାଠ | ପୃଷ୍ଠା | ଧାଡ଼ି |
|---|---|---|---|
| ପର୍ଯ୍ୟବେସିତ | ପର୍ଯ୍ୟବସିତ | ୧ | ୧୬ |
| ପର୍ଯ୍ୟଂତ | ପର୍ଯ୍ୟଂତ | ୧ | ୨୦ |
| ଶିବନାଥ ଘୋଷ | ଶିବଦାସ ଘୋଷ | ୨ | ୨୯ |
| ideolgy | ideology | ୧୩ | ୨ |
| ଜବନ | ଜୀବନ | ୧୩ | ୫ |
| ମାଣିଷର | ମଣିଷର | ୧୬ | ୧ |
| ୧୧୧୫ | ୧୦୧୫ | ୧୯ | ୩ |
| ୩୫୦୩ | ୩୪୦୩ | ୧୯ | ୩ |
| alibity | ability | ୨୮ | ୧୯ |
| periodications | periodisations | ୩୫ | ୨୦ |
| କୌଟଲ୍ୟ | କୌଟିଲ୍ୟ | ୩୮ | ୨୫ |
| ଅଂତର୍ଧ୍ୟାନ | ଅଂତର୍ଧାନ | ୪୮ | ୧୫ |
| ତୀର୍ଥାଂକୁର | ତୀର୍ଥଂକର | ୭୭ | ୨୬ |
| ବେହୁ | ଦେହୁ | ୯୧ | ୧୫ |
| ଶୁଦ୍ର | ଶୂଦ୍ର | ୯୬ | ୧୫-୨୦ |
| ବଶିଷ୍ଠ | ବଶିଷ୍ଠ | ୧୦୦ | ୨୧ |
| ଅପ୍ତ | ଆପ୍ତ | ୧୦୪ | ୬ |
| ବେଣୀମାଧବ | ବେଣୀମାଧବ | ୧୨୬ | ଫୁ: ନୋ |
| ଅନେକାଂତବାଦ | ଅନେକାଂତବାଦ | ୧୩୬ | ୨ |
| ତୀର୍ଥାଂକୁର | ତୀର୍ଥଂକର | ୧୩୭ | ୧ |
| ଗ୍ରଂଥ୍ର | ଗ୍ରଂଥ | ୧୪୫ | ୨୦ |
| ପୂର୍ଣ୍ୟ | ପୁଣ୍ୟ | ୧୬୪ | ୧୩ |
| ଫୁଲସୂତ୍ର | ମୂଳସୂତ୍ର | ୧୭୭ | ୫ |
| କଂକମୁଦ୍ରା | କର୍ମମୁଦ୍ରା | ୧୯୭ | ୬ |
| ମହୁଛଂଡ | କହୁଛଂଡ | ୨୨୮ | ୨୯ |

| ମୁଦ୍ରାକର ପ୍ରମାଦ | ସଂଶୋଧିତ ପାଠ | ପୃଷ୍ଠା .... ଧାଡ଼ି | |
|---|---|---|---|
| କବିଟଜ | କବିରାଜ | ୨୩୬ | ୧୭ |
| ପ୍ରତିପାଦ | ପ୍ରତିବାଦ | ୧୪୯ | ୧୮ |
| କୁଂଜବିହାହାରୀ | କୁଂଜବିହାରୀ | ୩୨୧ | ୨୪ |
| ବସ୍ତୁଷ୍କଲ | ଜସ୍ତୁସ୍ଥାଳ | ୩୨୩ | ୨୦ |
| ଥିଲ | ଥିଲେ | ୩୮୫ | ୨୬ |
| ଜଗନ୍ନାଥ, ଅଚ୍ୟୁତାନଂଦ | ବଳରାମ, ଜଗନ୍ନାଥ, ଅଚ୍ୟୁତାନଂଦ | ୩୬୨ | ୧୩ |
| ୩ସ୍ତୁ ଅ. | ୩ସ୍ତୁ ଅ. ଶୁ ସଂ | ୩୮୨ | ୩ |
| ରତ୍ୟାଭ୍ୟାସ | ରତ୍ୟାଭ୍ୟାସ | ୪୦୦ | ୧୦-୧୧ |
| ମୂର୍ଧନ କବି | ମୂର୍ଧନ୍ୟ କବି | ୪୧୪ | ୬ |
| କୁସୁଦନୀ, ଆଭେଦ୍ୟ | କୁମୁଦନୀ ଅଭେଦ୍ୟ | ୪୧୪ | ୧୧ ୧୬ |

* ସହୃଦୟ ପାଠକ ପାଠିକାମାନଂକୁ ଅନୁରୋଧ ସେମାନେ ଏ ମୁଦ୍ରାକର ପ୍ରମାଦ ଗୁଡ଼ିକ ସଂଶୋଧନ କରି ନେଇ ପୁସ୍ତକ ପାଠ କରିବେ ।

। ବିନୀତ ଲେଖକ ।

---

**ବି:ଦ୍ର:** ଉପେଂଦ୍ର ଭଂଜଂକ 'ଚିତ୍ରକାବ୍ୟବଂଧୋଦୟ'ରେ ଥିବା ଗ୍ରଂଥ-ତାଲିକାରେ 'ପଂଚଶାୟକ'ର ନାମ ନାହିଁ । ପୃ ୩୯୨ର ପାଠ ସେହି ଦୃଷ୍ଟିରୁ ପଢ଼ିବାକୁ ହେବ । କେତେକ ପଂଚଶାୟକ ପୋଥିରେ ଗୋପାଳ ଭଂଜଂକ ନାମ ଭଣିତାରେ ଦେଖାଯାଏ, ଅନ୍ୟ କେତେକ ପୋଥି 'ଉପେଂଦ୍ର ଭଂଜ ନୃପତି'ଂକ ନାମରେ ଭଣିତା ହୋଇଛି । ଘୁମୁସରର ଦିବାନ ଥିବା କବି ସୂର୍ଯ୍ୟମଣି ଚ୍ୟାଉପଟ୍ଟନାୟକଂକ "ଘୁମୁସର ଭଂଜବଂଶାବଳୀ'କୁ ପ୍ରାମାଣିକ ଗ୍ରଂଥ ବୋଲି ଧରିଲେ ଏଥିରେ ଗୋପାଳ ଭଂଜଂକ ଅସ୍ତିତ୍ୱ ମିଳେ ନାହିଁ । ତାରିଣୀଚରଣ ରଥଂକ 'ଘୁମୁସର ଇତିହାସ'ରେ ଥିବା ଗୋପୀନାଥ ଭଂଜଂକ ପିତା ଗୋପାଳ ଭଂଜ ପ୍ରକୃତରେ ପ୍ରତାପ ଭଂଜ । ତେଣୁ 'ପଂଚଶାୟକ'ର ପ୍ରଣେତା ଉପେଂଦ୍ର ଭଂଜ ବୋଲି ହିଁ କୁହାଯିବ । କାରଣ ଗୋପାଳ ଭଂଜ ବୋଲି କେହି ନଥିଲେ । 'ରସପଂଚକ'ର ର-ବୋଲିରେ କବି ନିଜକୁ ପାଟକୁମାର ରୂପେ ପରିଚିତ କରାଇ ( "ରଚିତ ପାଟକୁମାର ଯାହା ଉଦ୍ଦେଶୀ ବିଚୁର" ) ପ-ବୋଲିରେ 'ରାଜା' କହୁଥିବାରୁ ( "ପଦେ ଉପଇଂଦ୍ର ଭଂଜରାଜ" ) ଇତି ମଧ୍ୟରେ ପିତା ନୀଳକଂଠଂକ ମୃତ୍ୟୁ ଘଟିଥିବା କଥା ଅନୁମିତ ହୁଏ । 'ପଂଚଶାୟକ' ତତ୍ପରବର୍ତ୍ତୀ ରଚନା । ବୋଧହୁଏ 'ଚିତ୍ରକାବ୍ୟ' ପରେ ଏହା ରଚିତ ହୋଇଛି ।

ସ. ରାଉତରାୟ

